# ମହାପୁରୁଷ ବାଣୀ

ବାମାଚରଣ ମିତ୍ର



Digitized by srujanika@gmail.com

# ମହାପୁରୁଷ ବାଣୀ

1. ଜୀବିକା ଓ ଜୀବନ
2. ବାବା ଚନ୍ଦ୍ରହାନନ୍ଦଙ୍କ ତୋମାର୍ଥୀଙ୍କର କାହାଣୀ
3. ମହା ପୁଷ୍ପ
4. ଭୌତିକ
5. ଇଚ୍ଛା ପୂରଣ
6. ସମ୍ପତ୍ତି ପାଳିନି ଗାଡ଼ି
7. ଶୋଣିତ ଉନ୍ମ୍ୟୁଥାଣି
8. ସ୍ୱର୍ଗ
9. ଝିଟ୍ଟାଙ୍କିକା
10. ଯଜ୍ଞ ପନ୍ଥା
11. ମହାପୁରୁଷ ବାଣୀ
12. ଶିଶିର ଭୂଗୋଳ ଶିକ୍ଷା
13. ପୂଜା ଓ ପ୍ରାର୍ଥନା
14. ଅବିଦ୍ୟା ଓ ଅବିଦ୍ୟା
15. ଯମାଣ୍ଡୁ ପ୍ରଶ୍ନ [illegible]
16. ସୁନ୍ଦ ମୁଷିକ
17. ଜିମାର ନିନ୍ଦୁ (ସାତାର ଓ ବିନ୍ଦୁ)
18. ବୁଢ଼ା ଜଗା ଧୋବୀଙ୍କ ଉପାଖ୍ୟାନ




Digitized by srujanika@gmail.com

ବାମାଚରଣ ମିତ୍ର



# ମହାପୁରୁଷ ବାଣୀ



ଜ୍ଞାନ ପ୍ରଦୀପ



Digitized by srujanika@gmail.com

## ଲେଖକଙ୍କର ଅନ୍ୟାନ୍ୟ ବହି

ଉପନ୍ୟାସ :

ପରାଗ

ଗଳ୍ପ ସଂଗ୍ରହ :

ଅସୀମ

ସ୍ୱପ୍ନସନ୍ଧି

ପାଷାଣର ପ୍ରାଣ

ବଣ ମହାପୁରୁଷ

ସମସ୍ତ ବହିର ପ୍ରକାଶକ:

ବିକାଶ ପ୍ରତିଷ୍ଠାନ

ଜୟପୁର, କୋରାପୁଟ

Digitized by srujanika@gmail.com

ଗଳ୍ପ ସଂଗ୍ରହ :

# ମହାପୁରୁଷ ବାଗ

ଲେଖକ :

ଶ୍ରୀ ବାମାଚରଣ ମିଶ୍ର

ପ୍ରକାଶକ :

ବିକାଶ ପ୍ରତିଷ୍ଠାନ

ଜୟପୁର, କୋରାପୁଟ

ମୁଦ୍ରାକର :

ଶ୍ରୀ ରାମନାଥ ପଣ୍ଡା

ବିକାଶ ପ୍ରେସ୍

ଜୟପୁର, କୋରାପୁଟ



ପ୍ରଥମ ମୁଦ୍ରଣ – ୧୦୦୦

୧୯୭୩

ମୂଲ୍ୟ :

ସାଧାରଣ : ତିନି ଟଙ୍କା

ବନ୍ଧେଇ : ଚାରି ଟଙ୍କା

Digitized by srujanika@gmail.com

# ଜୀବିକା ଓ ଜୀବନ

(ଗଳ୍ପଟି ମୋର ସ୍ୱପ୍ନସିଦ୍ଧ ଗଳ୍ପ ସଞ୍ଚୟନରେ ପ୍ରକାଶ ପାଇଥିବା ଜୀବନ ଓ ଜୀବିକାର ଅନ୍ୟ ଏକ ରୂପ)

ଜୀବନ ଓ ଜୀବିକା, ଜୀବିକା ଓ ଜୀବନ ! ଜୀବନ ଆଗ ନା ଜୀବିକା ଆଗ ? କେଉଁ ଅନାଦି ଅତୀତରେ କାହାର ସୃଷ୍ଟି କରିବାର ଆନନ୍ଦରେ ଅନନ୍ତ ଅସୀମରେ କୋଟି କୋଟି ବିରାଟ ଅଗ୍ନିମୟ ପିଣ୍ଡ ମଧ୍ୟରୁ ଏକ ବିରାଟ ଅଗ୍ନି ପିଣ୍ଡରୁ ଟେକାଏ ଖସି ସୃଷ୍ଟି ହୋଇଥିଲା ଆମର ଏଇ ମାଟି ପେଣ୍ଡୁଳାଟି ! ସେଥିରୁ ପୁଣି ଜାତ ହେଲା—ତା ମଧ୍ୟ କେଉଁ ଅନାଦି ଅତୀତରେ, କାହାର ଆନନ୍ଦରେ—ଏକ ଜୀବନ କଣା ! ସେ ଜୀବନ କଣା ମଧ୍ୟ ବିକଶିତ ହୋଇ ହୋଇ ହୋଇଛି ମନୁଷ୍ୟ । ଏ ଦେହ ମଧ୍ୟରେ ପୁଣି ସେ ଜୀବନରେ ଜାତ ହୁଏ ଏକ ଅପୂର୍ବ ବେଦନାମୟ ଅଭିସାର । ସମଗ୍ର ବିଶ୍ୱ ପରିବ୍ୟାପ୍ତ, ଏ ଜୀବନର ଉତ୍ପତ୍ତିର କାରଣ, ସେଇ ଅନନ୍ତ ଅସୀମ ଅପରିଜ୍ଞେୟ ଆନନ୍ଦର ଉତ୍ସକୁ ଅନ୍ୱେଷଣ କରି ପାଇବାକୁ ଏ ଜୀବନରେ ଏକ ଅପୂର୍ବ ବ୍ୟାକୁଳତା ଜାତ ହୁଏ । ଏ ଜୀବନ ଦେହଜ ହେଲେ ମଧ୍ୟ ଏଇ ଅଭିସାର ଏ ଜୀବନକୁ କରେ ଦେହାତୀତ, ଯେପରି ପଙ୍କଜ

Digitized by srujanika@gmail.com

ପଙ୍କରୁ ଜାତ ହୋଇ ମଧ୍ୟ ପଙ୍କିଳ ନୁହଁ । କ୍ଷୁଦ୍ର ଶିଶିର କଣାଟି ଯେପରି ଧରି ରଖେ ବିରାଟ ସୂର୍ଯ୍ୟକୁ, ତା'ର କ୍ଷୁଦ୍ର ବୁକୁରେ ଏ ଜୀବନ ମଧ୍ୟ ଧରି ରଖିବାକୁ ଚେଷ୍ଟା କରେ ସେଇ ବିରାଟକୁ ! ଏ ଅଭିସାର ପଥରେ ଯିଏ ଯେତେ ଦୂର ଆଗେଇ ଯାଇଛି ତା'ର ଜୀବନ ସେତେ ବିକଶିତ ହୋଇଛି । ଏ ଭଙ୍ଗୁର ଦେହର ରକ୍ଷା ଏବଂ ସେଥିପାଇଁ ଗୋଟିଏ ଜୀବିକା ସେଇ ଲକ୍ଷ୍ୟର ଏକ ପନ୍ଥା ମାତ୍ର, ନିଜେ ଲକ୍ଷ୍ୟ ନୁହଁ । ଜୀବନର ଶ୍ରେଷ୍ଠ ବିକାଶ ପାଇଁ ଏ ଦେହର ରକ୍ଷା ବା ପରିପୁଷ୍ଟି ଆବଶ୍ୟକ । କିନ୍ତୁ ଯେତେବେଳେ ଦେହ ପ୍ରତି ଜାତ ହୁଏ ମୋହ ସେତେବେଳେ ଏ ଦେହର ରକ୍ଷା ବା ପରିପୁଷ୍ଟି ହୋଇ ଉଠେ ଲକ୍ଷ୍ୟ, ଜୀବିକା ହୁଏ ପ୍ରଧାନ । ବୋଧହୁଏ ଜୀବନର ଲକ୍ଷ୍ୟ ଆଜି ମୋହାବୃତ ବୋଲି ବୈଷୟିକ ଉନ୍ନତିର ଶତ ଯୋଜନା ସତ୍ତ୍ୱେ ହିଂସା, ଘୃଣା, ସନ୍ଦେହ, ଯୁଦ୍ଧ ହୋଇ ଉଠିଛି ଅପରିହାର୍ଯ୍ୟ । ଆଜି ସର୍ବଦା ଶଙ୍କିତ, ଭୀତ ଏବଂ ବ୍ୟର୍ଥତାରେ ପରିପୂର୍ଣ୍ଣ ରାଜନୀତି, ଧର୍ମ, ଦେଶ ସେବା ଅର୍ଥନୀତି, ଯୋଜନା ସବୁ ହୋଇଛି ନିଜ ନିଜ ପ୍ରତିପତ୍ତି ବିସ୍ତାରର ଏକ ଏକ କ୍ଷେତ୍ର ।......

ଧପଡ଼ହିଁର ଶବକୁ ନେଇ ଚିତାଗ୍ନି ଜଳୁଛି । ଚିତାର ଚଡ଼ଚଡ଼ ଶବ୍ଦରେ ଭାସି ଆସୁଛି ଧପଡ଼ହିଁର ସେଇ ଗୀତ···ଚନା ଚୁର୍‌ରୁର୍ ମୁର୍‌ରୁର୍ । ଶ୍ମଶାନରୁ ଫେରି ଧପଡ଼ହିଁର ପୁଅ ହରି ଆଗେ ଆଗେ ଚାଲିଛି । ଆମେ ଶବବାହକମାନେ ପଛେ ପଛେ ଚାଲିଛୁ । ଧପଡ଼ହିଁର ଜୀବନ ମୋ ମନରେ ଏକ ପ୍ରଶ୍ନ ଜଗାଇଛି, ଜୀବନ ଆଗ ନା ଜୀବିକା ଆଗ ! ମୁଁ ଅନ୍ୟମନସ୍କ ଭାବରେ ଶବବାହକମାନଙ୍କ ସହିତ ଚାଲିଛି ଭାବି ଭାବି ।

ଧପଡ଼ହିଁର ଶେଷ ଆଶା ପୂରଣ ହୋଇପାରି ନାହିଁ, ସେ ତାର ଚଣାଦିକା ଗୁରୁ ଜଦହି ପାଖରୁ ମନ୍ତ୍ର—ଯାହାକୁ ଧପଡ଼ହିଁ

Digitized by srujanika@gmail.com

କହୁଥିଲି "ଇଲମ୍"—ନେଇ ପୂଜ୍ୟ ଗୁରୁଦତ୍ତ ଧପଡ଼ସିଂ ନାମରେ କଟକରେ ନାନା ବର୍ଣ୍ଣର ଅଦ୍ଭୁତ ପୋଷାକ ପିନ୍ଧି, ନାନା ଅପୂର୍ବ ଗୀତ ବୋଲି, ଅତି ସୁସ୍ୱାଦୁ ଚଣା ସେ ବିକ୍ରି କରିଚି ଗତ ଦଶବର୍ଷ ଧରି । ତାହାପାଇଁ ଓ ତାର "ବୋଲି" ପାଇଁ ତାର ଚଣାଚୂର ବେଶୀ ଅବଶତ ବେଶୀ ଆଦରର ହୋଇଥିଲା । ଗରିବଙ୍କୁ ନିର୍ମଳ ଆନନ୍ଦ ଦେବା ତା'ର ଜୀବନର ଉଦ୍ଦେଶ୍ୟଟିକୁ ଜୀବିକା ତାହାର ସାହାଯ୍ୟ କରି ଆସିଥିଲା । ମୋ ମତରେ ଧପଡ଼ସିଂ ଥିଲା ଜଣେ କଳାକାର ।

ଧପଡ଼ସିଂର ଶେଷ ଇଚ୍ଛାଥିଲା ତା'ର ନିଜ ପୁଅ ହରିକୁ ନିଜ ମନ୍ତ୍ରରେ ଦୀକ୍ଷା ଦେଇ "ଚଣାସିଂ" ନାମରେ ବଜାରକୁ ଛାଡ଼ିଦେବ । କେତେଥର ସେ କଳ୍ପନା କରିଚି ପୁଅ ଓ ଶିଷ୍ୟ ଚଣାସିଂ ଓ ସେ ନିଜେ ଚୌଧୁରୀ ବଜାର ଛକରେ ନିଜ ନିଜ ଚଣା ବିକୁଛନ୍ତି ଓ ପରସ୍ପର ପ୍ରତି 'ବୋଲି' ବାଣ ନିକ୍ଷେପ କରୁଛନ୍ତି ଓ ଶେଷରେ ସେ ନିଜେ ପୁଅ ଓ ଶିଷ୍ୟ ପାଖରେ ପରାସ୍ତ ହୋଇ ତାଙ୍କୁ ଧନ୍ୟ କରି ସେ ଛକ ଛାଡ଼ି ଚାଲି ଯାଇଚି ଅନ୍ୟ ଛକକୁ । (ଚଣାବିକାଳିମାନଙ୍କ ମଧ୍ୟରେ ଗୋଟିଏ ଅଲେଖା ନିୟମ ଅଛି ଯେ ଦୁଇଜଣ ଚଣାବିକାଳି ଯଦି ଦୈବାତ୍ ଗୋଟିଏ ଜାଗାରେ ଏକତ୍ର ହୋଇ ଯାଆନ୍ତି ତେବେ ଚଣାର ବୋଲିରେ ଯିଏ ପରାସ୍ତ ହେବ ସେ ବିଜେତାକୁ ସଲାମ କରି ସେ ଜାଗା ଛାଡ଼ି ଅନ୍ୟତ୍ର ଚାଲିଯିବ ଚଣା ବିକିବାକୁ) । ଏ କଳ୍ପନା କେତେଥର ସେ ମୋ ଆଗରେ ପ୍ରକାଶ କରିଚି, କହୁ କହୁ ବାରମ୍ବାର ସେ ଆକର୍ଣ୍ଣବିସ୍ତୃତ ନିଶକୁ ଶାଉଁଳେଇଚି, ଆଖି ତା'ର ଜଳ ଉଠିଚି । ଶେଷ ଥରକପାଇଁ ମୋର ହାତ ଧରି ସେ ଅନୁରୋଧ କରିଚି ମୁଁ ଯେପରି ହରିକୁ ସେଇ ଉଦ୍ଦେଶ୍ୟରେ ଉତ୍ସାହିତ କରେ ।

ହରି, ମୁଁ ଓ ଅନ୍ୟାନ୍ୟ ଶବବାହକମାନେ ନଈରେ ଗାଧୋଇ ଗଲୁ ଧପଡ଼ସିଂ ଘରକୁ । ଧପଡ଼ସିଂର ସ୍ତ୍ରୀ ହାସ୍ୟବତୀ ନିର୍ମାଲ୍ୟ ଆଢ଼

Digitized by srujanika@gmail.com

ସଜାଡ଼ି ରଖିଥାଏ । ଆଜିମ ଜର୍ମାନୀ ସେବା ସରିବା ପରେ ଜଳଖିଆ ଖାଇବାକୁ ବସିଲୁ । ଧପଡ଼ସିଂର ଗୁରୁ କବସିଂର ଫୋଟୋ ପାଖରେ ଧୂପ ଜଳୁଥାଏ । ଚନାଚୁର ଝକବା ପୋଷାକରେ ଧପଡ଼ସିଂର ଗୋଟିଏ ଫୋଟୋ ମଧ୍ୟ କାନ୍ଥରେ ଟଙ୍ଗା ହୋଇଛନ୍ତି, ତା' ପାଖରେ ମଧ୍ୟ ଧୂପ ଜଳୁଛି । ଧପଡ଼ସିଂର ଜାତି ଭାଇମାନେ ଖାଇସାରି ଧପଡ଼ସିଂର ଫୋଟୋ ପାଖରେ ଦଣ୍ଡବତ ହୋଇ ଚାଲିଗଲେ ।

ସମସ୍ତେ ଚାଲିଗଲା ପରେ ହାବବଣ୍ଡା ଧପଡ଼ସିଂର ଚନାଚୁର ଝକ୍‌କବା ପୋଷାକ ସବୁ ଗୋଟି ଗୋଟି କରି ପେଡ଼ିରୁ ବାହାର କରିବାକୁ ଲାଗିଲା । ଗାଢ଼ ନୀଳରଙ୍ଗର ପଗଡ଼ି, ପକ୍ଷୀପରଲଗା ନକଲି ସୁନାର ବ୍ରୁଚ, ମ୍ୟାପଲ୍ଲପକା ଷସ୍ତା ସିଲ୍‌କର ରୁମାଲ, ବାଇଗଣୀ ରଙ୍ଗର ଜାପାନୀ ସିଲ୍‌କର ଫୁଲିଦାର ପଞ୍ଜାବି, ହଳଦିଆ ରଙ୍ଗର ଜରିକାମ କରା ନେଳନା ଫେଲ୍‌ଭେଟର ପଟୁଆ, ଗୋଲାପି ରଙ୍ଗର ଲମ୍ବେଲ କନାର କୋଟ, ସବୁଜ ରଙ୍ଗର ନାଗ୍ରା ଜୋତା ସବୁ ସେ ଗୋଟି ଗୋଟି କରି ବାହାର କରି ଛାତିରେ ଯାକିଧରି ଭୁହାଇ ଭୁହାଇ କାନ୍ଦିବାକୁ ଲାଗିଲା ବାଷ୍ପରୁଦ୍ଧ କଣ୍ଠରେ—

ମୋତେ ଛାଡ଼ି ତୁମେ କୁଆଡ଼େ ଗଲ,
ମୋ ପ୍ରାଣନାଥ ।

ଏ ଚଣା ପୋଷାକ କଅଣ ହବ,
ମୋ ପ୍ରାଣନାଥ ।

ଚନାଚୁର୍‌ର୍ ମୁର୍‌ର୍ ଆଉ ନ ଶୁଣିବି,
ମୋ ପ୍ରାଣନାଥ ।

କଣ୍ଟକଯାଇ ତ ଝୁରିବେ ତୋତେ,
ମୋ ପ୍ରାଣନାଥ ।

ତୁମ ଚଣା ନା'ଟି ବୁଡ଼ିଲା ଆଜି,
ମୋ ପ୍ରାଣନାଥ ।...

Digitized by srujanika@gmail.com

ପାଖରେ ଯେ ମୁଁ ଓ ତା'ର ପୁଅ ଛୁଆ ହୋଇ ରହିଚୁ ଅତି ଦୁଃଖରେ ସବୁ ଭୁଲିଯାଇ ହରହରବଧୂରା ହାସବତୀ 'ପ୍ରାଣନାଥ'ଙ୍କ ଉଦ୍ଦେଶ୍ୟରେ କାନ୍ଦନ କାନ୍ଦିବାକୁ ଲଗିଲ । ଅତି କରୁଣ ପ୍ରାଣସ୍ପର୍ଶୀ ସେ କାନ୍ଦନା ମୁଁ ମଧ୍ୟ କୋହ ସମ୍ଭାଳି ପାରିଲି ନାହିଁ । ଧପଡ଼ସିଂର ସେଇ ଅପୂର୍ବ ଗୀତ 'ଚନା ବନାଏ ଡଲ୍ଲର୍, ଇସ୍କୁ ଲେକେ ଯାନା ଘର୍' ବାରମ୍ବାର ମୋ କାନରେ ବାଜିବାକୁ ଲଗିଲ ।

ହରିକୁ ଠାରି ମୁଁ କହିଲି ମାଆକୁ ତା'ର ସାନ୍ତ୍ୱନା ଦେବାକୁ । ହରି ମାକୁ କୋଳକୁ ଆଉଜାଇ ନେଇ କହିଲା, ଥାଉ ବୋଉ, ହାମେ ତ ଅଛୁ, ପରୁଆ କଅଣ ।

ହାସବତୀ ପୁଅ ମୁହଁରେ କଲ୍ପିମସ ମଜାଲବ୍ଧ ଉଠି ବସି ହରି ଶବୁଜରେ ହାତ ରଖି କହିଲା, ହରି, ବାବା [illegible] ଗୋପାଳି ନାମ ମୁଣ୍ଡ ନଦ, ଛାପା ଛୋଟ କହି ଯାଇଛି ତା [illegible] ଜଣାସିଂ ନା'ରେ ତା' ପୋଷାକ ପିନ୍ଧି କଟକ ବଜାରରେ ଚନାଚୁର ବିକିବାର ଦେଖିଲେ ତା'ର ଆତ୍ମା ଶାନ୍ତି ପାଇବ ।……

ହରି ଉଠିପଡ଼ି କହିଲା, ନାହିଁ ସେ ପୋଷାକ ପିନ୍ଧି ଗୀତ ବୋଲି ବଜାରରେ ବୁଲିବାକୁ ହାମକୁ ସରମ୍ ଲଗିବ ।

ମୁଁ ସେ ଆଲୋଚନାରେ ଯୋଗ ଦେଇ କହିଲି ହରି, ସତେ ଏକା, ଚପରାସି ଚାକିରିରୁ କଅଣ ମିଳିବ…

ହାସବତୀ ସାହସ ପାଇ କହିଲା, ତୋ ବାପା ରୋଜ ଦ ତିନ ଘଣ୍ଟା ଚଣା ବିକି ତୋର ଚାରିଗୁଣ ରୋଜଗାର କରୁଚ । ସବୁ ଖରଚ ତୁଳେଇ ସେଥିରୁ ମୁଁ ଯା ସାଇତିଚି ତୁ ଦେଖିବୁ ?

ହରି ସଞ୍ଚିତ ଧନର ସନ୍ଧାନ ପାଇ କହିଲା, ବୋଉ, ତମେ ଢେର ଚାଲାକ ଅଛୁ । ଆଚ୍ଛା ହାମେ ଚାକିରି ଛାଡ଼ି ଦେବ, ଲେକିନ୍ ସେ

Digitized by srujanika@gmail.com

ପୋଷାକ ପିନ୍ଧି ଗୀତ ଗାଇ ହାତେ ଚଣା ବିକିବା ନାହିଁ । ହାତେ ଦୁସର ରକମ କରିବା । ମୁଁ ସଙ୍ଗୀତ ଇଧ୍ୟୁସିନ୍‌କୁ ପତ୍ରରେ ଆଗେ ।

ହରି ବଢ଼ ଧଗଇ ସିଲ୍‌କ ପଞ୍ଜାବି ଧରି ବାହାରିଗଲା । ପୁଅର ଏତେକ କଥାରେ ହାସ୍ୟବନ୍ତ ମୁହଁରେ କ୍ଷୀଣ ହସର ରେଖା ଫୁଟି ଉଠିଲା । ମୋତେ ବୁଝିଁ ସେ କହିଲା, ଯା ହେଉ, ପୁଅ ରାଜା ହୋଇଚି, ବାପ ତା'ର ସରଗରେ ଥାଇ ଖୁସି ହେବ ।

ହରିର ରାଜା ହେବାରେ ମୁଁ କିନ୍ତୁ ଉତ୍ସାହିତ ହୋଇ ପାରିଲି ନାହିଁ । ଧପଡ଼ସିଂର ଚନାଚୁର୍‌ ବିକିବା ତ କେବଳ ଅର୍ଥ ଉପାର୍ଜନ କରିବାର ପନ୍ଥା ନ ଥିଲା । ହରି ତାକୁ ରୋଜଗାରର ପନ୍ଥା ଭାବରେ ଗ୍ରହଣ କରି କି ବିଭ୍ରାଟ ସୃଷ୍ଟି କରିବ କେଜାଣି । ଭାବିଲି ଧପଡ଼ସିଂ ଜୀବନର ଆଦର୍ଶଟି ବୁଝାଇ କହିବି । କିନ୍ତୁ ସେଥିରେ ମୁଁ କାଳେ ଏକ ବିଭ୍ରାଟ ସୃଷ୍ଟି କରିବି ଭାବି ନୀରବ ରହିଲି ।

ବିଦାୟ ଦେବାବେଳେ ହାସ୍ୟବନ୍ତ ମୋର ହାତଧରି ପକାଇ ଅଶ୍ରୁଳିପ୍ତ ନୟନରେ କହିଲା, ମଝିରେ ମଝିରେ ଆସୁଥିବ ବାବୁ । ସେ ଏମ କଥା କେତେ କହୁଥିଲେ ।

ଘରକୁ ଫେରି ଗୃହିଣୀକୁ କହିଲି, ଶୁଣୁଚ, ତୁମ ଚଣା ଖାଇବା ଆଜିଠୁ ସରିଗଲା । ଧପଡ଼ସିଂ ମରିଗଲା । ଗୃହିଣୀ ଦୀର୍ଘନିଶ୍ୱାସ ପକାଇ କହିଲେ, ଆହା, ଯା ହେଉ ମୋର ଗୋଟାଏ ଲାଭ ହେଲା, ନଇତ ଛ'ପଇସା ଖରଚ ବଞ୍ଚିଗଲା । କିନ୍ତୁ ରାଧିକା ମୋହନଙ୍କୁ ଧପଡ଼ସିଂର ଜୀବନ କାହାଣୀଟି ଶୁଣାଇଲି । ବନ୍ଧୁ ସବୁ ଶୁଣି କହିଲେ, ତୁ ତା'ର ଗୋଟିଏ ସମାଧି ଗଢ଼ିଦେ ଶ୍ମଶାନରେ । ପ୍ରଥମେ ପ୍ରସ୍ତାବଟି ଚମତ୍କାର ଲାଗିଥିଲା । କିନ୍ତୁ ପରେ ଭାବିଲି ସମାଧି ଗଢ଼ି ଧପଡ଼ସିଂକୁ ଅପମାନ କରିବି କେବଳ । ତାର ଜୀବନର ଦର୍ଶନକୁ ମୁଁ ଯଦି ଅନ୍ତରର ସହିତ ଗ୍ରହଣ କରିପାରେ ତେବେ ତାହାହିଁ ହେବ ତା'ର

Digitized by srujanika@gmail.com

ଅମଳର । ଯିଏ ନୀରବରେ ରହି ତା'ର କାର୍ଯ୍ୟ କରିଯାଉଛି ସେ ରହୁ ଚିରଦିନ ଲୋକଲୋଚନ ଅନ୍ତରାଳରେ ।

ଏହା ପରେ କେତେଦିନ କଟିଯାଇଛି । ଜାଲ-ଧୀବର ଜଞ୍ଜାଳ-ଜାଲରେ ମୋତେ ଧରିଛି । ପୁଣି ବାସ୍ତବ ଜଞ୍ଜାଳଠାରୁ କଳ୍ପିତ ଜଞ୍ଜାଳ ମୋର ମନକୁ ଆହୁରି ସଙ୍କୁଚିତ କରି ଦେଉଛି । ମନର ସେହି ସଙ୍କୁଚିତ ପରିସର ମଧ୍ୟରେ ଯେଉଁସବୁ ଭାବନା ଜାତ ହେଉଛି ସେସବୁ ମନକୁ ବ୍ୟାଧିଗ୍ରସ୍ତ କରିଦେବା ସାଙ୍ଗେ ସାଙ୍ଗେ ଦେହକୁ ମଧ୍ୟ ବ୍ୟାଧିଗ୍ରସ୍ତ କରିଦେଉଛି । ଏପରି ପରିସ୍ଥିତିରେ ମୁଁ ହରିର କଥା ଏକଦମ୍ ଭୁଲି ଯାଇଥିଲି ।

ଦିନେ ସନ୍ଧ୍ୟାବେଳେ ଚୌଧୁରୀ ବଜାର ବାଟେ ଦେଇ ଯାଉ ଯାଉ ଦେଖିଲି ଉପସ୍ଥିତଆଡୁ ଦଳେ ଲୋକ ହସି ହସି ଗୋଳମାଳ କରି କରି ଆସୁଛନ୍ତି । ତାଙ୍କ ଆଗେ ଆଗେ ଆସୁଛି ଗୋଟିଏ ନାରୀବେଶୀ ପୁରୁଷ ନାନା ଅଶ୍ଳୀଳ ଭଙ୍ଗିରେ ନାଚି ନାଚି, ସେ ଗାଉଛି, ଯୌବନ ବେଳକୁଞ୍ଜେ ପଡ଼ିଚ୍ ଧସ୍ସରେ ବନ୍ଧୁ, ପଡ଼ିଚ୍ ଧସ୍ସ··· । ଲୋକେ 'ଇସ୍ ମାରଡାଲା' କହି ଏକ ଅଦ୍ଭୁତ ଭଙ୍ଗୀରେ ହସି ଫାଟିପଡ଼ୁଛନ୍ତି ମୁଣ୍ଡରେ ହାତ ରଖି । କେହି ବା ନର୍ତ୍ତକର ପଣତ କାନି ଧରି ଟାଣିବାକୁ ଚେଷ୍ଟା କରୁଛି । ନର୍ତ୍ତକ ଗୋଟିଏ ଠେଲା-ଗାଡ଼ିରୁ ମୁଠାଏ ମୁଠାଏ ଚନାଚୁର ଉଠାଇ ଖାଇ ଚାଲିଛି ଓ ଅଲସାତକ ଗାଡ଼ିରେ ଥିବା ଗୋଟିଏ ବାକ୍ସରେ ପକାଉଛି । ଆଶ୍ଚର୍ଯ୍ୟ ହୋଇ ଦେଖିଲି ଯେ ସେ ଠେଲାଗାଡ଼ିଟି ଠେଲୁଛି ହରି !! ପିନ୍ଧିଛି ସବୁଜ ରଙ୍ଗର ଗୋଟିଏ ଫୁଲ୍ ପେଣ୍ଟ—ଫୁଟିଛି ନୁହେଁ ତଳପାଖ—ଆଉ ହାଓ୍ୱାଇ କମିଜ, ଯେଉଁ କମିଜରେ ଅଛି ସବୁ ସିନେମା ଅଭିନେତ୍ରୀମାନଙ୍କର ଉଲଙ୍ଗ ବକ୍ଷ ଚିତ୍ର । ଚୌଧୁରୀ ବଜାର ଛକ ଉପରେ ହରି ତା'ର ଗାଡ଼ି ଛିଡ଼ା କଲା । ନର୍ତ୍ତକ ଭୁଲି

Digitized by srujanika@gmail.com

ବୁଲି ନାଚିବାକୁ ଲାଗିଲି ଏବଂ ଗାଇବାକୁ ଲାଗିଲି—ଆସ ଆସ କିଏ ଅଛ ରସିକ—ଇତ୍ୟାଦି । ଲୋକେ ତାକୁ ଦେଖି ହସି ହୋଇ ନାନା କୁତ୍ସିତ ମନ୍ତବ୍ୟ କରୁଥାଆନ୍ତି । ଜୀବନ ଜୀବିକା-ସର୍ବସ୍ୱ ହେଲେ କି ଅଶ୍ଳୀଳ ହୁଏ ! ସୋରିଷ ତେଲରେ ଅଗର୍ଖ ମିଶାଇ ବା ଗୁଡ଼ରେ ଧୂଷ ଦେଇ କୋଠାପିଟିବା କି ଅଶ୍ଳୀଳ !!

ମୁଁ ଗୋଟିଏ କଣ୍ଟକୁ ହୁଣ୍ଡା ହେଲି । ସେଇଠି ହୁଣ୍ଡା ହୋଇ ହରିର ବାପ ଧପଡ଼ସିଂ ତା'ର ଚନାଚୁର ବିକୁଥିଲା । ଏଇଠି ଧପଡ଼ସିଂ ସହିତ ମୋର ପ୍ରଥମ ସାକ୍ଷାତ । ସେତେବେଳେ ହୋଇ-ଥାଏ ପ୍ରବଳ ବନ୍ୟା । ବଢ଼ିରେ ମୋ ଗାଁ ଘରଦ୍ୱାର ସବୁ ଭାସି ଯାଇଥାଏ । ଚାରିଆଡ଼େ ପଡ଼ିଥାଏ ହାହାକାର । ସେଇ ସୁଯୋଗରେ ରାଜନୈତିକଦଳମାନଙ୍କ ମଧ୍ୟରେ ସାହାଯ୍ୟ କରି ନିଜର ପ୍ରତିପତ୍ତି ପ୍ରସାର କରିବାର ପ୍ରତିଯୋଗିତା ଅବସ୍ଥାକୁ ଅତିମାତ୍ରାରେ ଅପମାନଜନକ କରି ଦେଇଥାଏ । ମନ ମୋର ଭରି ରହିଥାଏ ବ୍ୟର୍ଥତା ଓ ଗ୍ଳାନିରେ । ଧପଡ଼ସିଂ ନାନାରଙ୍ଗର ପୋଷାକ ପିନ୍ଧି ଚନାଚୁର ବିକୁ ବିକୁ ତା'ର ଗୀତରେ କହୁଥାଏ—ବଢ଼ି ହୋଇଛି, ଘର ଦ୍ୱାର ଭାସିଯାଇଛି । କିଛି ଚିନ୍ତା ନାହିଁ । ଆମେ କଅଣ ପଶୁ ହୋଇଛୁ କି ଗାଁ ଛାଡ଼ି ପଳାଇବୁ । ଯେତେଥର ଏ ଘର ଭାଙ୍ଗିବ ନୂତନ ସାହସରେ ଆମେ ସେତେଥର ସେ ଘର ଗଢ଼ିବୁ । ଏ ଜୀବନକୁ ଆମେ ମହାନ୍ କରିବୁ, ପ୍ରତ୍ୟେକ ଆଘାତ ଆମକୁ ନେଇ ଯାଉ ସେଇ ଚରମ ଆନନ୍ଦମୟୀ ଆଡ଼େ, ପ୍ରତ୍ୟେକ ଆଘାତ ଆମକୁ ମହାନ୍ କରୁ । ସେ ଗୀତ ଶୁଣି ମୋର ସବୁ ଗ୍ଳାନି ଓ ଅବସାଦ କ୍ଷଣେକେ ପୋଛି ଯାଇଥିଲା । ଦୁଇଟି ପଇସାର ଚନାଚୁର୍ କିଣି ଖାଇ ମୁଁ ଭାରି ଆନନ୍ଦ ପାଇଥିଲି । ପୁଅକୁ ଏପରି ଭାବରେ ଚଣା ବିକିବାର ଦେଖି ଧପଡ଼ସିଂ କଅଣ ଖୁସିହୋଇଛି ?

Digitized by srujanika@gmail.com

ତବର ତନା କଣିବାକୁ ମୋର ପ୍ରବୃତ୍ତି ହେଲା ନାହିଁ । ବଜାରସୌଦା କରି ଘରେ ରଖି ଦେଇ ଗଲି ଧପଡିମ୍ବିଂ ଘରକୁ । ତବ ଠିକ୍ ସେତକବେଳେ ଫେରିଲା । ସାହସ ବାନ୍ଧି ତାକୁ କହିଲି, ଏମିତ ସ୍ୱରରେ ତନାଚୁର ବକବାକୁ ତୋ ବାପା ଇଚ୍ଛା କରି ନ ଥିଲାରେ·········

ତବ ତାଚ୍ଛଲ୍ୟ ସ୍ୱରରେ କହିଲା, ରଖ ବାବୁ ବାପା କଥା । ବାପା ଯେତେ ଆଣୁଥିଲା ହାମେ ତା'ର ଦୁଇଗୁଣ ଆଣୁଚୁ । ହବ ଟଳ ଟଳ ପକେଟରୁ ପଇସାତକ ବାହାର କରି ଦେଖାଇଲା । ମୁହଁରୁ ତାର ମଦ ଗନ୍ଧ ବାହାରୁ ଥାଏ ।

ହରି ମୋର ହାତ ଧରି କହିଲା, ବାଆଉ (ବାବୁ) ଗୋଟେ କଥା । ରଖିବତ କହୁବ । ନାଇ, ନାଇ ସେମିତ ହାମେ ଜାଣ ନାହିଁ, ମାନେ ମାନେଗା ତ କହେଗା ହାଁ । ନେହିଁ ତୋ ତୁମ୍ ଇଧର୍ଉର୍ ହାମ୍ ଉଧର୍ଉର୍ । କହି ହବ ଚାଲି ଯାଉଥିଲା ଘର ଭିତରକୁ ।

ତାର ହାତ ଧରି ଅଟକାଇ ମୁଁ କହିଲି, ଆରେ, ଆଗେ କହ······

—ନେହିଁ, ନେହିଁ ମାନେଗା ବୋଲେ ? ବୋଲେ ହାଁ ।

ଆଚ୍ଛା, କହିଲି ହଁ ।

—ତୁମେ ଆଚ୍ଛା ବାଆଉ ଅଛ । ସାବାସ୍ । ବାଆଉ, ଗୋଟେ୍ କଥା । ଏ ଶଳା ମାଇଚିଆ ନଇତ ପାଞ୍ଚଟଙ୍କା ନେଇ ଯାଉଚ । ଶୁଣିଲି ସରକାର ବ୍ୟବସାୟ କରିବାକୁ ଟଙ୍କା ଉଧାର ଦେଉଚି । ତମେ ବାଆଉ ଦୁଇଟି ହଜାର ଟଙ୍କା କରଜ କରିଦିଅ । ବେଶୀ ନୁହଁ· ଦୁଇ ହଜାର । ବୋଉ ରଖିଚ ହଜାରେ । ବାସ୍ ତାପରେ ଦେଖିଲବ ମୁଁ କଅଣ କରିବ ! ବୁଝିଲ ବାଆଉ, ଗୋଟିଏ ତଣା

Digitized by srujanika@gmail.com

ଝରଣା ଜଳ ଝରିବ । ବମ୍ବେରେ ଦେଖି ଆସିଚି ଏମିତି ଗୋଟିଏ କଳ । କଳ ଭିତରୁ ଗାଉଣା ଚାଲିଥିବ । ଲୋକେ ଆସିବେ, ଗୋଟିଏ ଦୋଅଣି କଣାରେ ଗଳାଇ ଦେବେ । ଫଟ୍ କର୍ କେ ଲିଙ୍କ୍‌ଲେଗା ଏକ୍ ଚନାଚୁର ପୁଡ଼ିଆ—କହୁ ହରି ହଠାତ୍ ତାର ହାତଟି ମୋର ଆଖି ପର୍ଯ୍ୟନ୍ତ ଲମ୍ବାଇ ଦେଲା ଏକ ଅଶ୍ଳୀଳ ଭଙ୍ଗୀରେ । ଚମକି ମୁଁ ଛଟେଇ ଗଲି ।

ହରିକୁ ମୁଁ ସେ ଯୋଜନାରେ ସାହାଯ୍ୟ କରି ପାରିଲି ନାହିଁ । ତାହା କରିବାକୁ ମୋର ଶକ୍ତି ନ ଥିଲା, ଇଚ୍ଛା ବି ନ ଥିଲା ।

କିଛିଦିନ ପରେ ଥରେ ଦେଖିଲି ଚୌଧୁରୀ ବଜାର ନିକଟରେ ଗୋଟିଏ ଦୋକାନ ଘରେ ସେ ମେସିନ୍ । ମେସିନ୍ ଭିତରୁ ନିର୍ଗତ ହେଉଚି ରକ୍ ଏଣ୍ଡ୍ ରୋଲ୍ ସଙ୍ଗୀତ । ନା ଅଛି ତାର ଭାଷା, ନା ଅଛି ସୁରର ମାଧୁର୍ଯ୍ୟ । କେବଳ ଗୋଟାଏ ଅଶ୍ଳୀଳ ଭଙ୍ଗୀଭରା ଯେ ଗୀତ । କେହି ସେଠି ବସି ନାହାନ୍ତି । ଲୋକେ ଦୋଅଣି ଗଳାଇ ଚନାଚୁର ଧରି ଚାଲି ଯାଉଛନ୍ତି ।

କୌତୂହଳୀ ହୋଇ ମୁଁ ଥରେ ସେ କଳରୁ ଚଣା କିଣିଥିଲି । କଳ ଉପରେ ଛିଡ଼ା ହୋଇ ଗୋଟିଏ ଦୋଅଣି ଗଳାଇ ଦବା ମାତ୍ରେ ଗୋଟିଏ ନଗ୍ନନାରୀର ଚିତ୍ର କଳର କାଚ ପରଦା ଆର-ପାଖେ ଉଠିଗଲା । କିଛିକ୍ଷଣ ପରେ କଳର ଗୋଟିଏ ପଟର କଣାରୁ ବାହାରି ପଡ଼ିଲା ଗୋଟିଏ ଟିକେଟ । ସେଥିରେ ଲେଖା ଅଛି ମୋର ଓଜନ ଓ ମୋର ଚରିତ୍ର ବିଷୟରେ ଗୋଟିଏ ସାର୍ଟିଫିକେଟ "ଆପଣ ସତ୍ୟବାଦୀ, ଦାନଶୀଳ, ନିରହଙ୍କାର, ସାଧୁ ଇତ୍ୟାଦି ।" ଏସବୁ ଗୁଣତ ଦୂରେ ଥାଉ, ଗୋଟିଏ ମାତ୍ର ବି ମୋର ନ ଥିଲେ ସୁଦ୍ଧା ସେତକ ପଢ଼ି ଆନନ୍ଦିତ ହେଲି । ଏହାର କିଛିକ୍ଷଣ ପରେ ଅନ୍ୟ ଗୋଟିଏ ପଟରୁ ବାହାରିଲା ଚନାଚୁର ପୁଡ଼ିଆଟିଏ ।

Digitized by srujanika@gmail.com

କାଳରୁ ଓହ୍ଲାଇ ଦେଖିଲି ହରି ଗୋଟିଏ ଘୋଡ଼ା ଗାଡ଼ିରୁ ଓହ୍ଲାଉଛି ଟଳି ଟଳି । ଗାଡ଼ି ଭିତରେ ଗୋଟିଏ ମହିଳା ବସି ରହିଛି ।

ଏହାପରେ ଅନେକ ଦିନ ବିତିଯାଇଛି । କଟକରୁ ମୋର ବଦଳି ହେବା ସଙ୍ଗେ ସଙ୍ଗେ ଧପଡ଼ଙ୍କି ପରିବାର ସହିତ ମୋର ଛୀଣାପୂମାନ ଯୋଗସୂତ୍ର ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଛି । ପ୍ରାୟ ପାଞ୍ଚବର୍ଷ ପରେ ଦେଖିଲି ହରିର ସେଇ ଦୋକାନ ଘର ଜାଗାରେ ହୋଇଛି ଏକ ପ୍ରକାଣ୍ଡ କୋଠା । କୋଠାଟିର ବାହାରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି "ପଞ୍ଚ ସୁଖ"—ମାଲିକର ନାମ ଲେଖା ଅଛି ଶ୍ରୀ ହରିହର ନାୟକ । ଆଶ୍ଚର୍ଯ୍ୟ ହେଲି, ଖୁସି ମଧ୍ୟ ହେଲି ।

ଏହି ସମୟରେ ଗୋଟିଏ ବଡ଼ ମଟର ଆସି ଛିଡ଼ା ହେଲା । ସେଥିରୁ ଓହ୍ଲାଇଲେ ଗୋଟିଏ ଯୁବକ ।

—ଆରେ ହରି ଯେ, ଆନନ୍ଦରେ ଡ଼ାକିଲି ।

ଓମା ଆଡେ କିଛିକ୍ଷଣ ତୀକ୍ଷ୍ଣ ଦୃଷ୍ଟି ଦେଇ କହିଲା, ଆସନ୍ତୁ ଭିତରକୁ । ଗଲି—

—ଏ ସବୁ କଅଣ ତୁମର ?

—ଆଜ୍ଞା ବାହାର ଭଗ୍ନ୍ୟଚକ୍ର ? ସରକାରଙ୍କଠାରୁ ଟଙ୍କା ରଣ ନେଇ ମୁଁ ଖୋଲିଛି କେକ୍ ବିସ୍କୁଟ କାରଖାନା । ମାସକୁ ଆୟ ହେଉଛି ଦଶହଜାର । ସରକାରଙ୍କ ଚାହାନ୍ତି ଦେଶରେ ଧନ ବୃଦ୍ଧି । ମୁଁ ତ ଧନବୃଦ୍ଧି କରୁଛି !

—ବାଃ । ଏ 'ପଞ୍ଚସୁଖ' ମାନେ ?

—ମାନେ ପାଞ୍ଚ ପ୍ରକାର ସୁଖର ପଞ୍ଚ (punch) । ଦେଖିବେ ? ବୋୟ । ଡାକିବା ମାତ୍ରେକେ ଗୋଟିଏ 'ପେଣ୍ଟ କୋଟ' ପିନ୍ଧା ଚପରାସି ଛିଡ଼ା ହୋଇ ଆସି—

Digitized by srujanika@gmail.com

—ଲାଁ । ହରି ଆଦେଶ ଦେଲା ।

କିଛିକ୍ଷଣ ପରେ ଗୋଟିଏ ଧାଡ଼ିରେ ଦୁଇଟି ଗିଲାସରେ ସୁରା ଆଣି ସେ ଛୁଡ଼ା ହେଲା ।

—ନଅନ୍ତୁ । ହରି ଗୋଟିଏ ଗିଲାସ ଉଠାଇ ମୋତେ କହିଲା ।

—କ୍ଷମା କରିବେ ।

ହରି ମୋ ଆଡ଼କୁ ଘୃର୍ଣ୍ଣି ଘୃର୍ଣ୍ଣି ଟିକିଏ ହସି ଆଦେଶ ଦେଲା, ଆଚ୍ଛା, ଲେ ଯାଓ ।

ଚପଚପି ଚାଲିଗଲା । ହରି ପାଣିପୁଚକ ଏକା ନିଶ୍ୱାସକେ ପିଇ ରୁମାଲରେ ମୁହଁ ପୋଛି କହିଲା, ବୁଝିଲେ ଜୀବନ ମୋ ପକ୍ଷରେ ଏକ ଯୁଆଖେଳ । ପଇସା ତ ଆଜିକାଲି ପବନରେ ଉଡ଼ୁଛି ଧରି ପାରିବା ବୁଦ୍ଧି ଥିଲେ ହେଲା । ଗୋଟିଏ ଫ୍ୟାକ୍ଟର କରିଛି, ଆହୁରି ଦୁଇଟି କରିବି । କୋଟିପତି ହେବି ନିଶ୍ଚୟ । ତା' ପାଇଁ ସବୁ ପ୍ରସ୍ତୁତ କରି ସାରିଛି । ପ୍ରତିବର୍ଷ ଓଡ଼ିଆ ଭାଷାରେ ଶ୍ରେଷ୍ଠ ଉପନ୍ୟାସ ପାଇଁ ମୁଁ ଦେଉଛି ପାଞ୍ଚହଜାର ଟଙ୍କା ପୁରସ୍କାର । ବର୍ତ୍ତମାନ ମୁଁ ସାହିତ୍ୟ-ସଭାର ସଭାପତି । ଆସନ୍ତା ନିର୍ବାଚନରେ ହାମେ, ମାନେ ମୁଁ, ହେବି ବିଧାନସଭାର ସଭ୍ୟ ତା ପରେ······

ତା'ପରେ କଅଣ ଘଟିବ ହରି ମୁହଁରୁ ସେ ସବୁ ଶୁଣିବାର ଧୈର୍ଯ୍ୟ ମୋର ରହିଲା ନାହିଁ । ମନଟା କେଜାଣେ କାହିଁକି ହଠାତ୍ ଖିନ୍ନ ହୋଇ ପଡ଼ିଲା । ସୌଜନ୍ୟ ରକ୍ଷା କରି କୌଣସିମତେ ମୁଁ 'ପଞ୍ଚସୁଖ' ରୁ ବାହାରି ଆସିଲି ହରିକୁ ନମସ୍କାର ଜଣାଇ ।

କିଛିଦିନ ପରେ ପ୍ରାୟ ରାତି ବାରଟାବେଳେ ମୁଁ ମୋର ଗାଁରୁ ଫେରୁଥାଏ କଟକକୁ । ଗୋଟିଏ ନିର୍ଜନ ସ୍ଥାନରେ ଦେଖିଲି ହରିର ମଟର ଗାଡ଼ି ଛିଡ଼ା ହୋଇଛି । ସେଥିରୁ ଟଳି ଟଳି ହରି ଓ ଗୋଟିଏ ମହିଳା ବାହାରି କୁଆଡ଼େ ଚାଲିଗଲେ ଅନ୍ଧାର ଭିତରେ ।

Digitized by srujanika@gmail.com

ଧପଡ଼ର୍ଙ୍କ ର କଥା ମନେ ପଡ଼ିଗଲା । ତା' ସହିତ ପୁଣି ସେଇ ପ୍ରଶ୍ନ ଜାଗିଲା, ଜୀବନ ଜୀବକାକୁ ମହାନ୍ କରେ, ନା ଜୀବକା ଜୀବନକୁ ?

କଏ ଯେମିତ ଉତ୍ତର ଦେଲା, ଜୀବନର ଲକ୍ଷ୍ୟହିଁ ଜୀବକାକୁ ଦଏ ଗୌରବ ।

ଚରୈବେଟ...ଚରୈବେଟ !!!



Digitized by srujanika@gmail.com

## ବାବା ବ୍ରହ୍ମାନନ୍ଦଙ୍କର ରୋମାଞ୍ଚକର କାହାଣୀ

ସମୟ ଅପରାହ୍ନ । ସ୍ଥାନ ପୁରୀର ସମୁଦ୍ର ଉପକୂଳସ୍ଥ ତ୍ରିଲୋଚନ ବାବୁଙ୍କ ମନୋରମ ଆରାମଦାୟକ ବୈଠକଖାନା । କାଳ ବର୍ଷାରମ୍ଭ ପ୍ରଥମ ବର୍ଷଣର ଝିପି ଝିପି ସେଇଦିନ ଆରମ୍ଭ ହୋଇଥାଏ । ସେ ଦିନର ପାଣିପାଗ ବିଷୟରେ ବେତାର ଘୋଷଣା ପୁରୀଠାରୁ ୨୦୦ ମାଇଲ ଦୂରରେ ବଙ୍ଗୋପସାଗରରେ ଲଘୁ ଚାପ ସୃଷ୍ଟି ହୋଇ ତାହା କ୍ରମଶଃ ଉତ୍ତର ଆଡ଼କୁ ଘଣ୍ଟାକୁ ୨୦ ମାଇଲ ବେଗରେ ଗତି କରୁଥିବାରୁ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରବଳ ବର୍ଷା ଓ ଝଡ଼ର ସମ୍ଭାବନା ରହିଛି ।

ଉକ୍ତ ସମ୍ଭାବନା ଆମମାନଙ୍କୁ ବିଚଳିତ କରିଛି ଓ ମନରେ ଶିହରଣ ସଞ୍ଚାର କରିଛି । ଗୃହକର୍ତ୍ତା ତ୍ରିଲୋଚନ, ମଦନ, ମୃତ୍ୟୁଞ୍ଜୟ ଓ ମୁଁ ଗୋଟିଏ ଗୋଟିଏ ନରମ ଓ ଆରାମପ୍ରଦ ଗଦିଚୌକିରେ ବସି ସୁଗନ୍ଧ ଓ ସୁସ୍ୱାଦୁ ଚାହା ପାନ କରୁଥିଲେହେଁ ଉନ୍ମୁକ୍ତ ଝରକା ଭିତର ଦେଇ ବଙ୍ଗୋପସାଗରଆଡ଼େ ଦୂର ଦୃଷ୍ଟି ନିକ୍ଷେପ କରୁଛୁ । କାହାରି ମୁହଁରେ କଥା ନାହିଁ । ତ୍ରିଲୋଚନ ଆଦର

Digitized by srujanika@gmail.com

ଅଧ୍ୟାପନରେ ମୁକ୍ତ ହସ୍ତ । ଆଶ୍ରମରେ ବସି ଏବଂ ଯଥେଚ୍ଛା ଧୂ-ପାନ ସିଗାରେଟ୍ ଖାଇ ଖାଇ ରାଜନୈତିକ ପରିସ୍ଥିତି, ଲୋକମାନଙ୍କ ଦୁର୍ଦ୍ଦଶା, ଯୋଜନାମାଣ୍ଡ, ଯୌନ ପ୍ରବୃତ୍ତି ଆଦି ସମସ୍ୟା ବିଷୟରେ କୌଣସି ସମାଧାନ ନ ଦେଇ ପାରିଲେ ମଧ୍ୟ ଗଭୀର ଆଲୋଚନା ଓ ଚର୍ଚ୍ଚା ଆମେ ଗୁରୁଭଜଣ ଯୁବକ କରୁ । କିନ୍ତୁ ଆଜି ପାଣିପାଗ ଘୋଷଣା ସଦୃଶ ଆଲୋଚନା ବନ୍ଦ କରି ଦେଇଛି ।

ଏହି ସମୟରେ ମଦନ ଝରକା ଆଡ଼କୁ ଅଙ୍ଗୁଳି ଦେଖାଇ ସୋତ୍ସାହେ କହି ଉଠିଲା, ନିଧାଇ ଆସିଗଲେ !

ସମସ୍ତେ ଉତ୍କଣ୍ଠାର ସହିତ ଝରକା ପାଖକୁ ଦୌଡ଼ିଯାଇ ଚିତ୍କାର କରି ପଚାରିଲୁ, କଅଣ ଲଦୁରୂପ ?

—ନା, ବାବା ଉଦବାନନ୍ଦ ଆସୁଛନ୍ତି !!

ନିମେଷକେ ସମସ୍ତଙ୍କ ମୁହଁରୁ ବିରକ୍ତିଭାବ ଲୁଚିଯାଇ ଆନନ୍ଦ ଖେଳିଗଲା ।

ଏମିତି ବାବା ଉଦବାନନ୍ଦଙ୍କ କିଞ୍ଚିତ ପରିଚୟ ଆବଶ୍ୟକ । ଦିନେ ଆମେ ଗୁରୁଭଜଣ ସାନ୍ଧ୍ୟ ଭ୍ରମଣରେ ଯାଉଁ ଯାଉଁ ସ୍ୱର୍ଗଦ୍ୱାର ପାଖରେ ଗୋଟିଏ ବଟବୃକ୍ଷ ତଳେ ଜଣେ ଧ୍ୟାନମଗ୍ନ ଯୋଗୀଙ୍କୁ ଦେଖିବାକୁ ପାଇଲୁ । ଦେହଯାକ ତା'ର ପାଉଁଶବହଳ ହୋଇ ଲେପା ହୋଇଛି । ବ୍ରହ୍ମତାଳୁ ଉପରେ ଗୋଟାଏ ପ୍ରକାଣ୍ଡାକାର ଜଟା । କଟିଦେଶରେ କୌପୀନ । ବାଁ ପଟରେ ଏକ ଭୀଷଣାକାର ତ୍ରିଶୂଳ ପୋତା ହୋଇଛି ଏବଂ ଡାହାଣ ପଟରେ କମଣ୍ଡଳୁ । ସାମନାରେ ଗୋଟାଏ ବଡ଼ କାଠ ଗଦାରେ ନିଆଁ ଧିକ ଧିକ ହୋଇ ଜଳୁଛି । କିଛିକ୍ଷଣ ଆମେ ତା' ସାମନାରେ ଠିଆ ହୋଇ ରହିଲୁ । ଜନା-ଶ୍ରମରେ ପରମାତ୍ମା ଏବଂ ଧନ ଜନସ୍ୱ ଲାଭର ଉପାୟ ପାଇବା ପାଇଁ ଆମେ ସର୍ବଦା ବ୍ୟାକୁଳ ଥାଉଁ, ଏବଂ ପ୍ରାୟ ସବୁ ସାଧୁ-

Digitized by srujanika@gmail.com

ସନ୍ନ୍ୟାସୀଙ୍କ ସନ୍ଧାନ ଆମେ ଦେଖା କରି ପାରିନ୍ ସେଥିପାଇଁ । ନୂତନ ଜଣେ ସାଧୁ ଦେଖି ଆମେ ଆଶାନ୍ୱିତଭାବେ ଉତ୍ସୁକ ହୋଇ ଅପେକ୍ଷା କରୁଥିଲୁ ଯୋଗୀଙ୍କ ଧ୍ୟାନ ଭାଙ୍ଗିବା ପର୍ଯ୍ୟନ୍ତ । ମଦନ କନ୍ଦୁ ତା'ର ଆଖିରେ ତା'ର ହାତ ଛୁଇଁଟି ଧୀରେ କେଞ୍ଚି ଦେଲ । ଯୋଗୀ ଧ୍ୟାନ ନମିଳତ ଅଂଖି ଖୋଲି ଆମଆଡ଼େ ଚାହିଁ ସ୍ମିତ ହାସ୍ୟ କଲେ ।

ମୁଁ ଆନନ୍ଦିତ ହୋଇ କହିଲି, ଆରେ ଏ ଯେ ବାବା ଉଦରାନନ୍ଦ ।

ତା'ପରେ ଆମେ ଦୁଇଜଣ ବାବାଙ୍କ ସନ୍ଦିଗ୍ଧ ବାରଣସତ୍ତ୍ୱେ ତାଙ୍କୁ ସଶରୀରରେ ଉତ୍ତୋଳନ କରି ରିକ୍ସାରେ ବସାଇ ନେଇ ଆସିଥିଲି ଏବଂ ବୈଠକଖାନା ଘରେ ବସାଇ ତାହାର ଜୀବନକାହା[illegible] ଶୁଣିଥିଲୁ । ତା'ପରେ ପୁଣି ତା'ର ଜଟ ଦାଢ଼ି କଟାଇ ଲୁଗା ଜାମ[illegible] ପିନ୍ଧାଇ କରିଥିଲୁ ଡମ୍ବରୁଧର, ଆମର ମୁହଁଣା ସହପାଠୀ ଓ [illegible] ଉଦର ଡମ୍ବରୁଧର । ଉଦରାମିରେ ସିଦ୍ଧି ଲାଭକରି ଥିବାରୁ [illegible] ନା' ଆମେ କଲେଜରେ ଦେଇଥିଲୁ ବାବା ଉଦରାନନ୍ଦ । [illegible] ପରେ ଉଦରାନନ୍ଦ ଏକ ସମସ୍ୟା ଉତ୍ଥାପନ କଲା, ବର୍ତ୍ତମାନ [illegible] ଅବସ୍ଥାରେ ତା'ର ଉଦର ପୂରଣ ହେବ କିପରି ? ଆମର ସମ୍ମିଳ[illegible] ଚେଷ୍ଟାରେ ତାହାର ଜଙ୍ଗଲ ବିଭାଗରେ ଖଣ୍ଡେ ସରକାରୀ ଚାକ[illegible] ହୋଇଗଲା । ସେତେବେଳେ ତା'ର ବୟସ ୩୫ ହେବ[illegible] ଉଦରାନନ୍ଦର ସରକାରୀ ଚାକିରିରେ ଆମର ଅନେକ ତଳେ ଥି[illegible] ବି ଆମର ପ[illegible]ପି [illegible] ହୋଇ ନାହିଁ । ତାହା[illegible] କାରଣ[illegible], [illegible] ସେତେବେଳେ କହି ବସିଣ [illegible] ସେତ[illegible]ତାକୁ [illegible] ସେ ଆମର ଅହମିକାପୂର୍ଣ୍ଣ [illegible] ହେଲେ ଆମର ବୈଠକ [illegible] ଅପେ [illegible] ଯାହାକୁ ସେ ନଜ ଅପେ

Digitized by srujanika@gmail.com

ନହେଉଥିବା ଘଟଣା କହେ ସେଥିରୁ ଅନ୍ତତଃ ପନ୍ଦର ଅଣା ଛଅ ପଇସା ବାଦ୍ ଦେବାକୁ ହେବ, ତଥାପି ସେ ଏପରି ରସାଳ ଗଳ୍ପ ସୃଷ୍ଟି କରି ପାରେ ଯେ ନିମିଷକେ ଆଡ୍‌ଡାଟି ଜମିଯାଏ ।

ଆଜ ଏଇ ବଉଳତଳର ଯାଗରେ କୌଣସି ଆଲୋଚନା କରିବାକୁ କାହାରିକୁ ଭଲ ଲାଗୁ ନ ଥିଲା । କାରଣ କେହ୍ନ କୌଣସି ଆଲୋଚନା ଆରମ୍ଭ କରିଦେବ ? ଏଥି ଉପରେ ଆମେ ସମସ୍ତେ ନୀରବ ଥିଲୁ । ଉଡ଼ବଗାନନ୍ଦଙ୍କୁ ଦେଖି ଆମେ ସମସ୍ତେ ତେଣୁ ଆନନ୍ଦିତ ହୋଇ ଉଠିଲୁ ।

ଝରକା ଫାଟକୁ ଲଗିଯାଇ ଆମେ ସମସ୍ତେ ଚିତ୍କାର କରି ଡାକିଲୁ ଆସନ୍ତୁ ଆସନ୍ତୁ ବାବା ଉଡ଼ବଗାନନ୍ଦ !

ଆଶୀର୍ବାଦ କରିବା ଭଙ୍ଗୀରେ ହାତ ଉଠାଇ ଉଡ଼ବଗାନନ୍ଦ ପ୍ରବେଶ କଲେ । ଆମ୍ଭମାନେ ମୁଣ୍ଡ ନୁଆଁଇ କହିଲୁ, ବାବା ଉଡ଼ବଗାନନ୍ଦଙ୍କ ଜୟ ହେଉ ! ବସନ୍ତୁ, ବସନ୍ତୁ ।

ମୋର ଯେ ଅନ୍ୟ କାର୍ଯ୍ୟ ଅଛି ବତ୍ସଗଣ, ଉଡ଼ବଗାନନ୍ଦ ଗମ୍ଭୀର ସ୍ୱରରେ କହିଲେ ।

ଯାରେ—ସ୍ୱପ୍ନେଶ୍ୱର ଉଡ଼ବଗାନନ୍ଦ ହାତ ଠାଣି ବସାଇଦେଇ କହିଲା ।

ମୁଁ କହିଲି, ଆଜ ବାବା ଉଡ଼ବଗାନନ୍ଦ ଝଟ୍ରେ ଘୁରୁଛନ୍ତି ଗୁଲ୍ । ଏକଦମ୍ ଗୁମ୍ ମାରି ଯାଇଥିଲି ବୈଠକ !

ଉଡ଼ବଗାନନ୍ଦ ଗମ୍ଭୀର ସ୍ୱରରେ କହିଲେ, ମୁଁ କଦାପି ମିଛ ଗପ କହେ ନାହିଁ, ଅଙ୍ଗରେ ନଘଟିଥିବା କଥା କହେ ।

ନିଶ୍ଚୟ, ନିଶ୍ଚୟ—ବିଲୋଚନ କହିଲା ।

ମଦନ କହିଲା, ବାବା ଉଡ଼ବଗାନନ୍ଦ, ଆଜି ଏ ଯାଗରେ [illegible]ଏ ଜଟିଳ ପ୍ରେମମୂଳକ ଅନୁଭୂତି କହ । ମେଘାଲୋକ ଭଳି ସୁଖିତନାଃଫ୍ୟନଂଥାବୃଦ୍ଧି ତେତଃ···

Digitized by srujanika@gmail.com

ଉଦୟନନ୍ଦ ଗମ୍ଭୀର ସ୍ୱରରେ କହିଲେ; ମୁଁ ଗର ସନ୍ନ୍ୟାସୀ ମଣିଷ, ମୋ ଜୀବନରେ ପ୍ରେମର ସ୍ଥାନ ନାହିଁ । ତେବେ ଆଜି ତୁମକୁ ଦୁଇଟି କାହାଣୀ କଥା ଶୁଣାଇବ । ମୋର ନିଜର ପ୍ରତ୍ୟକ୍ଷ ଅନୁଭୂତି—

ହଉ ହଉ କାହା ଗଳ୍ପହିଁ ହଉ, ଆମେ ସମସ୍ତେ ରାଜି ହେଲୁ ।

ତେବେ ଶ୍ରବଣ କର—

ଦ' ତିନଥର ଗଳା ପରିଷ୍କାର କରି ସେ ଆରମ୍ଭ କଲେ—

ତୁମେମାନେ ତ ମିଳିମିଶି ଏ ଗର ସନ୍ନ୍ୟାସୀକୁ ସଂସାର-ଜାଲରେ ନିକ୍ଷେପ କଲ ଜଙ୍ଗଲ ଜାମରେ ଦ୍ବାକଣ୍ଡ ଦେଇ । ଗଲି କଳାହାଣ୍ଡି । ସେଠି ମୋର ବଦଳି ହେଲା ଥୁଆମୂଳ ରାମପୁରକୁ । ଘୋର ଜଙ୍ଗଲ ଜାଗା । ଦେଖ ବାବୁ, ମୁଁ ନିଜ ଅଙ୍ଗରେ ନିଭାଇଥିବା କଥା କହୁଚି, ମନଗଢ଼ା ଗଳ୍ପ କହୁ ନାହିଁ । ଏଥିରେ ତୁମେ ଯଦି ଭାଷାର ଚାତୁର୍ଯ୍ୟ, ଅଲଙ୍କାର, ଶୈଳୀ, ଭାବ, ନାଟକୀୟ ଉତ୍କଣ୍ଠା ଆଦି ଖୋଜି ବସିବ ତେବେ ନିରାଶ ହେବ । ଯାହା ଯେମିତି ଘଟିଥିଲା ସିଧା ସିଧା କହିଯିବି ।

ହଉ ହଉ । ଭଣିତା ଥାଉ, କୁହ, ଆମେ କହିଲୁ ।

ବେଶ ଗଲି ଥୁଆମୂଳ ରାମପୁର । ମୋର ପ୍ରଧାନ କର୍ତ୍ତବ୍ୟ ହେଉଚି ଜଙ୍ଗଲରୁ ଯେପରି କେହି ଅବୈଧ ଭାବରେ ଗଛ କାଟି ନ ନିଅନ୍ତି ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବା । ଆଚ୍ଛା, ତୁମ୍ଭମାନଙ୍କ ଭିତରୁ କାହାରି କଳାହାଣ୍ଡି ଯିବାର ସୌଭାଗ୍ୟ ବୋଧହୁଏ ହୋଇ ନାହିଁ

—ନା ।

—ଅତି ସୁନ୍ଦର ମନୋରମ ସ୍ଥାନ ! କେବଳ ଗୋଟିଏ ଭୟ ହେଉଚି ବାଘ ଭୟ । ଶୀତଦିନରେ ସବୁ ଜଙ୍ଗଲ ଜାଗାଠାରୁ କଳା-

Digitized by srujanika@gmail.com

ହାଣ୍ଡିରେ ବାଘଦ୍ୱାରା ମନୁଷ୍ୟ ଓ ପଶୁର ମୃତ୍ୟୁ ବେଶୀ । ବାଘ ଉପଦ୍ରବରେ ଗାଁ ଗାଁ ଶୂନ୍ୟ ହୋଇଯାଏ, କୃଷି କାମ ବନ୍ଦ ହୋଇଯାଏ । ବନ୍ଦୋବସ୍ତ ନଥିଲେ ଗୋଟିଏ ଗାଁ ନା ଦେଖି ସେଠି ଯାଇ ହୁଏ ତ ଦେଖିବ ଗାଁ ନା ଫାଁ, କେନ୍ଦୁ ନାହାଁନ୍ତି, ପ୍ରକାଣ୍ଡ ପ୍ରକାଣ୍ଡ ଶାଳ ପିଆଶାଳ ଗଛ, ଘଞ୍ଚ ଜଙ୍ଗଲ । ଏପରିକି କଳାହାଣ୍ଡିର ପ୍ରଧାନ ସହର ଭବାନୀପାଟଣାଠାରୁ ମାତ୍ର ପାଞ୍ଚମାଇଲ ଦୂରରେ ଜଙ୍ଗଲରେ ବାଘ ଦେଖାଯାଇଛନ୍ତି ।

ଯାଃ, ବାଜେ କଥା କହନା, ମୁଁ କହିଲି ।

ବିରକ୍ତ ହୋଇ ଜୀବାନନ୍ଦ କହିଲା, ଯାହା ଜାଣନା ସେ ବିଷୟରେ ଏପରି ନିଶ୍ଚିତ ଭାବରେ କହିବା ହେଉଚି ଉଦ୍ଧତାମି । ବାମାଚରଣଙ୍କୁ ଜାଣ ?

ଆରେ ହଁ, ସେଇ ଭଣ୍ଡ, ମୁହଁରେ ସର୍ବଦା ଭଗବାନଙ୍କ କଥା, ଆଉ କାମରେ ଠିକ୍ ଓଲଟା—ମୁଁ କହିଲି ।

— ହୋଇପାରେ । ସେ ଆଜି ଡାକ୍ତର ମଜିନ୍ଦ୍ ଲାଲ—

—ଡାକ୍ତର ମଜିନ୍ଦ୍ ଲାଲ ? ଓଃ ହୋ, ଯିଏ ସେଠି ମେଲେରିଆ ଅଫିସର ଥିଲେ ?

—ହଁ, ସେ ଦୁହିଁଙ୍କର ଇଚ୍ଛା ହେଲା କଳାହାଣ୍ଡିର ଜଙ୍ଗଲ ଦେଖିବାକୁ । ବେଶୀ ନିବିଡ଼ ଜଙ୍ଗଲ ଯିବାକୁ ତ ସାହସ ନାହିଁ । ପ୍ରସିଦ୍ଧ ଶିକାରୀ ଲାଲ୍ ସାହେବଙ୍କ ସହିତ ଗଲେ ୫ ମାଇଲ ଦୂରକୁ ଗୋଟିଏ ଗାଉଁଲି ଜଙ୍ଗଲକୁ ଦିନ ୧୧ ଟା ବେଳେ । କିଛି ଦୂର ଗଲାପରେ ଦେଖିଲେ ଗୋଟିଏ ବାଘ ମରି ପଡ଼ିଚି । ତା'ର ଗୋଟାଏ ଗୋଡ଼ କିଏ ଖାଇଯାଇଚି । ଆଶ୍ଚର୍ଯ୍ୟ କଥା । ବାଘର ମାଉଁସ ପୁଣି କିଏ ଖାଇବ ? ଲାଲ୍ ସାହେବ କହିଲେ ତା'ର ବାଘୁଣୀ ଖାଇଯାଇଚି, ନିଶ୍ଚୟ ପାଖରେ କେଉଁଠି ଅଛି । ତାଙ୍କର ଶିକାରୀ ପ୍ରବୃତ୍ତି ପ୍ରବଳ

Digitized by srujanika@gmail.com

ହୋଇ ଉଠିଲା । ସେ କିଛୁ ଲୋକ ସାଙ୍ଗରେ ନେଇ ବାମାଚରଣ ଓ ଡାକ୍ତରଙ୍କୁ ଗୋଟାଏ ଗଛ ଉପରେ ବସାଇଦେଇ ବାହାରିଗଲେ । ସୂର୍ଯ୍ୟ ଠିକ୍ ମୁଣ୍ଡ ଉପରେ । ଚାରିଆଡ଼େ ବନାନୀର ନିସ୍ତବ୍ଧତା । ହଠାତ୍ ଗୋଟାଏ ଗୋଧ ମାଙ୍କଡ଼ ଦୂରରେ ହୁଙ୍କାର ଦେଲା ଓ ଲୁଚି ଗଲା । ଏହା ବାଘର ଆଗମନ ବାର୍ତ୍ତା ଜଣାଇଦିଏ । ଗୋଟାଏ ଭାଲୁ ନିକଟସ୍ଥ ଗୋଟାଏ ନାଳରେ ବସି ଭାଁ ଭାଁ କରି ରଡ଼ିଲା ଓ ଏଣେ ତେଣେ ଉତ୍କଣ୍ଠ ଭାବରେ ଚାହିଁଲା । ଦି'ଜଣ ବୃଦ୍ଧଙ୍କୁ ମୃତ୍ୟୁ ଭିକ ପାଇଁ ଚାହିଁଲେ, ମଣିଷ ପ୍ରତି ତାଙ୍କର ସେଇ ଶେଷ ଦୃଷ୍ଟି ଜାଣି ଦୀର୍ଘ ନିଶ୍ୱାସ ପକାଇଲେ । କିଛୁକ୍ଷଣ ପରେ ଟିକିଏ ଆଉଁଷିଣିଆ ଗନ୍ଧ ଭାସି ଆସିଲା । ମାଛ ମାଉଁସ ନ ହେଲେ ବି ଟିକିଏ ଆଉଁଷିଣିଆ ଗନ୍ଧ ନ ହେଲେ ଯେଉଁମାନଙ୍କ ଭାତଗୁଣ୍ଡା ଉଠେ ନାହିଁ ସେମାନେ ସେ ଗନ୍ଧରେ ନିସ୍ତେଜ ହୋଇ ପଡ଼ିଲେ । ତାହାର କିଛୁକ୍ଷଣ ପରେ ଶୁଭିଲା ଭୀଷଣ ଗର୍ଜନ ଅତି ନିକଟରେ । ଗଛର ଡାଳକୁ ପ୍ରାଣ-ମୂର୍ଚ୍ଛାରେ ଯାଉଁଳି ଧରିଥିଲେ ସୁଦ୍ଧା ସେମାନଙ୍କର ହାତ ଶିଥିଳ ହୋଇଗଲା, ଦୁହେଁ ପାଚିଲା ଫଳ ପରି ଗଛରୁ ତଳେ ଲଥ୍ କିନା ପଡ଼ିଲେ ତା'ପରେ......

ତା'ପରେ ? ଆମେ ଉତ୍କଣ୍ଠାର ସହ ପଚାରିଲୁ ।

—ତା'ପରେ ଭାଗ୍ୟକୁ ଆସି ଅନ୍ୟ ଦଳେ ଶିକାରୀ ପହଞ୍ଚିଗଲେ । ସେମାନେ ଆସି ଦେଖନ୍ତି ଏମାନେ ବେହୋସ ହୋଇ ପଡ଼ିଛନ୍ତି । ଥାଉ ସେ କଥା । ମୁଁ ମୋ ଅଭିଜ୍ଞତା କଥା କହୁଛି । ଦିନେ ରାତି ପ୍ରାୟ ୯ଟା ବେଳେ ଖବର ପାଇଲି ଦଳେ ଲୋକ ଜଙ୍ଗଲ ଭିତରେ ପଶି କାଠ କାଟୁଛନ୍ତି । ସାଙ୍ଗେ ସାଙ୍ଗେ ବନ୍ଧୁକ ଓ ଟର୍ଚ୍ଚ ଆଲୁଅ ଧରି ଛୁଟିଲି ଜଙ୍ଗଲ ଭିତରକୁ । ଅଧା ବାଟ ଗଲାପରେ ଗୋଟାଏ ଗଭୀର ପାହାଡ଼ୀ ନାଳା ପଡ଼ିଲା । ଚାରିଆଡ଼େ ନିବିଡ଼ ଜଙ୍ଗଲ । ଆଉ

Digitized by srujanika@gmail.com

ସେଇ ଜାଗାଟା ପୁଣି ବାଘମାନଙ୍କର ପାଣି ପିଇବା ଜାଗା ଜଣାଥାଏ। ବନ୍ଧୁକରେ ଗୁଳି ଭରତି କରି ଟର୍ଚ୍ଚ ଆଲୁଅ ନେଇ ସାହସ କରି ମୁଁ ବୁଲିଲି, ଟର୍ଚ୍ଚ ଆଲୁଅ ଟିପିବା ମାତ୍ରେ ନଜରରେ ପଡ଼ିଲା ଠିକ୍ ୨୦ ହାତ ଦୂରରେ ଗୋଟିଏ ବାଘୁଣୀ ଓଗାଳୁଥାଏ ମଲା ମଣିଷ ଉପରେ ବସିଛି.........

ବାଘୁଣୀ ବୋଲି କେମିତି ଜାଣିଲ ?

—ମଣିଷ ଉପରେ ଦୁଇଟି ବାଘଛୁଆ ବସି ଖାଉଥାନ୍ତି । ବାଘୁଣୀ ମଝିରେ ମଝିରେ ମାଉଁସ ତା' ନଖରେ ଖେଳାଇ ଦେଉଥାଏ ଆଉ ତା'ର ଛୁଆମାନେ ଦାନ୍ତରେ ଟାଣି ନଖରେ ଆମ୍ପୁଡ଼ି ଖାଉଥାଆନ୍ତି । ଯେମିତି ମୋ ନଜରରେ ପଡ଼ିଛି ବନ୍ଧୁକ ଉଠାଇଲି ମାରିବାକୁ । ବାଘୁଣୀ ତା'ର ଦୁଇଛୁଆଙ୍କୁ ଧକ୍କା ମାରି ସଙ୍କେତ ଦେଲା ପଳାଇବାକୁ ଓ ନିଜେ ମଧ୍ୟ ପଳାଇ ଲୁଚିଗଲା ।

ହ୍ୟାପ୍ ଏକ ଲମ୍ବର ଉତ୍ତର । ତୋ ଲୁଗା ଅବସ୍ଥା କେମିତି ହେଲା ସେତେବେଳେ ? ମଦନ ପଚାରିଲା ।

—ଆରେ, କୁଳକୁଣ୍ଡଳିନୀ ଖାଲି ଅତ୍ୟାଧିକ ପ୍ରେମରେ ଜାଗ୍ରତ ହୁଏ ନାହିଁ ଯେ, ଅତ୍ୟଧିକ ଭୟରେ ମଧ୍ୟ ଜାଗେ । କୁଳକୁଣ୍ଡଳିନୀ ଜାଗ୍ରତ ହେଲେ ମଣିଷ ଦୁଃସାଧ୍ୟ କାମ କରିଥାଏ । ମୁଁ ବାଘୁଣୀ ତ ବୁଲିଗଲା କିନ୍ତୁ ମୋର ପାଦ ଚଳିଲା ନାହିଁ । ନ ଯଯୌ ନ ତସ୍ଥୌ ଅବସ୍ଥାରେ ପଡ଼ି ସେଇଠି ଛିଡ଼ା ହୋଇ ରହିଲି ସେମିତି ସେଇଆଡ଼େ ବନ୍ଧୁକ ମୁହାଇଁ । ଭୟରେ ଗୋଡ଼ ଥରୁଥାଏ । ବାହ୍ୟଜ୍ଞାନ ନ ଥାଏ କହିଲେ ଚଳେ । କେତେବେଳ ପର୍ଯ୍ୟନ୍ତ ସେମିତି ଛିଡ଼ା ହୋଇଥିଲି, ଜାଣେ ନା । ହଠାତ୍ ପଛଆଡ଼ୁ ଗୋଟାଏ ପ୍ରଚଣ୍ଡ ଚରମ ଧକ୍କା ଖାଇ ଦୁମ୍ କରି ତଳେ ପଡ଼ିଗଲି । ବନ୍ଧୁକଟା ଛିଟିକିପାଇ ଅନେକ ଦୂରରେ ପଡ଼ିଲା । ଟର୍ଚ୍ଚ ଆଲୁଅଟା ମଧ୍ୟ ଛିଟିକି ଅଳ୍ପଦୂରରେ ପଡ଼ିଲା

Digitized by srujanika@gmail.com

କରୁ କରୁଥାଏ, ମୋ ଆଡ଼କୁ ଅାଲୁଅ କରି । ଅଳ୍ପକ୍ଷଣ ପର୍ଯ୍ୟନ୍ତ ମୁଁ ହତଜ୍ଞାନ ହୋଇ ଗଲି । ଧୀରେ ଧୀରେ ଚେତା ଆସିବାରୁ ସାମାନ୍ୟ ଟିକିଏ ମୁଣ୍ଡ ଟେକି ପଛକୁ ଗୃହିଁ ଦେଖିଲି ବାଘୁଣୀ ନାହିଁ । ଏହି ସୁଯୋଗରେ ପଳାଇ ଯିବାପାଇଁ ଧୀରେ ଧୀରେ ଗୁରୁଣ୍ଡି ଗୁରୁଣ୍ଡି ମୁଁ ହାତେ ଯାଇଛି କି ନା ଗୋଟାଏ ନରମ ଉଷ୍ମ ସ୍ପର୍ଶ ମୋ ପିଠି ଉପରେ ଅନୁଭବ କଲି । ଶିହରଣ । ସତ କହୁଛି ମୁହୂର୍ତ୍ତକ ପାଇଁ ଭାରି ଆରାମ ଲାଗିଲା । ବିଶ୍ୱାସ କରିବ ନାହିଁ ସେ ନରମ ଉଷ୍ମ ସ୍ପର୍ଶପାଇଁ ହେଉ ବା ଅତ୍ୟଧିକ ଭୟରେ ହେଉ ହଠାତ୍ ଗୋଟାଏ ଶିହରଣ ଅନୁଭବ କଲି ଅଙ୍ଗେ ଅଙ୍ଗେ, କେମିତି ଗୋଟାଏ କାମ-ଭାବ ଜାଗି ଉଠିଲା ! ଆଶ୍ଚର୍ଯ୍ୟ !

—କଅଣ କହୁଚୁ ତୁ !!

—ଉଦ୍ଭଟ !

—ଆରେ ନା, ଗୋଟିଏ ବର୍ଣ୍ଣ ବି ମିଛ କହୁ ନାହିଁ, ତା' ପରେ ଶୁଣ । ବାଘୁଣୀ କ'ଣ କଲାନା ମୋ' ଗାଲରେ ଚୁମ୍ବନ ଦେଲା !!

—ଆଏଁ ! ସମସ୍ୱରରେ ଚିତ୍କାର କରି ଉଠିଲୁ ।

—ହଁ, ତା'ର ମୁହଁ ନୁଆଁଇ ଦେଇ ମୋ ଗାଲଉପରେ ଭାରି ଅତି ଧୀରେ ଧୀରେ ଶୁଙ୍ଘିବାକୁ ଲାଗିଲା । ତା'ର ନିଶ ମୋ ଗାଲରେ ଲାଗି କୁତୁ କୁତୁ ଲାଗିଲା । ମୁଁ ହସି ଉଠିଲି । ପ୍ରକାଣ୍ଡ ଗୋଟାଏ ହାଁ କରି ସେ ହେଁଟାଳିଲା । ଠିକ୍ ଯେମିତି ମନେ ହେଲା ସେ ହସି ଉଠିଲା ମୋ ହସରେ ହସ ମିଶାଇ ।

ମଦନ କହିଲା, ପୂର୍ବଜନ୍ମରେ ସେ ତୋହର ପ୍ରେମିକା ବା ଭାର୍ଯ୍ୟା ଥିଲା !

—ହୋଇପାରେ । ମୋର ଧାରଣା ପୃଥିବୀରେ ସବୁ ପ୍ରାଣୀ-ମାନଙ୍କ ମଧ୍ୟରେ କିଛି ନା କିଛି ଗୋଟାଏ ସମ୍ପର୍କ ଅଛି । ତା'ପରେ

Digitized by srujanika@gmail.com

କଅଣ ହେଲା ନା ବାଘୁଣୀ ଧୀରେ ମୋ ବେକରେ ଦାନ୍ତ ଲଗାଇଲା । ଦୁଇଟି ସାବଲ ଯେମିତି ମୋର ବେକର ଦୁଇ ପଟରୁ କଏ କେଞ୍ଚି ଦେଲା । କିନ୍ତୁ ଦାନ୍ତ ଗଳାଇଲା ନାହିଁ । ମୁଁ କିନ୍ତୁ ମନେ ମନେ ଗଜନିସ୍ତାରଣ ଗାଇବାକୁ ଲାଗିଲି । ହଠାତ୍ ଉଠି ବାଘୁଣୀ ପଳାଇଲା ।

ସ୍ୱପ୍ନେଶ୍ୱର କହିଲା, ଗଜନିସ୍ତାରଣ ଗାଇଲେ ନିଶ୍ଚୟ…

—ମୁଁ ମଧ୍ୟ ସେଇଆ ଭାବିଥିଲି । ଧୀରେ ଉଠି ପଳାଇବାକୁ ଯେମିତି ଚେଷ୍ଟା କରିଛି ପୁଣି ସେଇ ନରମ ଦେହର ମୃଦୁ ଧକ୍କା, ଦୁମ୍ କରି ତଳେ କଚଡ଼ା ପଡ଼ିଲି ପୁଣି । ବାଘୁଣୀ ଏଥର ମୋର ହାତ ଦାନ୍ତରେ କାମୁଡ଼ି ଧରି ଟାଣିବାକୁ ଲାଗିଲା, ଜଙ୍ଗଲ ଭିତରକୁ ନିର୍ଜ୍ଜନ ସ୍ଥାନକୁ । ମୁଁ ଏଥର ବାଘୁଣୀର ଏହି ଶେଷ ଖେଳ ଭାବି ଭୟରେ ଚିତ୍କାର କରି ଉଠିଲି । ବାଘୁଣୀ ପୁଣି ପଳାଇଲା ଜଙ୍ଗଲ ଭିତରକୁ । ଏମିତି କେତେଥର ସେ ମୋ ସାଙ୍ଗରେ ଲୁଚକାଳି ଖେଳିଲା । ମଝିରେ ମଝିରେ ବାଘୁଣୀର ଛୁଆ ଦୁଇଟି ଆସି ଖାଦ୍ୟ ସହିତ ସେମିତି ଖେଳୁଥାଆନ୍ତି । ଏତେ ସୁନ୍ଦର ଛୁଆ ଯୋଡ଼ିକ ହୋଇ ଥାଆନ୍ତି ଯେ, ସତ କହୁଛି, ତାଙ୍କ ସହିତ ଖେଳିବାକୁ ଇଚ୍ଛା ହେଉଥାଏ । ମୋର ମାନସିକ ଅବସ୍ଥା ଶେଷରେ ଏପରି ହେଲା ଯେ ମୁଁ ଭାବିଲି ପାଗଳ ହୋଇଗଲିଣି । ସେ ପରିସ୍ଥିତିକୁ ଥରେ ଅନୁଭବ କର ! ଅଥଚ ତାହାରି ଭିତରେ ମୁଁ ଭାବୁଥାଏ କାଲି ସକାଳୁ କଅଣ ରିପୋର୍ଟ ଲେଖିବି, ବଡ ହାକିମ ଘିଅ ମାଗିଥିଲେ କିଣି ଦେବି କେଉଁଠୁ, ଘରଟା ମେଲା କରି ଆସିଛି, ନିଶ୍ଚୟ ଚୋର ପଶି ମୋର ସବୁ ନେଇ ଯାଇଥିବ ! ଆଶ୍ଚର୍ଯ୍ୟ ! ମୋର ମନ ଉପରେ ଆଉ କୌଣସି ଆୟତ୍ତ ରହିଲା ନାହିଁ, ଯେତେବେଳେ, ମନଇଚ୍ଛା ଖାଲି ଭାବୁଥାଏ । ଅଥଚ ପୁଣି ଭାବୁଥାଏ ଏ ସବୁ କଅଣ ଭାବୁଛି ମୁଁ ! କିନ୍ତୁ ଆଶ୍ଚର୍ଯ୍ୟର କଥା ସେ ହାସ୍ୟାସ୍ପଦ ଭାବନା ସବୁ

Digitized by srujanika@gmail.com

ଫେର ଆସୁଥାଏ । ଏମିତି ହେଲା ଯେ ଭଗବାନଙ୍କୁ ମୁଁ ପ୍ରାର୍ଥନା କଲି, ହେ ଭଗବାନ୍ ! ଆଉ ସହ୍ୟ କରି ପାରବି ନାହିଁ, ବାଘୁଣୀ ମୋତେ ମାରଦେଉ ।

ଏହି ସମୟରେ ବାଘୁଣୀ ପୁଣି ଆସି ମୋ ଉପରେ ଶୋଇଲା । ମୁଁ ହାତଯୋଡ଼ି ତାକୁ କହିଲି, ମା ମୋତେ ଆଉ ଏମିତି କର ନା ।

ବାଘୁଣୀ ଅଟ୍ଟହାସ୍ୟ କରି ଉଠିଲା । ଏହି ସମୟରେ ଅତି ନିକଟରେ ହେଲା ଆଉ ଗୋଟାଏ ବାଘର ଗର୍ଜନ ଏବଂ ସାଙ୍ଗେ ସାଙ୍ଗେ ବନ୍ଧୁକର ଶବ୍ଦ । ସେ ବନ୍ଧୁକର ଶବ୍ଦ ମୋ କାନରେ ଅମୃତ ଢାଳି ଦେଲା ପରି ଲାଗିଲା । ତା ପରେ ମୁଁ ସମ୍ପୂର୍ଣ୍ଣରୂପେ ହତଜ୍ଞାନ ହୋଇଗଲି । ଅତି ବିପଦ୍‌ବେଳେ ଅଭାବିତଭାବରେ ରକ୍ଷାର ଉପାୟ ଆସିଗଲେ ମଣିଷ ଅତି ନିଶ୍ଚିନ୍ତରେ ବିହ୍ୱଳ ହୋଇଯାଏ । ସେଇଥି- ପାଇଁ ତ ସୁଖ ସାଙ୍ଗକୁ ଦୁଃଖ ଲାଗି ରହିଛି । ତା'ପରେ କଅଣ ହୋଇଛି ମୁଁ ଜାଣେ ନା । ଅନେକ କ୍ଷଣ ପରେ ମୁଁ ଅନୁଭବ କଲି ମୁଁ ଗୋଟାଏ କାମ୍ପରେ ବୃନ୍ଦାହୋଇ ପାଉଛି । ପରେ ଜାଣିଲି ଯେଉଁମାନଙ୍କୁ ମୁଁ ଧରିବାକୁ ଯାଉଥିଲି ସେଇମାନେ ମୋତେ ବଞ୍ଚାଇଛନ୍ତି । ସେମାନେ ଅନେକ ଲୁଚ ଢାଙ୍କି ଦେଇଥିଲେ, କିନ୍ତୁ ମୁଁ ତାଙ୍କ ବିରୁଦ୍ଧରେ ଆଉ ରିପୋର୍ଟ ଦେଇନାହିଁ ।

ଆମେ ସମସ୍ତେ ଉତ୍କଣ୍ଠାରେ ନିଶ୍ୱାସ ବନ୍ଦ ଶୁଣୁଥିଲୁ । ସରିଲା ପରେ ସମସ୍ତେ ଏକା ସାଙ୍ଗରେ ଦୀର୍ଘ ନିଶ୍ୱାସ ପକାଇ ପଚାରିଲୁ । ସତ କଥା ନା ଉଡ଼ାଣିମି ବା ?

ଉଡ଼ାଣିନନ୍ଦ ହସି କହିଲା, ଏଇ ଦୋଷ ତୁମର ଗଳ୍ପ ନାହିଁ । କଥାଟା ଶୁଣିଲ, ଉତ୍କଣ୍ଠା, ଆଗ୍ରହ, ଆଶ୍ଚର୍ଯ୍ୟ ହେବା ସବୁ ତୁମର ହେଲା, ଆନନ୍ଦ ପାଇଲ । କଥାଟା ସତ ହେଉ ବା ନ ହେଉ ତୁମର କଅଣ ଗଲା ! ନାଇଁ, କଥାଟା ହେଉଛି ଏ ସବୁ ଯଦ

Digitized by srujanika@gmail.com

ଗୋଟାଏ ମିଛ ଗପପାଇଁ ଜାତ ହୋଇଥାଏ ତେବେ ଅନୁଶୋଚନା ହେବ ଯେ ତୁମେ ଠକି ଗଲ । ଏଇ ଗୁଣପାଇଁ ତୁମର ଯେତେ-ବେଳେ କ ଭଗବାନଙ୍କପାଇଁ ବ୍ୟାକୁଳତାର ଆନନ୍ଦ ଜାତ ହେଉଛି ସେତେବେଳେ ଠିକ୍ ଭାବୁଛ ଯଦି ଭଗବାନ୍ ନ ଥାନ୍ତି ତେବେ ଠକି ଯିବ । ଅତି ନିକୃଷ୍ଟ ଭାବନା । ସେଥିରେ ତୁମେ ନିଜେ ଠକି ଯିବ ।

—ରଖି ଦେ ତୋ ତତ୍ତ୍ୱ କଥା, ଆଚ୍ଛା ହିଷ୍ଟପୁ ବାଘୁଣୀଟି କେଉଁଠି ଭେଟିଥିଲୁ ? ମୁଁ ପଚାରିଲି ।

ଉହସ୍ୱନନ୍ଦ କିଛିକ୍ଷଣ ଗମ୍ଭୀର ହୋଇଗଲା ଓ ତା' ପରେ ଦୀର୍ଘ ନିଶ୍ୱାସ ପକାଇ କହିଲା, ଏଇ ପୁରୀ ସହରର ରାମଚଣ୍ଡୀ ସାହିରେ ।

ବାହାରିଲା ଉହସ୍ୱମି ! ମଦନ ଧମକାଇ କହିଲା

ଉହସ୍ୱନନ୍ଦ ପୁଣି ଦୀର୍ଘ ନିଶ୍ୱାସ ପକାଇ କହିଲା, ଆରେ ଭାଇ । ତେବେ ଶୁଣ୍ । ମୁଁ ଅନେକ ଦିନରୁ ପୁରୀ ଆସିଲଣି ବଦଳି ହୋଇ । କିନ୍ତୁ ତୁମ ସହିତ ଦେଖା କରି ନାହିଁ, ତା'ର କାରଣ ମୋ କଥାରୁ ବୁଝି ପାରିବ । ଆଚ୍ଛା ତୁମେ ନିଶ୍ଚୟ ଶ୍ରୀ——ବାବୁଙ୍କୁ ଜାଣ । ମୋ ବସା ପାଖରେ ତାଙ୍କର ବସା । ତାଙ୍କର କନ୍ୟାଙ୍କର ନା' ରସବନ୍ତୀ ! ରସବନ୍ତୀ ! ସତେ ଏକା ରସବନ୍ତୀ ସେ । କବିସମ୍ରାଟଙ୍କ କାବ୍ୟ କବିତାର ଉପଯୁକ୍ତ ନାୟିକା ସେ । ବିଧାତା ଯେପରି କବି-ସମ୍ରାଟଙ୍କ କାବ୍ୟ କବିତା ପଢ଼ି ତାକୁ ଗଢ଼ିଛନ୍ତି । ବୟସ ଷୋହଳ ପ୍ରାପ୍ତ ହୋଇଣି । ଅର୍ଥାଭାବରୁ ତାଙ୍କର ବିବାହ ହୋଇ ନ ଥାଏ ।

ଶ୍ରୀ——ବାବୁଙ୍କର ଦିନେ ଦେହ ଭାରି ଖରାପ ହେଲା । ମୋତେ ଡାକରା ପଡ଼ିଲା, ଟିକିଏ ଡାକ୍ତର ଡାକି ଦେବା ପାଇଁ । ତାଙ୍କ ଘରକୁ ଗଲି । ଦୁଆର ଖୋଲି ଦେଲେ ରସବନ୍ତୀ । ମୋ ଉପରେ ନଜର ପଡ଼ିବା ମାତ୍ରେ ଅପାଙ୍ଗ ଦୃଷ୍ଟିରେ ଟିକିଏ ସ୍ମିତ ମୁଚୁକି ହସି ଡାକି

Digitized by srujanika@gmail.com

ଶୁଣିଲେ—ବୋଉ, ଭାଇ ଆସିଲେଣି । କି ସୁନ୍ଦର ବ୍ୟବହାର ! ସତେ ଯେମିତି ମୁଁ ସେମାନଙ୍କ କେତେ ଆପଣାର କେବେଠୁ ଚିହ୍ନା । ଅଥଚ ସେଇଦିନ ମୋର ହେଲା ପ୍ରଥମ ପରିଚୟ ।

ବର୍ଷା ପଡୁଥାଏ । କିନ୍ତୁ ଉର୍ବଶୀ ଯେତେବେଳେ କହିଲେ ଡାକ୍ତର ଡାକି ଦେବାକୁ, ମୁଁ ବିନା ଆପତ୍ତିରେ ଦୌଡ଼ିଲି । ଛତା ନେବାକୁ ମଧ୍ୟ ଭୁଲି ଗଲି ।

ତା' ପରେ କ୍ରମେ କ୍ରମେ ତାଙ୍କ ସହିତ ଘନିଷ୍ଠତା ହେଲା । ଉର୍ବଶୀଙ୍କ ନିକଟରେ ମୁଁ ଯେତେବେଳ ପର୍ଯ୍ୟନ୍ତ ଥାଏ କେମିତି ବିହ୍ୱଳତା ଭିତରେ ସମୟ ବିତିଯାଏ ଜାଣି ପାରେ ନା ।

ଦିନେ ଉର୍ବଶୀ କହିଲେ, ଡମ୍ବରୁ ଭାଇ, ତୁମେ ନ ଆସିଲେ ମୋତେ ଭାରି ଖରାପ ଲାଗେ । କାହିଁକି କହି ପାରିବ ?

ମୁଁ ଆଉ କାରଣ କହିବି କଅଣ ! ମୁଣ୍ଡ ଭିତର ତ କଅଣ ହୋଇଗଲା, ଖାଲି ଅନେଇ ରହିଲି ତାଙ୍କ ଆଡ଼େ । ବିହ୍ୱଳତା ଭିତରେ କେତେବେଳେ ଯେ ତାଙ୍କ ହାତ ଧରି ପକାଇଛି ଜାଣେ ନା ।

ଧୀରେ ଧୀରେ ହାତ କାଢ଼ି ନେଇ ସେ ମରାଳ ଗମନରେ ଦୌଡ଼ି ଗଲେ ଘର ଭିତରକୁ, ଆଉ କହି ଗଲେ, ଛିଃ, ସେ ସବୁ କଅଣ ?

ହଠାତ୍ ଯେମିତି ଖୁବ୍ ଉଚ୍ଚରୁ ଦୁମ୍‌କିନା ତଳେ ପଡ଼ିଗଲି । ଆଉ ତାଙ୍କ ଦେଖା ପାଇଲି ନାହିଁ ସେ ଦିନଯାକ ଯେତେଥର ଗଲି ତାଙ୍କ ଘରକୁ କୌଣସି ନା କୌଣସି ଆଳରେ !

ସେ ଦିନଯାକ ମୋର ଯେ କି ଦୁଶ୍ଚିନ୍ତାରେ କଟିଛି କଅଣ କହିବି । ଆଶା ଓ ନିରାଶାର ଦ୍ୱନ୍ଦ୍ୱ ଭିତରେ ନିଦ ହେଲା ନାହିଁ ।

Digitized by srujanika@gmail.com

ତା’ ପରଦିନ ସକାଳ ହେବା ମାତ୍ରେ ପୁଣି ଚଳିଲି । ଉମବଣ୍ଟଙ୍କୁ ଏକା ପାଖ କହିଲି, ମୋତେ କ୍ଷମା କରିବେ, ଆଉ ଏମିତି ଭୁଲ ହେବ ନାହିଁ, ଏଇ ଶେଷ, ନମସ୍କାର ମୁଁ ଯାଉଛି ।

ମୋର ହାତ ଧରି ପକାଇ ସେ କହିଲେ, ସେଇ ଭୁଲଟାହିଁ ତ ଠିକ୍ ମଣିଷର । ସେ ଭୁଲ ନ ଥିଲେ ତ ମୋର···ପାଉଛ କୁଆଡ଼େ ? ମୁଁ ଜାଣିଥିଲି ତମେ ଆସିବ, ଜଳଖିଆ ବ୍ରନ୍ନା କରି ରଖିଛି, ମୋ ରାଣ, ଖାଇଯିଅ । ତା’ପରେ ମୋ ଅଙ୍ଗକୁ ଚାହିଁ (ଆଃ, କି ସୁନ୍ଦର ସେ ଚାହାଣି !!) ହସି କହିଲେ, [illegible] ଏମିତି ହେଉଛି କାହିଁକି ? କାଲି ରାତିରେ ନିଦ ହୋଇ ନାହିଁ ନିଶ୍ଚୟ ?

ମୁଁ କହିଲି, ଆଖିପତା ବି ଟିକିଏ ପଡ଼ି ନାହିଁ ।

—କାହିଁକି ? ଦେହ ଖରାପ ଥିଲା କି ? ଗୁରୁଜିଙ୍କୁ ବେଶୀ ପରିଶ୍ରମ ପଡ଼ୁଚି ମୁଁ ଜାଣେ ।

—ନା, ନା, ପରିଶ୍ରମ ନୁହେଁ, ଚିନ୍ତା ।

—କି ଚିନ୍ତା ତମର ଏତେ ଶୁଣେ ? ପୁଣି ସେଇ ମନମତାଣିଆ ଦନ୍ତବିକାଶ ।

—ନାଃ, ତୁମେ ଶୁଣି ଆଉ କଅଣ କରିବ । ମୁଁ ଦୀର୍ଘ ନିଶ୍ୱାସ ପକାଇ କହିଲି ।

—ହଉ ଥାଉ । ମୋର ଶୁଣିବା ଦରକାର ନାହିଁ । ମୁଁ ତମର କିଏ କି ? ମୋର ଭୁଲ୍ । ଏତିକି କହି ଅଭିମାନ କରି ସେ ଉଠିଗଲେ ।

ଯାହା ମୁଁ କହିବାକୁ ବ୍ୟାକୁଳ ଥିଲି ତାହା କହିପାରିଲି ନାହିଁ, ସେମିତି ଅଭିମାନ କରି ସେ ଜଳଖିଆ ଥାଳି ରଖିଦେଇ ଗଲେ । ମନରେ ଗୋଟାଏ ଅପୂର୍ବ ଆନନ୍ଦ ଜାତ ହେଲା । ଜଳଖିଆ ଥାଳି

Digitized by srujanika@gmail.com

ଖାଇ ମୁଁ ଅପେକ୍ଷା କରେ ରଞ୍ଜନ ତାଙ୍କ ଆଗମନକୁ । ସେ ଆଉ ଆସିଲେ ନାହିଁ । ଅନେକ ଥର ସେ ମୋ ସାମନାରେ ଯିବାଆସିବା କଲେ, ଘର କାମ କରୁ କରୁ, ମୋ ଆଡ଼କୁ ଟିକଏ ଫେରି ବି ଚାହିଁଲେ ନାହିଁ ।

ମୁଁ ଡାକିଲି ଆସେ । କହି ମୁଁ ଉଠିଲି ।

—ହଉ, କହି ସେ ଚାଲି ଯାଉଥିଲେ ।

ଧୀରେ ପଚାରିଲି, ପୁଣି ଆସିବ କି ?

—ଆସି ପାରନ୍ତି । ଆପଣଙ୍କ ଇଚ୍ଛା । ଗୋଟିଏ ଦୀର୍ଘ ନିଶ୍ୱାସ ତାଙ୍କର ବାହାରି ଆସିଲା ।

ଭାବିଲି, ଆହା ନାରୀମାନେ କି କୋମଳ । ସାମାନ୍ୟ ଟିକିଏ କଥାରେ ଆଘାତ ବି ସେମାନେ ସହି ପାରନ୍ତି ନାହିଁ, ଏ କଥା କେତେଦୂର ସତ୍ୟ !

ମୁଁ ମଧ୍ୟ ଅଭିମାନର ଅଭିନୟ କରି ତା' ପରିଦିନ ଗଲି ନାହିଁ । ତା ପରଦିନ ବି ଗଲିନାହିଁ ।

ଦୁଇଦିନ ପରେ ମୁଁ ଛୁଟି ନେଇ ଘରେ ଥାଏ । ସେତେବେଳେ ଏକମାତ୍ର ଧ୍ୟାନ ଥାଏ ମୋର ରସକଳି । ନାନା କଳ୍ପନା କରୁଥାଏ ତାକୁ କେନ୍ଦ୍ର କରି । ଦ୍ୱିପହର ବେଳେ ହଠାତ୍ କବାଟ ଠେଲି (କବାଟ ମୁଁ ଖୋଲି ରଖିଥିଲି ସେଇ ଆଶାରେ । ଯଦିଓ କେବେ ସେ ମୋ ଘରକୁ ଆସି ନାହାନ୍ତି) ପ୍ରବେଶ କଲେ ରସକଳି । ମୁଁ ଆଖି ବୁଜି ଶୋଇ ପଡ଼ିଥିବାର ଅଭିନୟ କଲି ।

—ଓଃ ହୋ, ନିଜେ ମୋତେ ଅପମାନ କରି ତା' ଉପରେ ଅଭିମାନ । ସେ ମୋତେ ଧୀରେ ଠେଲି ଦେଇ କହିଲେ ।

କି ନରମ ସେ ହାତ ଆଉ କଅଣ କହିବି ! ଆଖି ଖୋଲି ଚାହିଁ ଆଶ୍ଚର୍ଯ୍ୟ ହେବାର ଅଭିନୟ କରି କହିଲି, ତୁମେ ?

Digitized by srujanika@gmail.com

—ହଁ ମୁଁ, ଉନ୍ମାଦଲ ନାହିଁ । ଲୁଚ ଗୁଲ ଆସିଚ । ଆପଣ ମୋର ସବୁ ଲଜ୍ଜା ହରଣ କରନ୍ତୁ ।

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । କୋଳକୁ ଆଉଜାଇ ନେଲି । ସେ ନରମ ଓ ଉଷ୍ମ ଛାଙ୍କ ଦେହଟି । ମୋ ଦେହକୁ ଯିଏ ଲାଗିଗଲେ ।

ହଠାତ୍ ମୋତେ ଠେଲିଦେଇ ସେ ଉଠିପଡ଼ିଲେ । ଆଖିରେ ତାଙ୍କର କ୍ରୋଧ ! ଓସେ କହିଲେ, ଛିଃ ତମେ ଭାଇ । ଏସବୁ ମୋତେ ଭଲ ଲାଗେ ନା । ସବୁ ପୁରୁଷ ସମାନ । ଖାଲି ସେଇ କଥା । ଭାଗ୍ୟ ଘୃଣା ହୁଏ । ଆପଣ ତ ମୋର ଭାଇ । ସେ ସବୁ ପୁଣି କଅଣ ? ଛିଃ ।

ମୁଁ ଆଉ ସହ୍ୟ କରି ପାରିଲି ନାହିଁ । କହିଲି, ଉଷ, ତୁମର କ ମତଲବ ପରିଷ୍କାର କରି କହ । ମୁଁ ଆଉ ଏ ଜ୍ୱାଳା ସହିପାରୁ ନାହିଁ ।

—ମତଲବ ? ମାନେ ! ସେ ଆଶ୍ଚର୍ଯ୍ୟ ଭାବରେ ପଚାରିଲେ । ଟିକଏ ହସିଲେ ମଧ୍ୟ ।

ମୁଁ କହିଲି, ତୁମେ ଯଦି ଭାଇ ବୋଲି ମୋତେ ଜ୍ଞାନ କରୁଚ ତେବେ ଏମିତି ବ୍ୟବହାର କରୁଚ କାହିଁକି ?

ସେ କହିଲେ, ମୁଁ ଜାଣେ ପରା, ସବୁ ପୁରୁଷ ସମାଜ, ନାରୀକୁ କେବଳ ଗୋଟିଏ ପ୍ରକାର ସମ୍ପର୍କରେ ସେମାନେ ଭାବନ୍ତି । ମୁଁ କ ବ୍ୟବହାର କରିଚି ଯାହା ଭଉଣୀ ଭାଇ ସହିତ କରେ ନାହିଁ, ଶୁଣେ ?

—ଆଚ୍ଛା ତେବେ ଯାଅ ଭଉଣୀ, ଯାଅ ? ମୁ କହିଲି ।

—ଓଃ ହୋ ? ରାଗ ? ପୁଣି ସେଇ ହସ ।

ଓଃ ପାଗଳ ହୋଇଗଲି ମୁଁ । କି ପ୍ରହେଳିକା ଏ । ମୁଁ ଦୃଢ଼ ଭାବରେ କହିଲି, ଯାଅ ଉଷ । ଗଲାବେଳେ ସେ ମୋର ହାତ ଉପରେ ସାମାନ୍ୟ ଟିକଏ ଚାପ ଦେଇ ମୁରୁକି ହସି ଚାଲିଗଲେ ।

Digitized by srujanika@gmail.com

ମୁଁ ଆଉ ସ୍ଥିର ରହିପାରିଲି ନାହିଁ । ତାଙ୍କ ପଛେ ପଛେ ତାଙ୍କ ଘରକୁ ଗଲି ଏଥର ଗୋଟାଏ ଶେଷ ସମାଧାନ କରିବା ପାଇଁ ।

ତାଙ୍କ ଘର ସାମନାରେ ଯାଇ ଶୁଣିଲି, କିଏ ଜଣେ ତାଙ୍କୁ କହୁଛି, ମୁଁ ସବୁ ଖବର ରଖିଛି । ସବୁ ଶୁଣିଛି । ଏ ଖେଳ ତୁମର ବନ୍ଦ କରିଦେବି ଚିରକାଳ ପାଇଁ ଯଦି ମୋତେ ତୁମେ ବିବାହ ନ କର । ମୁଁ ଆଜି…

ଦୁଆରମୁହଁରୁ ଫେରି ଆସିଲି । ଓଃ ହୋ, ତେବେ ଗୋଟିଏ ଶିକାର ହସ୍ତ କରି ସାରିଲେଣି । ଆଜି ଗୋଟାଏକୁ ଦେଖିଲେଇ ଖେଳେଇ ମାରୁଥିଲେ । ମନଟା ବିଦ୍ରୋହ କରି ଉଠିଲା ନାରୀଜାତି ପ୍ରତି । ତୁଳସୀଦାସ ନାରୀଚରିତ୍ର ଠିକ୍ ବୁଝିଛନ୍ତି । ସଚ୍‌ମେ ବାଘିନୀ ପଲକ୍ ପଲକ୍ ଲହୁ ଚୁଷେ…

ରୋମାଞ୍ଚକର କାହାଣୀ ସତେ ! ଆମେ ଅପଲକ ଦୃଷ୍ଟିରେ ଶୁଣୁଥିଲୁ ।

ଉଦୟନନ୍ଦ ଦୀର୍ଘ ନିଶ୍ୱାସ ପକାଇ କଥା ଶେଷ କଲା, କିଛିକ୍ଷଣ ନୀରବ ଥାଇ ସେ କହିଲା, ହେଇ, ମୁଁ ବାହା ହେବି । ତୁମେମାନେ ମୋର ସାଙ୍ଗ, ତୁମକୁ ମନ ଖୋଲି କହୁଛି, ଅନୁରୋଧ କରୁଛି, ଗୋଟାଏ କନ୍ୟା ଠିକ୍ କରିଦିଅ ।

ଆଶ୍ଚର୍ଯ୍ୟ ହୋଇ ଆମେ ସମସ୍ତେ ହାଁ କରି ତା ଆଡ଼େ ଚାହିଁ ରହିଲୁ କେବଳ ।



Digitized by srujanika@gmail.com

# ମହାଯୁଦ୍ଧ

ଦୁର୍ଗାପଦ ତାର ପଚା ବର୍ଷକୁ ମୁହାଁ ବସିଥିବା ସମୟରେ ତାର ଜୀବନର ପ୍ରଥମ ସତରଟି ଆଷାଢ଼ କେତେବେଳେ ମୁଣ୍ଡ ଉପର ଦେଇ ଚାଲିଗଲା, ତାର ଖିଆଲ ନଥିଲା । ତାର ପିତା ବିଷ୍ଣୁ ପ୍ରସାଦ ତାକୁ ତାକୁ ଗଢ଼ୁଥିଲେ ନିଜର ଆଦର୍ଶରେ । ସେ ଥିଲେ ଅତି ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ, କିନ୍ତୁ ଦରିଦ୍ର । ସମାଜରେ ଗଣ୍ୟ ମାନ୍ୟ ହୋଇ ଚିରସ୍ମରଣୀୟ ରହିବାକୁ ତାଙ୍କର ଆଶା ଥିଲା । ଉଚ୍ଚ ହେଲେହେଁ ଅତି ସାଧାରଣ ଏବଂ ସ୍ୱାଭାବିକ ଆଶା । କିନ୍ତୁ ଆର୍ଥିକ ଓ ପାରି-ପାର୍ଶ୍ୱିକ ଇତ୍ୟାଦି ନାନା କାରଣରୁ ତାଙ୍କ ଜୀବନରେ କୌଣସି ଗୋଟିଏ ଆଶା ସେ ଫଳବତୀ କରିଇ ପାରି ନାହାନ୍ତି । କରିବାର ସାମର୍ଥ୍ୟ କିମ୍ବା ସମୟ ମଧ୍ୟ ଆଉ ନାହିଁ । ତାଙ୍କର ଶେଷ ଆଶା ଗୋଟିଏ ପୁଅକୁ ଗଣ୍ୟ ମାନ୍ୟ କରାଇ ଆତ୍ମକଳ ମିନା କୋକା ଚିରସ୍ମରଣୀୟ ରହିବାକୁ । ପୁଅ ଆଶାରେ କେତେବେଳେ ମଧ୍ୟ-ଜୀବନର ଉପଭୋଗ ଚାଲିଗଲା ପୁଅ ଆଶା ତ୍ୟାଗ କରି ମୃତ୍ୟୁ ଅପେକ୍ଷାରେ ସେ ଥିଲେ । ତାଙ୍କର ସ୍ତ୍ରୀ ବରଦା ସୁନ୍ଦରୀ ଦେଖି ଅଭଣ୍ୟ ଖୁବ୍ ସ୍ୱଭାବର । ବାସ୍ତବ ଏବଂ କାଳ୍ପନିକ ନାନା ଭୟରେ

Digitized by srujanika@gmail.com

ସେ ସର୍ବଦା ବ୍ୟସ୍ତ । ଗୋଟିଏ ପୁତ୍ର ବିନା ପୁତ୍ର ନରକରୁ କିପରି ତ୍ରାଣ ପାଇବେ ଏହି ଚିନ୍ତାରେ ସେ ସର୍ବଦା ବ୍ୟାକୁଳ । ପରେ ପରେ ପାଞ୍ଚୋଟି କନ୍ୟା ଜନ୍ମ ଦେଇ ସେ ମଧ୍ୟ ପୁତ୍ରର ଆଶା ତ୍ୟାଗ କରିଥିଲେ । ଷଷ୍ଠବାର ଗର୍ଭବତୀ ହେବା ସମୟରେ ସମସ୍ତେ ଯଥା-ସ୍ଥିତ ଧରି ନେଲେ ଯେ ଏଥର ମଧ୍ୟ ଗୋଟିଏ କନ୍ୟା ହେବ ।

ବେଦନା ଆରମ୍ଭ ହେବା ସଙ୍ଗେ ସଙ୍ଗେ ସେ ପ୍ରସୂତି ଘରକୁ ଗଲେ ଏବଂ ବ୍ୟାକୁଳ ଭାବରେ ଗୋଟିଏ ପୁତ୍ର କଥା ପୁଣି ଥରେ ତେତିଶ କୋଟି ଦେବ ଦେବୀଙ୍କୁ ମନେ ପକାଇ ଦେଲେ । ଅନ୍ଧାରିଆ ସନ୍ତସନ୍ତିଆ ଘର । ଘରର ଘନୀଭୂତ ଅନ୍ଧକାର ଭିତରେ ଗୋଟିଏ କ୍ଷୁଦ୍ର ଦୀପର ଅସହାୟ କ୍ଷୀଣ ଆଲୋକ କେବଳ ନିଜକୁହିଁ ଆଲୋକିତ କରିବା ଛଡ଼ା ଆଉ କିଛି କରିବାର ଉପାୟ ନ ଥିଲା । ଘରର ସ୍ୱରକାନ୍ଥ ଯାକ ଗାର ଟାଣି ସେ ଭାଗ୍ୟ ଗଣିବାକୁ ଲାଗିଲେ । ପ୍ରତ୍ୟେକ ଥର ଫଳ ପାଇଲେ 'ନା'—ଅର୍ଥାତ୍ ପୁତ୍ର ହେବ ନାହିଁ । ଦ୍ୱିଗୁଣ ହତାଶାରେ ସେ ଭଗବାନଙ୍କୁ ଡାକିବାକୁ ଲାଗିଲେ । ସନ୍ତାନଟି ଜାତ ହେବା ମାତ୍ରକେ ସେ ମୂର୍ଚ୍ଛା ଗଲେ । ବସ୍ତ୍ର ପ୍ରସାଦ ବାବୁ ବାହାର ପିଣ୍ଡାରେ ମୁଣ୍ଡରେ ହାତଦେଇ ବସି ପଡ଼ିଲେ । ବରଦା ଦେବୀଙ୍କ ଜନନୀ ଆଖିରୁ ଲୁହ [illegible] ସନ୍ତାନଟିକୁ ଘୃଣାରେ ଠେଲି ଦେଇ କନ୍ୟାର ଶୁଶ୍ରୂଷାରେ ଲାଗିଲେ । ଗୋଟିଏ କ୍ଷୀଣ ଶରୀର ଟିକିଏ କ୍ଷୀଣତର ପ୍ରାଣକୁ ଧରି ନିର୍ବିବାଦରେ ପଡ଼ି ରହିଲା ଅନ୍ଧକାରର ଗହ୍ୱରରେ । ପ୍ରାୟ ଅଧଘଣ୍ଟା ପରେ ବରଦା ଟିକିଏ ସୁସ୍ଥ ହୋଇ କହିଲେ 'ଝୋଉ' ଝିଅ ହେଉ ପଛକେ, ଟିକିଏ ଦେଖ୍ କାହିଁକି ଏତେବେଳ ଯାଏ କାନ୍ଦୁନି । ବରଦା ଦେବୀଙ୍କ ଜନନୀ ସନ୍ତାନଟିକୁ ପରିଷ୍କାର କରିବାକୁ ଯାଇ ପାଟି କରି କହିଲେ "ଆଲୋ ଦୁତି (ଧାଈ), ଦୀପଟା ଆଣିଲୁ, ଜଙ୍ଘ ମଝିରେ କଅଣ ଗୋଟିଏ ଫୋଟକା ପରି ଦିଶୁଛି ।"

Digitized by srujanika@gmail.com

ନମିଷକେ ବଷାଦ ମେଘ ଘୁଞ୍ଚିଗଲା । ଆନନ୍ଦର ଆଲୋକ ଖେଳିଗଲା । ବରଦା ଦେବୀଙ୍କ ପିତା ଆନନ୍ଦରେ କହିଲେ "ଟୋକା ଖର କୌତୁକ ଜାଣେ ତ !" ବସନ୍ତ ପ୍ରସାଦ ବାବୁ ଏହି ଆନନ୍ଦର ଗୋଳମାଳରେ ଯେ କୁଆଡେ ଗଲେ କେହି ଜାଣି ପାରିଲେ ନାହିଁ। କିଛିକ୍ଷଣ ପରେ ସେ ଫେରିଲେ । ହାତରେ ତାଙ୍କର ଭଜା ହାଣ୍ଡିରେ ହାଣ୍ଡିଏ ଲଡୁ । ଆଖି ତାଙ୍କର ଆଶାର ବହ୍ନିରେ ଉଜ୍ଜ୍ୱଳ ।

× × × ×

ଦୁର୍ଗାପଦକୁ ଯେତେବେଳେ ମାତ୍ର ନ ବର୍ଷ ସେତେବେଳେ ବସନ୍ତ ବାବୁ ତାକୁ ଗାଁରୁ କଟକକୁ ନିଜ ପାଖକୁ ନେଇ ଆସିଲେ । ତାଙ୍କର ଭୟ ଗାଁ ପିଲାମାନଙ୍କ ସହିତ ମିଶି ସେ ଖରାପ ହୋଇଯିବ। ବେଶି ଖର୍ଚ୍ଚ ହୋଇଯିବା ଭୟରେ ବରଦା ଦେବୀ ସବଦା ଗାଁରେ ରୁହନ୍ତି । କଟକରୁ ପଶ୍ଚିମକୁ ପଚିଶ ମାଇଲ ଦୂର ଯିବା ଆସିବା ପାଇଁ ରେଲ, ମଟର, ନୌକା ବଳଦ ଗାଡ଼ି ସବୁ ବ୍ୟବହାର କରି-ବାକୁ ହୁଏ । ଏତେ ଅଳ୍ପ ବୟସରେ ଏତେ ଦୂରକୁ ଛାଡ଼ିବାକୁ ତାଙ୍କର ଆଦୌ ଇଚ୍ଛା ନ ଥିଲା । ସ୍ୱାମୀଙ୍କ ପ୍ରସ୍ତାବରେ ସେ ଅଧୀର ହୋଇ କାନ୍ଦ ପକାଇଲେ । କିନ୍ତୁ ବସନ୍ତ ବାବୁଙ୍କ ଆଶା ନିର୍ମମ । ଦୁର୍ଗାପଦର ପ୍ରଥମେ କଟକକୁ ଯିବାକୁ ମନ ଉଲ୍ଲାସ ଥିଲା । ନୂଆ ଜାଗା, ମଟର, ଘୋଡ଼ାଗାଡ଼ି, ଖେଳନା ଦୋକାନ କଥା ସେ ତାର ବନ୍ଧୁ ଭୁଜା ପାଖରୁ ଶୁଣିଥିଲା । ପୁଅର କଟକ ଯିବାର ଉତ୍ସାହ ଦେଖି ବସନ୍ତ ବାବୁ ସଗର୍ବେ ସ୍ତ୍ରୀଙ୍କୁ କହିଲେ "ଦେଖ ହୋ, ପୁଅ ମୋ ପାଖରେ ରହିବାକୁ ଚାହେଁ; ତୁମକୁ ତାର ସୁଖ ଭଲ ଲାଗେ ନାହିଁ ।" ତାମସ୍ତ୍ୟ ପରିହାସ ହେଲେହେଁ ସ୍ୱାମୀଙ୍କୁ ଭଲ ପାଇବା କେଉଁ ଦୁହିଁଙ୍କ ମଧ୍ୟରେ ଈର୍ଷା ଭାବ ଯେ ନ ଥିଲା, ତାହା ନୁହେଁ । ବରଦା ଦେବୀ ଟିକିଏ ମ୍ଳାନ ହସ ହସିଲେ । ବସନ୍ତ ବାବୁ ଯେତେବେଳେ ଦୁର୍ଗାପଦକୁ

Digitized by srujanika@gmail.com

ବଳଦ ଗାଡ଼ିକୁ ଉଠିବାକୁ କହିଲେ ସେତେବେଳେ ସେ ମା ଆଡ଼କୁ ଅନାଇ କେବଳ ଘରବରରେ କାନ୍ଦିବାକୁ ଲାଗିଲା । ବରଦା ଦେବୀ ପୁଅକୁ ବୁଝାଇ କହିଲେ "କଟକ ଯିବୁ, ପାଠ ପଢ଼ିବୁ, ବଡ଼ ମଣିଷ ହେବୁ, ମଟର ଚଢ଼ିବୁ" ଇତ୍ୟାଦି । ଛଅ ବର୍ଷର ଶିଶୁ ଏ ପ୍ରଲୋଭନରେ ଚଢ଼ିଲା କି ନାହିଁ କେଜାଣି କିନ୍ତୁ ଦ୍ୱିରୁକ୍ତି ନ କରି ଥରେ ମାତ୍ର ଅସହାୟ ଭାବରେ ମା ଆଡ଼କୁ ଚାହିଁ ଗାଡ଼ିରେ ଉଠିଲା । ବସନ୍ତ ବାବୁ ଜପୁ ଯାତ୍ରାରେ ବାହାରିବା ଭଳି ଗାଡ଼ିରେ ବସିଲେ । ବରଦା ଦେବୀ ଏହା ପରେ ସାତ ଦିନ ପର୍ଯ୍ୟନ୍ତ ଅନ୍ନ ଜଳ ଛୁଇଁଲେ ନାହିଁ ।

ସହରର ନାନା ଆକର୍ଷଣରେ ଦୁର୍ଗାପଦର ମନ ଭୁଲିଗଲା । କେବଳ ଶୋଇବା ବେଳେ ମା କୋଳ ମନେ ପଡ଼ି ଆଖିରୁ ପାଣି ଝରେ । ବସନ୍ତ ବାବୁଙ୍କର ସବୁ ଲକ୍ଷ୍ୟ କରିବାର ବେଳ ନାହିଁ । ଛଅ ବର୍ଷର ଶିଶୁକୁ କେନ୍ଦ୍ର କରି ସେ ସେତେବେଳେ ଆଶାର ସୌଧ ଗଢ଼ି ସାରିଥିଲେ—ତାକୁ ସଜାଇବାରେ ସେ ବ୍ୟସ୍ତ । ଗାଁରେ ବଢ଼ିଥିବାରୁ ପୁତ୍ରର ବିକ୍ଷିପ୍ତ କଳ୍ପନାପ୍ରବଣ ମନକୁ ପଢ଼ା ପଢ଼ିରେ ଲଗାଇବାକୁ, ଗାଁର ପିଲାମାନଙ୍କ ସହିତ ମିଶି ଥିବାରୁ—ବସନ୍ତ ବାବୁଙ୍କ ଆଖିରେ—ଅନେକ ଖରାପ ଗୁଣକୁ ଭଲଆଡ଼େ ନେବାକୁ ଏବଂ ଭବିଷ୍ୟତରେ କଟକରେ କୌଣସି ବଜାରି ପିଲାମାନଙ୍କ ସହିତ ଯେପରି ନ ମିଶେ ଏଥିପାଇଁ ସେ ପ୍ରତ୍ୟହ ସକାଳେ ନିୟମିତ ଭାବରେ ନଅ ବର୍ଷର ଶିଶୁକୁ ବୁଝାଇବାକୁ ଓ ପ୍ରହାର କରିବାକୁ ଲାଗିଲେ ଏବଂ ପୁରାଣର ପିତୃ ଭକ୍ତର ନାନା ଗଳ୍ପ କହି ପୁତ୍ରର ମନ ଆକୃଷ୍ଟ କରିବାକୁ ଲାଗିଲେ । କ୍ରମେ କ୍ରମେ ଦୁର୍ଗାପଦ ବଢ଼ି ଉଠିଲା ପିତାଙ୍କ ଅସୀମ ଆଶାର ତାଡ଼ନାରେ । ପିତାଙ୍କୁ ହିଁ ସେ ଆଦର୍ଶ ସ୍ଥାନୀୟ କଲା । ଦିନ ରାତି ପଢ଼ି ସତର ବର୍ଷ ବୟସରେ ପ୍ରଥମ ହୋଇ ସେ

Digitized by srujanika@gmail.com

ମେଟ୍ରିକୁଲେସନ୍ ପାଶ କଲା । ସେଉଁଦିନ ପରୀକ୍ଷା ଫଳ ବାହାରିଲା, ସେ ଦିନ ବସନ୍ତ ବାବୁ ଅଗଣାରେ ଛିଡ଼ା ହେଲେ ଲଡୁ ହାଣ୍ଡି ଧରି । ଆଖି ତାଙ୍କର ସେ ଦିନ ପରି ମଧ୍ୟ ଆଶାର ବହ୍ନିରେ ଉଜ୍ଜ୍ୱଳ ହୋଇ ଉଠିଥିଲା ।

× × × ×

ଜୀବନର ସତରଟି ଆଷାଢ଼ ଏହିପରି ଯିବା ପରେ ଅଷ୍ଟାଦଶ ଆଷାଢ଼ଟି ଆସି ଦେଲା ତା ଜୀବନରେ ଭୂମିକମ୍ପ । ଏତେ ଦିନ ଗୁପ୍ତରେ ତା ମନ ଭିତରେ କି ସ୍ୱପ୍ନ ଫୁଟିଥିଲା କିଏ ଜାଣେ, ହଠାତ୍ ତାର ସବୁ ଓଲଟ ପାଲଟ ହୋଇଗଲା ।

ସେ ଦିନ ଆଷାଢ଼ର ପହିଲା ମେଘ ଆକାଶରେ ଆଲୋକ ଓ ଅନ୍ଧକାରର ଅପୂର୍ବ ମାୟାଜାଲ ସୃଷ୍ଟି କରିଥାଏ । କଳା ବାଦଲର ଗୁରୁ ଗୁରୁ ଗର୍ଜନ ଓ ବିଜୁଳିର ଅପୂର୍ବ ଛଟା ଦେଖି ଦୁର୍ଗାପଦର ମନେ ହେଲା ପୂର୍ବେ ଏପରି କେବେହେଁ ହୋଇ ନ ଥିଲା । ଝରକା ପାଖରେ ଛିଡ଼ା ହୋଇ ସେ ଏହି ସମ୍ପୂର୍ଣ୍ଣ ନୂତନ ଶୋଭା ଉପଭୋଗ କରୁଥିଲା । ଧାଡ଼ିଏ ଦୁଗ୍ଧ-ଧବଳ ବଗ କଳା ବଉଦ ଦେହରେ ଉଡ଼ିଗଲେ । କାଠଯୋଡ଼ୀ ନଦୀର ଆରପାଖରୁ ବର୍ଷା ନୂପୁରର ଛନ୍ଦରେ ମାଡ଼ି ଆସିଲା । ଘରର ଚାଳ ଉପରେ ବର୍ଷା ପଡ଼ିବାର ଶବ୍ଦ ସେଦିନ ଦୁର୍ଗାପଦର ମନେ ହେଲା ଅପୂର୍ବ ସଙ୍ଗୀତ ପରି । ହଠାତ୍ ତାର ମନଟା ବ୍ୟାକୁଳ ହୋଇ ଉଠିଲା ଗୋଟାଏ ଅପୂର୍ବ ଆନନ୍ଦରେ । ଦେହ ମନରେ ଅପୂର୍ବ ଶିହରଣ ଜାତ ହେଲା । ହୃଦୟ ଭିତରଟି ଶୂନ୍ୟ ପରି ମନେ ହେଲା । କଅଣ ଗୋଟାଏ ଅଭାବ ! ତାର ମନଟା ଘାରି ହେଲା । ତାର ମନେ ହେଲା କାହାର ଟିକିଏ ସ୍ନେହ ପାଇଲେ ଯେପରି ହୃଦୟର ଏ ଶୂନ୍ୟତା ପୂରଣ ହୋଇଯିବ । ଏହି ସ୍ନେହ ପାଖରେ ପିତା ମାତାର ସ୍ନେହ ମନେ ହେଲା ତୁଚ୍ଛ,

Digitized by srujanika@gmail.com

ସ୍ୱାର୍ଥପ୍ରଣ୍ଣ । ଏହା ସ୍ନେହ ପାଇଁ ସେ ମୁହୂର୍ତ୍ତରେ ସବୁ ଦୁଃଖ କଷ୍ଟ ସହ୍ୟ କରିବାକୁ ପ୍ରସ୍ତୁତ । କଳ୍ପନାରେ ସେ ଦେଖି ପାରିଲା କିଏ ଯେପରି ଏହା ପ୍ରେମ ନେବାକୁ ଅପେକ୍ଷା କରି ବସିଛି । ଦୁର୍ଗାପଦ ଆଜି ଘରେ ରହି ପାରିଲା ନାହିଁ । ସାଇକେଲ୍ ଧରି ବାହାରି ପଡ଼ିଲା ତାରି ଅନୁସନ୍ଧାନରେ—ରୂପ କଥାର ରାଜପୁତ୍ର ଯେପରି ହଠାତ୍ ଦିନେ ସ୍ୱପ୍ନରେ ଦେଖା ରାଜକୁମାରୀର ଅନୁସନ୍ଧାନରେ ପକ୍ଷୀରାଜ ଘୋଡ଼ାରେ ଚଢ଼ି ବାହାରି ପଡ଼େ ଶାଉନରେ ଘୋର ଅନ୍ଧକାରରେ । ପ୍ରଚଣ୍ଡ ବର୍ଷା, କିନ୍ତୁ ଦୁର୍ଗାପଦର ସେଥିପ୍ରତି ଭ୍ରୁକ୍ଷେପ ନାହିଁ । ସେ ଆଜି ପାଇଛି ଗୋଟାଏ ନୂତନ ଆନନ୍ଦ । ସେହି ଆନନ୍ଦରେ ସେ କେତେକ ସହରଯାକ ବୁଲିଲା—କସ୍ତୁରୀ ମୃଗ ଯେପରି ନିଜର ଗନ୍ଧରେ ମାତି ବୁଲେ । ଫେରିଲା ଦୁଇଘଣ୍ଟା ପରେ ଗୋଟାଏ ବ୍ୟର୍ଥତାର ବେଦନା ନେଇ ।

ଦୁର୍ଗତ ତିନି ବର୍ଷର ସାମାନ୍ୟ ଦିନେ ଅସୁସ୍ଥ ହେଲେ କଷ୍ଟ ବାବୁ ଆଜିକାଲି ହୋଇ ପଡ଼ନ୍ତି । ପ୍ରଥମ ବର୍ଷାରେ ଦୁର୍ଗାପଦ ଘରେ ନ ଥିବାର ଦେଖି ପ୍ରଥମେ ତାଙ୍କର ଖୁବ ଭୟ ହେଲା । ଫେରିବାର ଡେରି ଦେଖି ହେଲା, ଭୟ କ୍ରମଶଃ କ୍ରୋଧରେ ପରିଣତ ହୋଇ ବଢ଼ିବାକୁ ଲାଗିଲା । ସେ ବାହାରେ ଅପେକ୍ଷା କରିଥିଲେ ଉଚିତମତ ଶାସ୍ତି ଦେବାକୁ । ଫେରିବା ମାତ୍ରକେ ସେ ବୃଥା ବାକ୍ୟ ବ୍ୟୟ ନ କରି ଦଣ୍ଡ ଦେବାକୁ ଲାଗିଲେ । ଏହା ପୂର୍ବରୁ ଦୁର୍ଗାପଦ ପିତାଙ୍କଠାରୁ ଅନେକ ଥର ପ୍ରହାର ଖାଇଛି, କେବେହେଁ ଅପମାନିତ ବୋଧ କରି ନାହିଁ, ଆଜି ତାର ବ୍ୟକ୍ତିତ୍ୱରେ ଆଘାତ ଲାଗିଲା । ସ୍ୱତନ୍ତ୍ର ଗୋଟାଏ ଘର ନାହିଁ ଯେ ନିର୍ଜନରେ ବସି ମନଇଚ୍ଛା ହାଲୁକା କରି ନେବ । ଘର ଭିତରକୁ ଆସି ସେ ଅଶ୍ରୁ ସମ୍ବରଣ କରି ପାରିଲା ନାହିଁ । ପ୍ରହାର ପାଇଁ ନୁହେଁ—ଗୋଟାଏ ଅବାଧ୍ୟ କ୍ଷୁବ୍ଧ ବେଦନାରେ ।

Digitized by srujanika@gmail.com

ଏହି ବେଦନା ଭିତରେ ମଧ୍ୟ ସେ ଗୋଟାଏ ଉଦାରତା ଅନୁଭବ କଲା । ଆଜ ତାର ମନେ ହେଲା ପୃଥିବୀର ସବୁ ସୁନ୍ଦର । ଟମି କୁକୁରଟା ବର୍ଷେ ହେବ ରହିଲାଣି । କୌଣସି ଦିନେ ବି ତା ଦେହରେ ହାତ ଦେଇ ନାହିଁ । ଆଜ ସେ ତାକୁ ଆଦରରେ କୋଳକୁ ଟାଣି ନେଲା । ଦୁର୍ଗାପଦର ଏ ହଠାତ୍ ପରିବର୍ତ୍ତନ ଜଣା ନାହିଁ । ସେ ଉପରେ ଦୁର୍ଗାପଦର ହାତ କାମୁଡ଼ି ଦେଲା । ଅନ୍ୟ କୌଣସି ଦିନ ହୋଇଥିଲେ ତାହାର ତ୍ରାଣ ନ ଥାନ୍ତା । କିନ୍ତୁ ଆଜ ତାର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ଆଜ ତାକୁ ଯିଏ ଯେତେ ଆଘାତ କରୁ ନା କାହିଁକି ସେ ପ୍ରେମ ଦେବାକୁ ପ୍ରସ୍ତୁତ । ଦୁର୍ଗାପଦ ଟମିକୁ ଅଧିକ ସ୍ନେହରେ ଟାଣି ନେଲା । ଭଗବାନଙ୍କୁ ପୂଜା କରିବା ଏତେ-ଦିନ ଗୋଟାଏ ଅର୍ଥହୀନ ସାମାଜିକ ପ୍ରଥା ବୋଲି ସେ ଜାଣିଥିଲା । ଆଜ କିନ୍ତୁ ତାର ମନେ ହେଲା ଭଗବାନ ଅନନ୍ତ ପ୍ରେମିକ । ତାର ବେଦନାର ସମସ୍ତ ଅଶ୍ରୁ ସେ ଭଗବାନଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି କହିଲା "ଭଗବାନ୍, ଏପରି କର ଯେ ତୁମରି ପ୍ରେମରେ ମୁଁ ସର୍ବଦା ବିଭୋର ରହେ । ତୁମର ପ୍ରେମ ପାଇଁ ସବୁ ଦୁଃଖ କଷ୍ଟ ବରଣ କରିବାକୁ ସାହସ ଦିଅ । ମୋର ଅଶ୍ରୁ ମଧ୍ୟ ସୁଖରେ ରହୁ ।" ସେ ଦିନ ସେ ବୁଝିପାରି ନ ଥିଲା ଯେ ଏହି ବ୍ୟର୍ଥତାର ଔଦାର୍ଯ୍ୟ ତାରଦିନ ରହିବ ନାହିଁ ।

× × × ×

ଜୀବନର ଗୋଟାଏ ନିର୍ଦ୍ଦିଷ୍ଟ ବୟସ ବା ମନର ଗୋଟାଏ ନିର୍ଦ୍ଦିଷ୍ଟ ଅବସ୍ଥା ପର୍ଯ୍ୟନ୍ତ ମନୁଷ୍ୟ ବଢ଼େ ଅନ୍ୟର ଆଦର୍ଶରେ ଅନ୍ୟ କେହି ତାର ପ୍ରେରଣାର ଉତ୍ସ ଥାଏ । ସାଧାରଣତଃ ପିତା ମାତା ହିଁ ଏହି ଆଦର୍ଶର ସ୍ଥାନ ନିଅନ୍ତି । ତେଣୁ ଏହି ବୟସରେ ଲକ୍ଷିପାଏ, ସନ୍ତାନମାନଙ୍କ ମଧ୍ୟରେ ଖାଲି ହାଇ ପିତା ମାତାର ସ୍ନେହ ପାଇବା

Digitized by srujanika@gmail.com

ପାଇଁ କିନ୍ତୁ ତା ପରେ ନିଜର ଶିକ୍ଷା, ଦୀକ୍ଷା, ମନ ଅନୁସାରେ ଗଢ଼ି ଉଠେ ନିଜର ଆଦର୍ଶ । ଯେତେବେଳେ ସେ ବଞ୍ଚିବାକୁ ଚାହେଁ ନିଜର ତୃପ୍ତି ପାଇଁ । ଠିକ୍ ଏହି ସମୟରେ ନିଜର ବ୍ୟକ୍ତିତ୍ୱ ଫୁଟାଇବା ପାଇଁ ଗୋଟାଏ ଅଦମ୍ୟ ଆଗ୍ରହ ହୁଏ । ଯାହାର ଏହି ଆଗ୍ରହଟି ବିକାଶ ପାଇ ନାହିଁ ସେ ଚିରଜୀବନ ରହିଯାଏ ବାଳକ । ଏହି ଆଗ୍ରହ ଭିତରେ ଥାଏ ପୁଣି ପ୍ରକୃତିର ସୃଜନ ପ୍ରକ୍ରିୟାର ଗୁପ୍ତ ସଙ୍କେତ । ନିଜକୁ ସର୍ବାଙ୍ଗସୁନ୍ଦର କରିବାକୁ ସେ ପ୍ରାଣପଣେ ଚେଷ୍ଟା କରେ । ଦୁଃସାହସିକ ଏବଂ ବିଚିତ୍ର କାମ କରିବାରେ ସେ ଅପୂର୍ବ ଆନନ୍ଦ ପାଏ । ଅଳ୍ପ ଦିନ ଭିତରେ ଦୁର୍ଗାପଦର ଅଦ୍ଭୁତ ପରିବର୍ତ୍ତନ ହୋଇଛି । ଦେଖିବାକୁ ସୁଶ୍ରୀ ନ ହେଲେହେଁ ତାକୁ କୁଶ୍ରୀ କହିବା ଚଳେ ନାହିଁ । ଶରୀରର ପ୍ରଧାନ ଦୋଷ ଭିତରେ ମୁହଁଟି ଟିକିଏ ଅସ୍ୱାଭାବିକ ଲମ୍ବା—ତାର ପିତାଙ୍କ ପରି । ଏଥିପାଇଁ ସେ ଭାରି ବିବ୍ରତ ହୋଇ ଅନେକ ସମୟ ଦର୍ପଣ ସାମନାରେ ଆଜିକାଲି କଟାଏ । ପୈତୃକ କ୍ଷୀଣ ଶରୀରଟିକୁ ସୁପୁଷ୍ଟ କରିବା ପାଇଁ ନିୟମିତ ବ୍ୟାୟାମ ଓ ଖେଳ ଆରମ୍ଭ କରିଛି । କିନ୍ତୁ ପୋଷାକ ପରିଚ୍ଛଦ ତାର ଚିନ୍ତାର ବିଶେଷ କାରଣ । ବିଷ୍ଣୁ ବାବୁଙ୍କ ମତରେ ଛାତ୍ର ଜୀବନରେ ଭଲ ପୋଷାକ ପରିଚ୍ଛଦ, ଖେଳ କସରତ ଛାତ୍ରର ମନକୁ ପଢ଼ା ପଢ଼ିରୁ ବିଳାସ ଆଡ଼କୁ ଟାଣି ନିଏ । ଦୁର୍ଗାପଦର ବ୍ୟବହାର ପାଇଁ ସପ୍ତାହକୁ ଖଣ୍ଡେ ମୋଟ ଧୋତି ଓ ଖଣ୍ଡେ ସାଧାରଣ କମିଜ, ଯା ନ ହେଲେ ନ ଚଳେ । ଏହାକୁ ପିନ୍ଧି କଲେଜ ଯିବାକୁ ଦୁର୍ଗାପଦର ଭାରି ଲଜ୍ଜା ହୁଏ । ହେଉ ନା ସେ ଦରିଦ୍ର, କିନ୍ତୁ ଏ ରିକ୍ତତା କାହିଁକି ? ଆଜିକାଲି ସେ ପିତାଙ୍କୁ ଲୁଚାଇ ସାବୁନରେ ଲୁଗା ପରିଷ୍କାର କରି ନିଏ । ପୂର୍ବର ଅବିନ୍ୟସ୍ତ ତୈଳହୀନ ବଡ଼ ବଡ଼ ମୁଣ୍ଡର ବାଳଗୁଡ଼ିକର ମଧ୍ୟ ଆମୂଳ ପରିବର୍ତ୍ତନ ହୋଇଛି । ସେ ଯଥା ସମ୍ଭବ ପିତାଙ୍କୁ ଲୁଚି

Digitized by srujanika@gmail.com

ଥାଏ । ତାର ମନେ ହୁଏ ତାର ଉଚ୍ଚାଶାଭିମୁଖୀ ମନ ଉପରେ ପିତା ଗୋଟିଏ ବଡ଼ ପଥର । ପୁତ୍ରର ପରିବର୍ତ୍ତନ ଯେତେବେଳେ ବିଷ୍ଣୁ ବାବୁଙ୍କ ଆଖିରେ ପଡ଼େ, ସେତେବେଳେ ସେ ତାକୁ ତୀବ୍ର ଭର୍ତ୍ସନା କରନ୍ତି । ଖେଳା ଖେଳ ପାଇଁ ମଧ୍ୟ ଦୁର୍ଗାପଦକୁ କମ୍ ଅପମାନ ସହ୍ୟ କରିବାକୁ ପଡ଼େ ନାହିଁ । ସେ ପତ୍ର ପତ୍ରିକାରେ ମଧ୍ୟ କବିତା ଦେବାକୁ ଆରମ୍ଭ କରିଛି । କିନ୍ତୁ ସାହସ କରି କେବେହେଁ ନିଜର ନାମ ଦେଇ ନାହିଁ । "ପ୍ରେମର କବିତା ଯଦି ପିତା ଦେଖନ୍ତି......" ଭୟରେ ତାର ଆଖି ବୁଜି ହୋଇଯାଏ । ବିଷ୍ଣୁ ବାବୁ ଅନେକଥର ବୁଝାଇ କହନ୍ତି, "ଆଗେ ପଢ଼ା ପଢ଼ି ସାରୁ, ତା ପରେ ସବୁ ।" କିନ୍ତୁ ଦୁର୍ଗାପଦ ଗୋଟାଏ ନୂତନ ଶକ୍ତିର ଆନନ୍ଦରେ ପାଗଳ । ପିତାଙ୍କର ଆଦର୍ଶ ତାର ହୃଦୟଙ୍ଗମ କଲେହେଁ ମାନି ନେବାକୁ ଅକ୍ଷମ ।

କିନ୍ତୁ ନାନା ଦୁଃସାହସିକ କାର୍ଯ୍ୟ କଲେ ମଧ୍ୟ ଦୁର୍ଗାପଦ ସ୍ୱଳକ୍ଷ୍ମୀମାଗର ସନ୍ଧାନ ପାଏ ନାହିଁ । ମଝିରେ ମଝିରେ ତାର ହୃଦୟ ହାହାକାର କରି ଉଠେ । ତାର ସାଙ୍ଗ ଅନେକ ଅଛନ୍ତି କିନ୍ତୁ କହିଲେ ଯାହା ବୁଝାଏ, ସେପରି କେହି ନାହାନ୍ତି । ପିତାଙ୍କୁ ତାର ଭୟ । ମା ବା ଭଉଣୀଙ୍କୁ ହୃଦୟର ଏ ବ୍ୟାକୁଳତା ଜଣାଇବାକୁ ଲଜ୍ଜା ହୁଏ । ମନକୁ ମନରେ ମାତ୍ର ଦୁର୍ଗାପଦ ପ୍ରତୀକ୍ଷାରେ ଦିନ କଟାଏ । ଏ ପ୍ରତୀକ୍ଷା ଯେତେବେଳେ ତାର ହୃଦୟଙ୍ଗମ କରେ ସେତେବେଳେ ଜଗତଟା ମିଥ୍ୟା ମନେ ହୁଏ । ଶଙ୍କରାଚାର୍ଯ୍ୟ ବୁଦ୍ଧଙ୍କର ପନ୍ଥା ହିଁ ଠିକ୍ ଭାବି କେତେଥର ସେ ସନ୍ନ୍ୟାସୀ ହେବାକୁ ଭାବିଛି । କିନ୍ତୁ ପାରିନାହିଁ ।

ଅଳ୍ପଦିନ ଆଗେ ଦୁର୍ଗାପଦ ସମଗ୍ର ଓଡ଼ିଶାର ସନ୍ତରଣ ପ୍ରତି-ଯୋଗିତାରେ ପ୍ରଥମ ହୋଇଛି । ପିତାଙ୍କର ଏଥିରେ ଆନନ୍ଦ ନାହିଁ । ଦୁର୍ଗାପଦର ଏ ସବୁ ଯେତେ ବଢ଼ୁଛି, ତାଙ୍କର ଆଶା ସେତେ କ୍ଷୀଣ

Digitized by srujanika@gmail.com

ହୋଇ ଆସୁଛ । ତାଙ୍କର ସବୁଦା ଭୟ ଢାଳେ ଦୁର୍ଗାପଦ ପଢ଼ା ଛଡ଼ି ଦେବ ଅନ୍ୟ ସାଧାରଣ ପିଲାଙ୍କ ଭଳି ଏଥିରେ ମାତିବ । ଦୁର୍ଗାପଦର କିନ୍ତୁ ମନରେ ସୁଖ ନାହିଁ । ଗୋଟାଏ ଅଭାବ ତାର ମନକୁ ସବୁଦା ଆକ୍ରାନ୍ତ କରି ରଖିଥାଏ । ସେଦିନ ମନର ଏହିପରି ଅବସ୍ଥାରେ ସେ କାଠଯୋଡ଼ୀ କୂଳରେ ଛିଡ଼ା ହୋଇଥିଲା । ନଦୀରେ ଆସିଛି ପ୍ରବଳ ବନ୍ୟା । ନଈ ଭିତରେ ଅର୍ଦ୍ଧ ବୃତ୍ତାକାରରେ ଯେଉଁଠି ନଈ ଭିତରକୁ ପଶି ଯାଇଛି ପାଣିର ଧକ୍କା ଲାଗି ସେଠାରେ ଭୟଙ୍କର ଭଉଁରୀ ହୁଏ । କଟକରେ ଏହି ଭଉଁରୀ ଭିତରେ ପହଁରିବାକୁ କେବଳ ଦୁର୍ଗାପଦ ସକ୍ଷମ । ସେ ଯେତେବେଳେ ଏହି ଭଉଁରୀ ଭିତରେ ପହଁରେ, ନଈ ବନ୍ଧରେ ଲୋକଙ୍କର ଭିଡ଼ ହୁଏ ତାର ଅଦ୍ଭୁତ ସନ୍ତରଣ କୌଶଳ ଦେଖିବାକୁ । ପଶ୍ଚିମ ଆକାଶରେ ଅସ୍ତଗାମୀ ସୂର୍ଯ୍ୟ ଯେଉଁ ଅପୂର୍ବ ଶୋଭାମାନ ସୃଷ୍ଟି କରୁଥିଲା, ସେଥିପ୍ରତି ତାର ଲକ୍ଷ୍ୟ ନାହିଁ । ସେ ଭାବୁଥାଏ ନିଜକଥା । ହଠାତ୍ ଦେଖିପାରିଲା ଗୋଟିଏ ବାଳକ ବୁରୁଜ ଉପରେ ଛିଡ଼ା ହୋଇ ପାଣିର ଭୟଙ୍କର ଦୃଶ୍ୟ ଉପଭୋଗ କରୁଅଛି । କିଏ ଜାଣିବାର ଅବସର ବା ଆବଶ୍ୟକତା ନାହିଁ । ସେ ସାଙ୍ଗେ ସାଙ୍ଗେ ଘରକୁ ଯାଇ ଲୁଗା ବଦଳାଇ ଆସି ଭଉଁରୀ ଭିତରେ ପହଁରିବାକୁ ଲାଗିଲା ଏବଂ ଶରୀର ସନ୍ତରଣ କଳାର କେତେକ ଭଙ୍ଗୀ । ଆଶ୍ଚର୍ଯ୍ୟରେ ବାଳକର ଆଖି ଯୋଡ଼ିକ କମଳ ହୋଇଗଲା । ସେ ଅନେକ ସମୟ ଧରି ନାନା କୌଶଳ ଦେଖାଇବାକୁ ଲାଗିଲା । କିନ୍ତୁ ଘଟଣାସ୍ଥଳରେ ଉପସ୍ଥିତ ହେଲେ ଗୋପାଳ—ତାର ମାମୁଁ । ସୁନ୍ଦର ସୁଶ୍ରୀ ଚେହେରା, ଅସାଧାରଣ ବାକ୍‌ପଟୁ । ଯାହାକୁ ତାର ଅନେକ ଭୟ ହେଲେହେଁ ପଣ୍ଡାମାନଙ୍କ ପିଲାଙ୍କ ପିଲା ନୁହଁ । ଜଣକେ ଛିଡ଼ା ହୋଇ ସେ ଦୁର୍ଗାପଦକୁ ନାନା ଉପଦେଶ ଦେବାକୁ ଲାଗିଲା । ତାର କଥା-

Digitized by srujanika@gmail.com

ବାଞ୍ଛାରେ ସେ ଏପରି ପରିସ୍ଥିତି ସୃଷ୍ଟି କଲା ଯେ, ସମସ୍ତେ ଭାବିଲେ ସେ ଦୁର୍ଗାପଦର ସନ୍ତରଣ ଶିକ୍ଷକ । ଅବପ୍ରାପ୍ତି ବୃଦ୍ଧିପାଇ ସେ ଅଧିକ ଉପସ୍ଥିତ କୌଶଳମାନ ଦେଖାଇବାକୁ ଲାଗିଲା ଗୋଟିଏ ବଡ଼ ଭଉଁରିରେ ବୁଡ଼ିଯାଇ ଦୁର୍ଗାପଦ ତା ଭିତରେ ଅନେକ କ୍ଷଣ ରହିଲା । ସମସ୍ତେ ଉପରେ ଚାହିଁ ରହିଲେ । ଦୁର୍ଗାପଦ ସଗର୍ବେ ଆଜି ଗୋଟିଏ ଭଉଁରି ଭିତରେ ପାଣି ଭିତରୁ ବାହାରିଲା ଏବଂ ଅନାଇ ଦେଖିଲା ରାଜକୁମାରୀ ଅପହୃତା । ଉପରକୁ ଆସି ଦେଖିଲା ଘୋଷାଲ ବାଳିକା ସହିତ ହସି ହସି କଥା କହୁଯାଉଛି ।

ସେଦିନ ରାତିରେ ତାର ଭାରି ଜ୍ୱର ହେଲା । ହୃଦୟର ସେଇ ଶୂନ୍ୟତା ଯେପରି ତାର କଣ୍ଠରୋଧ କରିବାକୁ ଲାଗିଲା । ମନ କଥା କାହାକୁ ନ କହିବା ଯାଏଁ ମନ ଭିତରେ ଲାଗି ରହିଲା । ଗୋଟାଏ ଅସହ୍ୟ ଅସ୍ୱସ୍ତି । କାନ୍ଥରେ ଟଙ୍ଗାହୋଇଥିବା ଶ୍ରୀକୃଷ୍ଣଙ୍କ ଚିତ୍ର ତାର ନଜରରେ ପଡ଼ିଲା । ମୁହଁରେ ଲାଗି ରହିଛି ଗୋଟିଏ କ୍ଷୁଦ୍ର ହସ । ଏହି କ୍ଷୁଦ୍ର ହସ ଯେପରି ପୋଛି ଦେଲା ତାର ବେଦନାର ସମସ୍ତ କାଳିମା । ତାର ମନେ ହେଲା ଭଗବାନ୍ ତାର ଯୁଗ ଯୁଗ ଧରି ବନ୍ଧୁ । ଛବିଟି ସାମନାରେ ଥୋଇ ଦୁର୍ଗାପଦ ତାର ବ୍ୟର୍ଥହୃଦୟ ଅଜାଡ଼ି ଦେଲା । ଅନେକଟା ହାଲୁକା ଲାଗିଲା । ସେହିଦିନୁଁ ଆରମ୍ଭ ହେଲା ତାର ମୂର୍ତ୍ତି ପୂଜା ।

× × × ×

କିନ୍ତୁ ଯେଉଁ ତୃଷ୍ଣାର ବହ୍ନି ତାର ଅନ୍ତରରେ ଜଳିବାକୁ ଆରମ୍ଭ କରିଛି, ତା ସେଥିରେ ଲିଭିବାର ନୁହେଁ । ଦୁର୍ଗାପଦ ବର୍ତ୍ତମାନ କୋଡ଼ିଏ ବର୍ଷର ଯୁବକ । ଯୌବନର ପ୍ରାରମ୍ଭରେ ପ୍ରକୃତିର ସଙ୍କେତ ଅସ୍ପଷ୍ଟ ହେଲେହେଁ ବଳବତ୍ତର । ଭାବପ୍ରବଣ ମନ ଏହି ସମୟରେ ଗୋଟିଏ ମାତ୍ର ଆନନ୍ଦକୁ କେନ୍ଦ୍ର କରି ନିଜର ଜୀବନ

Digitized by srujanika@gmail.com

ଗଢେ । ନଶ୍ୱର ଦେହଜନା କାହାଁକ ମନ ଗ୍ଭହେଁ ନାସ୍ତର ପ୍ରେମ ସେ ପ୍ରେମ ପୁଣି ଦୁନଆରେ ଆଜ କାହା ପାଇଁ ନୁହଁ । ନସ୍ତକାର ପରମ-ବ୍ରହ୍ମଙ୍କର ନଷ୍କ୍ରଚଞ୍ଚଳ ପ୍ରେମରେ ସାନ୍ତ୍ୱନା ମିଳପାରେ, ଆନନ୍ଦର ମାଦକତା ନାହିଁ ।

ଆଶା, ପ୍ରତୀକ୍ଷାରେ ଦୁର୍ଗାପଦର ଗ୍ଭରବର୍ଷ ଗ୍ଭଲଗଲା । ଏତକ ଟିକଏ ଅଭାବ ଯୋଗୁଁ ତାର ସବୁ ଦଗରେ ସାଫଲ୍ୟ ନରର୍ଥକ ମନେ ହେଲା । ଯାହା ପାଇଁ ସେ ଘର ସୁନ୍ଦର ଭାବରେ ସଜାଇବାକୁ ଲାଗିଥିଲା ସେ ଆସିଲା ନାହିଁ । ଶୂନ୍ୟତାରେ, ବେଦନାରେ ତାର ମନ ମଝିରେ ମଝିରେ ବ୍ୟାକୁଳ ହୋଇ ଉଠେ । ଦୁର୍ଗାପଦ ଯେଉଁ-ଦନ ଅନର୍ସ ସହତ ବି. ଏ. ପାଶ୍ କଲା, ସେଦନ ମଧ ବକ୍ସୁ ବାବୁ ହାତରେ ଲଡ଼ୁ ହାଣ୍ଡି ଧର ଅଗଣାରେ ଛିଡ଼ା ହେଲେ । ତାଙ୍କର ଆଶା ପୂର୍ଣ୍ଣ ହେବାକୁ ଆଉ ବେଶୀ ଡେର ନାହିଁ । ଉତ୍ତେଜନାରେ ତାଙ୍କର ଆଖି ଯୋଡ଼ିକ ସେଦନ ମଧ ଉଜ୍ଜ୍ୱଳ ହୋଇ ଉଠିଥିଲା ।

ଦୁର୍ଗାପଦର ଇତି ମଧ୍ୟରେ କନ୍ତୁ ଅନେକ ପରବର୍ତ୍ତନ ହୋଇଛି । ନଜର ବଗତ ଜୀବନ କଥା ଭାବୁ ଭାବୁ ଦୁର୍ଗାପଦ ଦନେ ଚମକି ଉଠିଲା । ଏତେ ଦନ ସେ କଠୋର ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲା । ପିତାଙ୍କର ଓ ନଜର ଅତ୍ୟଧିକ ଦମନ ଯୋଗୁଁ ଧୀରେ ଧୀରେ ତା ଭିତରେ ଯୌନ ବକାର ସହ ନାନା ମାନସିକ ବକୃତି ମୁଣ୍ଡ ଟେକବାର ଦେଖି ଦୁର୍ଗାପଦ ହତୋତ୍ସାହ ହୋଇ ପଡ଼ିଲା । ଆଗର ସହଜ ସରଳ ମନ ଆଜ ତାର ନାହିଁ । ହିଂସା, ଅବଶ୍ୱାସ, କଳହ-ପ୍ରିୟତା, ଈର୍ଷା, ଆଳସ୍ୟ, ନନ୍ଦା ଆଦ ଧୀରେ ଧୀରେ କେତେ-ବେଳେ ଯେ ପ୍ରବେଶ କଲେ ସେ ଏ ପର୍ଯ୍ୟନ୍ତ ବୁଝିପାର ନ ଥିଲା । ସେ ଚମକ ଯେତେବେଳେ ନଜର ସ୍ୱରୂପ ଦେଖିଲା, ସେତେବେଳେ ସେ ଗୋଟି ଗୋଟି କର ମନର ସବୁ ଦୁଆର ବନ୍ଦ କର ଦେବାକୁ

Digitized by srujanika@gmail.com

ଚେଷ୍ଟା କଲା । ମନର ସରଳ ସହଜ ଗତିକୁ ସେ କଣ୍ଠରୋଧ କରି ମାରିଦେବାକୁ ବସିଲା । ଯେଉଁ କାର୍ଯ୍ୟ ତାର ପିତା ଏତେ ଦିନ କରି ଆସୁଥିଲେ ନିଜ ଅଜ୍ଞାତରେ ସେ କାର୍ଯ୍ୟଗୁଡ଼ିକୁ ନିଜେ କରିବାକୁ ଆରମ୍ଭ କଲା । ବାହାର ସହିତ ଆଉ କୌଣସି ସମ୍ପର୍କ ରଖିଲା ନାହିଁ । ମୁଣ୍ଡର ବାଳଗୁଡିକ ଲମ୍ବା କରି ସେ ପିନ୍ଧିଲା ଖଣ୍ଡେ ମୋଟ ଧୋତି ଓ ମଇଳା ଚାଦର । ଉପରେ ସମସ୍ତ ବିଳାସ ସେ ତ୍ୟାଗ କଲା । ମନର ଦୁର୍ବଳତା ଯେତେ ବଢ଼ିବାକୁ ଲାଗିଲା, ତାର ଅନୁଷ୍ଠାନ ସେତେ ବଢ଼ିବାକୁ ଲାଗିଲା । ବିଷ୍ଣୁ ବାବୁ ପୁଅର ପରିବର୍ତ୍ତନ ଦେଖି ଆନନ୍ଦିତ ହେଲେ । କିନ୍ତୁ ବରଦା ଦେବୀ ଉପରେ କହିଲେ 'ଶୁଣୁଚ, ପୁଅକୁ ବାହା କରିଦିଅ, ନ ହେଲେ ସେ ଦଣ୍ଡ କମଣ୍ଡଳୁ ଧରି ବାହାରିଯିବ ।' ବିଷ୍ଣୁ ବାବୁ ହସି କହିଲେ, "ପାଗଳ ହେଲ । ପଢ଼ାପଢ଼ି ସମୟରେ ମନ ଏସବୁ ଆଡ଼େ ଗଲା ଭଲ । ପାଠ ପଢ଼ି ସରିଲେ ରୋଜଗାର କଲେ ମନ ଫେରାଇବାକୁ କେତେକ୍ଷଣ ଲାଗିବ ।"

ଏତେ କରି ମଧ୍ୟ ଦୁର୍ଗାପଦ ନିଜ ଅନ୍ତରର ଇଚ୍ଛାକୁ ଲୋପ କରି ପାରିଲା ନାହିଁ । ଗୋଟିଏ ଇଚ୍ଛା ବହୁ ଇଚ୍ଛା ହୋଇ ବହୁ ବିକୃତ ରୂପଧରି ସୂଚୀବିଦ୍ଧ କରିବାକୁ ଲାଗିଲା । ଦୁର୍ଗାପଦର ନିଜ ଉପରେ ଭୀଷଣ ଘୃଣା ଜାତ ହେଲା ଏବଂ ଏହା ପ୍ରତିଫଳିତ ହେଲା ପୃଥିବୀ ଉପରେ । ବିଫଳ ହୋଇ ସେ ଶଶିଙ୍କ ବିବାହ କଲେ ତାର ସବୁ ବିକୃତି ପୁଲିଯିବ । ନିଜର ଅଭିପ୍ରାୟ ସେ ପ୍ରକାରାନ୍ତରେ ପ୍ରକାଶ କଲା । ବରଦା ଦେବୀ ଉପରେ ପ୍ରସ୍ତାବଟା ସ୍ୱାମୀଙ୍କ ଆଗରେ ରଖିଲେ ଏବଂ ବହୁ ଖୋଜାଖୋଜି ପରେ ବାହା କରି ଦେଲେ । ଦୁର୍ଗାପଦକୁ ମଧ୍ୟ ଅନେକ ଅପମାନ ସହି 'ବାହାପାଗଳ' ଦୁର୍ନାମ ସହ୍ୟ କରିବାକୁ ପଡ଼ିଲା ।

Digitized by srujanika@gmail.com

ନଗଣ ହୋଇ ସେ ସ୍ଥାନ ପରିବର୍ତ୍ତନ ପାଇଁ ବ୍ୟାକୁଳ ହୋଇ ଉଠେଲ । ପିତାଙ୍କୁ ଅନେକ ବୁଝାଇ ସେ ଗଲା ପାଟନା ଏମ୍. ଏ., ବି. ଏଲ୍. ପଢ଼ିବାକୁ । ବସ୍ତ୍ର ବାବୁ ନିଜର ଓ ପରିବାରର ସମସ୍ତଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ତାଙ୍କର ସାମାନ୍ୟ ଆୟର ତିନି ଭାଗରୁ ଦୁଇଭାଗ ପଠାଇଲେ ପୁଅ ପାଖକୁ । ପାଟନା ଆସି ପ୍ରଥମ କେତେ-ଦିନ ଅବଶ୍ୟ ଭଲ ଲାଗିଲା, କିନ୍ତୁ ଅଳ୍ପଦିନ ପରେ ତାର ଅନ୍ତରର ବୁଭୁକ୍ଷା ପୁଣି ଦେଖା ଦେଲା । ଏତେ ଦିନ ନିଜ ସହିତ ଯୁଦ୍ଧ କରି ତାର ଶରୀର ଭାଙ୍ଗି ପଡ଼ିଥିଲା । ଆଜି ଯୁଦ୍ଧ କରିବାର ତାର ଶକ୍ତି ଓ ପ୍ରେରଣା ସେ ହରାଇଛି । ଏଥର ସେ ନିଜକୁ ଭସାଇ ଦେଲା ପ୍ରବୃତ୍ତିର ସ୍ରୋତରେ । ତାର ମନ ଯୁକ୍ତି କଲା, "ଯୌନ ପ୍ରବୃତ୍ତି, କ୍ଷୁଧା ଓ ତୃଷ୍ଣା ଭଳି ଗୋଟିଏ ଶାରୀରିକ ପ୍ରବୃତ୍ତି । ପ୍ରେମ ଏହି ପ୍ରବୃତ୍ତିର ନାମାନ୍ତର ମାତ୍ର । ଅତଏବ ଏ ମୌଳିକ ପ୍ରବୃତ୍ତିଟି ଚରିତାର୍ଥ ହେଲେ ତାହାର ଏ ମର୍ମମ ଦୁର୍ବଳତା ଘୁଞ୍ଚିଯିବ ।"

ଦିନେ ଗୋଟିଏ ସାଙ୍ଗ ସହିତ ସେ ଗଲା ବେଶ୍ୟା ଘରକୁ । ଆପରିଷ୍କାର, ଅସ୍ୱାସ୍ଥ୍ୟକର ପରିସ୍ଥିତି ମଧ୍ୟରେ ଗୋଟିଏ ପ୍ରୌଢ଼ା ବେଶ୍ୟା । ବନ୍ଧୁ ବହୁତ ବିଷୟରେ ପଚାରିବାରୁ ବେଶ୍ୟାଟି ଯାହା କଲା ସେଥିରେ ଅତି ବଡ଼ କାମୁକର ମଧ୍ୟ ବିତୃଷ୍ଣା ହେବ । ବେଶ୍ୟାଟି ନିଜର ବୟସ ଉନ୍ମୁକ୍ତ କରି ପ୍ରମାଣ କରିବାକୁ ଲାଗିଲା "ଏହା ପାଇଁ ଦାୟୀ କିଏ ? ସମାଜ ନା ଏମାନଙ୍କର ଯୌନାଭିଳାଷ, ନା ଉଭୟ ?" କିନ୍ତୁ ଯେଉଁ ଘଟଣାଟି ତା ମନକୁ ବିତୃଷ୍ଣା ଆଣିଦେଲା, ତାହା ପୁଣି ବନ୍ଧୁକୁ ଅଧିକ କାମୋନ୍ମତ୍ତ କଲା । କିଛିକ୍ଷଣ ପରେ ସେ ଚମକି ପଡ଼ି ଶୁଣିଲା, "ତୁ ଯିବୁ ନାହିଁ ?" 'ନା'—ଦୁର୍ଗାପଦ ଘୃଣାରେ ଆଉ କିଛି କହି ପାରିଲା ନାହିଁ । ନିର୍ଲଜ ଭାବରେ ତାର ବନ୍ଧୁ ହସି କହିଲା, "ପ୍ରଥମରେ ଏହିପରି ହୁଏ । ଆଉ ଦୁଇ ତିନିଥର ଆସିଲେ ଠିକ୍

Digitized by srujanika@gmail.com

ହୋଇଯିବ ।" ଦୁର୍ଗାପଦ ସେଦିନ ଦୁଃଖରେ ମୂର୍ଚ୍ଛ ଯିବାଭଳି ହୋଇଗଲା । ସେଦିନ ସେ ବୁଝିପାରି ନ ଥିଲା ଯେ ୭ ଘଣ୍ଟାଟି ତାର ଅଜ୍ଞାତରେ ଶିକ୍ଷା ଓ ରୁଚିର ବାହ୍ୟ ଆବରଣ ଭେଦ କରି ସ୍ପର୍ଶ କରିଛି ମନର ଗୋଟାଏ ନିଗୂଢ଼ ସ୍ତରକୁ । ମନର ଗହ୍ୱରରେ ଥିବା ଇଚ୍ଛାଗୁଡ଼ିକ ପ୍ରଚଣ୍ଡ ଶକ୍ତିରେ ସବୁ ବାଧା ଠେଲି ବାହାରକୁ ବାହାରି ଆସିଲେ । ଦୁର୍ଗାପଦ ନାନା ବିଳାସରେ ନିଜକୁ ବୁଡ଼ାଇ ଦେଲା । ଯେଉଁ ଯୌନ ଜ୍ଞାନ ତାର ପାଇବାର ଉଚିତ ଥିଲା ସୁନ୍ଦର ସ୍ୱାସ୍ଥ୍ୟକର ପରିସ୍ଥିତିରେ, ତାହା ସେ ପାଇଲା ଅତି ଅସ୍ୱାସ୍ଥ୍ୟକର ପରିସ୍ଥିତିରେ । ଏଣୁ ଯୌନ-କ୍ରିୟା ପ୍ରତି ତାର ଯେଉଁ କୁତ୍ସିତ ଧାରଣା ଜନ୍ମିଲା, ତାହା ଚିରଦିନ ରହିଗଲା ।

ଦୁର୍ଗାପଦର ଟିକା ପିଲାଦିନରୁ ଅନ୍ତର୍ମୁଖୀ । ଏବେ ଗଙ୍ଗା କୂଳରେ ଏକା ବସି ଭାବୁ ଭାବୁ ସେ ପୁଣି ଚମକି ଉଠିଲା । ଭଗବାନଙ୍କୁ ଭକ୍ତି ବା ପ୍ରାର୍ଥନା କରି ସେ ଆଜି କାଲି ସାନ୍ତ୍ୱନା ପାଏ ନାହିଁ । ତାର ଦୃଢ଼ ବିଶ୍ୱାସ ଜନ୍ମିଛି ଭଗବାନ ବ୍ୟର୍ଥ ଏବଂ ଭ୍ରାନ୍ତ ମାନବର କଳ୍ପନା । ସେ ପାଟନାରୁ ପୁଣି କଟକ ପଳାଇ ଆସିଲା । ଦୁର୍ଗାପଦର ମାମୁଁ ଥାନ୍ତି ପାଟନାରେ । ବସ୍ତୁ ବାବୁ ତାଙ୍କଠାରୁ ସବୁ ଶୁଣି ସାରିଥିଲେ । ସ୍ଥିର ଦୃଷ୍ଟିରେ କେବଳ ଚାହିଁ ରହିଲେ । କ୍ରୋଧ ଏବଂ ହତାଶାରେ ତାଙ୍କ ମୁହଁରୁ କଥା ବାହାରିଲା ନାହିଁ । ଥରେ ଭାବିଲେ ଆଶା ଯେତେବେଳେ ଗଲା ସେତେବେଳେ ପୁଅରେ ପ୍ରୟୋଜନ କଅଣ । କିନ୍ତୁ ତଥାପି ନ ମିଳିତ ଆଶାବାଦୀଃ । ଜୀବନ୍ତ କ୍ରୋଧକୁ ଚାପିରଖି ଦୁର୍ଗାପଦକୁ ପୁଣି ବୁଝାଇବାକୁ ଲାଗିଲେ । ଦୁର୍ଗାପଦ ଯେ ବୁଝିଲା ତା ନୁହେଁ । ପିତାଙ୍କର ଆଶା ଭଣ୍ଡ ଉପରେ ତାର ଦୟା ହେଲା । ନିଜର ବ୍ୟର୍ଥତା ପାଇଁ ମରଣୋନ୍ମୁଖୀ ପିତାଙ୍କୁ କଷ୍ଟ ଦେଇ ଲାଭ କଅଣ ? ପୁଣି ସେ ପଢ଼ା ପଢ଼ିରେ ମନ ଦେଲା,

Digitized by srujanika@gmail.com

ନିଜକୁ ଭୁଲାଇ ରଖିବାକୁ । ସେ ନିଜକୁ ବୁଡାଇ ଦେଲେ ନାନା କର୍ମରେ । ସାହାଯ୍ୟ ସମିତି, ସାହିତ୍ୟ ସମିତି, ବ୍ୟାୟାମ ବିଦ୍ୟାଳୟ ଆଦି ନାନା କର୍ମରେ ସେ ନିଜକୁ ବୁଡାଇ ରଖିଲେ । ବିଷ୍ଣୁ ବାବୁଙ୍କୁ ଏସବୁ ଭଲ ଲାଗୁ ନ ଥିଲେ ମଧ୍ୟ ସେ ବୁଝିପାରି ଥିଲେ ପୁଅର ଯଥେଷ୍ଟ ବୟସ ହୋଇଛି । ଓକିଲାତି ପାଶ୍‌ ହେଲେ । କିନ୍ତୁ ବିଷ୍ଣୁ ବାବୁ ଆଉ ବଞ୍ଚିଲେ ନାହିଁ । ବୟସ ତାଙ୍କର ଯଥେଷ୍ଟ ହୋଇଥିଲା । ତାଙ୍କର ଆଶା ନାନା ବ୍ୟର୍ଥତାରେ ଭାଙ୍ଗି ପଡ଼ିଥିବା ଶରୀରକୁ ଆଉ ବେଶୀ ଦିନ ଟାଣି ନେଇ ପାରିଲେ ନାହିଁ । ଯେଉଁଦିନ ପରୀକ୍ଷା ଫଳ ବାହାରିଲା, ସେ ଦିନ ଖବର ପାଇବା ପରେ ସେ ପ୍ରାଣ ତ୍ୟାଗ କଲେ । ମୃତ୍ୟୁ ସମୟରେ ତାଙ୍କର ଆଖି ଦିଓଟି ଅମରତ୍ୱର ଆଶାରେ ଉଜ୍ଜ୍ୱଳ ହୋଇ ଉଠିଥିଲା । ସେ ଦୁର୍ଗାପଦ ମୁହଁକୁ ଚାହିଁ ଚାହିଁ ଶେଷ ନିଃଶ୍ୱାସ ଛାଡିଲେ । ମରିବା ଆଗରୁ ସେ ଦୁର୍ଗାପଦ ଉପରେ ଆଶୀର୍ବାଦର ବୋଝ ଲଦି ଦେଇଗଲେ ।

ଆଶୀର୍ବାଦ ସହିତ ଯେଉଁ ଋଣର ବୋଝ ମଧ୍ୟ ଲଦା ହେଲା, ସେଥିରେ ଦୁର୍ଗାପଦର ଆଉ ଓକିଲାତି କରିବା ହେଲା ନାହିଁ । ଋଣର ଅଧିକାଂଶ ଖରଚ ହୋଇଥିଲା ଦୁର୍ଗାପଦ ପଛରେ । ତେଣୁ ଋଣ ଓ ପନର ଜଣବିଶିଷ୍ଟ ଗୋଟିଏ ପରିବାରର ଭାର ପଡ଼ିଲା ଦୁର୍ଗାପଦର ଦୁର୍ବଳ ଓ ଅନଭିଜ୍ଞ କାନ୍ଧ ଉପରେ । ନିଜର ସେ ସ୍ୱାସ୍ଥ୍ୟ ଓ କର୍ମ ପ୍ରେରଣା ନାହିଁ । ସେଥିରେ ଯୋଗ ହେଲା ଅର୍ଥଚିନ୍ତା । ତାର ହୃଦୟରେ ଯେଉଁ ନିଆଁ ଜଳୁଥିଲା, ତାହା ତାକୁ ତଳେ ତଳେ ଦଗ୍ଧ କରୁଥିଲା । ଏହି ସମୟରେ ଦାରିଦ୍ର୍ୟର ବିକଟ ରୂପ ଆଖି ସାମନାରେ ଦେଖି ସେ ଆତଙ୍କିତ ହୋଇ ଉଠିଲା । ଯିତାର ମୃତ୍ୟୁର ମାସକ ଭିତରେ ତାର ବୟସ ଦଶବର୍ଷ ଆଗେଇ ଯାଇଛି । ଦର୍ପଣ ସାମନାରେ ଛିଡା ହୋଇ ଅଣତିରିଶ ବର୍ଷର ଯୌବନ ଦେଖି

Digitized by srujanika@gmail.com

ତାହାର ଲଜ୍ଜା ହେଲା । ପ୍ରକୃତ କଣ୍ଟୁ ଜମିମ । ଏତେ କଷ୍ଟରେ ମଧ୍ୟ ତାହାର ନାକ ଦଉଡ଼ କୋହଳ ହୋଇ ନାହିଁ । ଗୁପ୍ତରେ ସେ ତାର କାର୍ଯ୍ୟ କରି ଗୃଲଚ । ଦୁର୍ଗାପଦ ବର୍ତ୍ତମାନ ବୈଶିଷ୍ଟ୍ୟ ଆଣିବାକୁ ଲାଗି ପଡ଼ିଲା ତାର ଜ୍ଞାନରେ । ଲେଖାପଢ଼ା ଯେ ଅନେକ ଦିନ ଆଗରୁ ଗ୍ଲାଡ ଦେଇ ଥିଲା । ପୁଣି ଆରମ୍ଭ କଲା । ନାନା ବହି ପଢ଼ି ସେ ଜ୍ଞାନ ବୃଦ୍ଧି କରିବାକୁ ଲାଗିଲା, ତାହାର ଜ୍ଞାନ ଓ ସ୍ୱାଧୀନ ଚନ୍ତା ଧାରା ପାଇଁ ସେ କଣ୍ଟୁ ଧୁଆଁଯାଣ୍ଡ ମଧ୍ୟ ଲାଭ କଲା । ଯମେ ଯମେ ଏହା ଧୁଆଁଯାଣ୍ଡ ପ୍ରତ ତାର ଗୋଟାଏ ମୋହ ଜାତ ହେଲା । ସଭା ସମିତରେ ବକ୍ତୃତା ଦେଇ କରତାଳ ଉପଭୋଗ କରିବାରେ ସେ ଗୋଟାଏ ମାଦକତା ଅନୁଭବ କଲା । ଯେଉଁ ବୈଶିଷ୍ଟ୍ୟ ଫୁଟାଇବାରେ ତାର ଗୋଟିଏ ନାଲ୍ଲକୁ ଆକୃଷ୍ଟ କରିବା ଉଦ୍ଦେଶ୍ୟ ଥିଲା, ତାହା ବକୃତ ହୋଇ ବର୍ତ୍ତମାନ ବ୍ୟାପକ ପ୍ରଶଂସା ଏବଂ ବହୁଲୋକ ଉପରେ ପ୍ରଭାବ ବସ୍ତାର ପ୍ରତ ମୋହରେ ପରିଣତ ହେଲା ।

ଭାରତର ସ୍ୱାଧୀନତା ସଂଗ୍ରାମ ଯେତେବେଳେ ତୀବ୍ର ଆକାର ଧାରଣ କରିଥାଏ । ଦ୍ୱିତୀୟ ମହାଯୁଦ୍ଧରେ ପଶ୍ଚିମ ପଟେ ଇଂରେଜ-ମାନଙ୍କର ପରାଜୟ ଯେତେ ହାସ୍ୟକର ହେଉଥାଏ, ଭାରତରେ ସେମାନଙ୍କ ଶାସନ ସେତେ ନିର୍ମମ ହେଉଥାଏ । ଶାସନ ଗ୍ଲୁଲଥାଏ ସେତେବେଳେ ବନ୍ଧୁକ ମୁନ ଓ ଅର୍ଡିନାନସ ଦ୍ୱାରା । ସବୁ ନେତା-ମାନେ ଥାଆନ୍ତି ଜେଲରେ । ଭାରତୀୟମାନଙ୍କ ଅପମାନ ପହଞ୍ଚିଥାଏ ଚରମ ସୀମାରେ । ଦୁର୍ଗାପଦକୁ ଏ ଅପମାନ ଯେତେବେଳେ ଅସହ୍ୟ ବୋଧହେଲା ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାକୁ ଚ୍ଛିଲା । ଘରେ ତାର ଉଦ୍ଦେଶ୍ୟ ଜଣାଇଲା । ସମସ୍ତେ ସମସ୍ୱରରେ କ୍ରନ୍ଦନ କରି ଉଠିଲେ । ବରଦା ଦେବୀ ଗ୍ଭର ଖୁଡ଼ୀ । ଦୁର୍ଗାପଦ ପିତାର ତୀକ୍ଷ୍ଣ ବୁଦ୍ଧି ସହତ ପାଇଛି ମାତାର ଖୁଡ଼ୀତା । ବରଦା ଦେବୀ କାନ୍ଦ କାନ୍ଦ

Digitized by srujanika@gmail.com

କହିଲେ, "ଆମ ଆଡ଼କୁ ନ ଚାହିଁ ତୋର ବାପା ଯେ ଏତେ ଖର୍ଚ୍ଚ କଲେ, ତାହା କଅଣ ଏଇଥିପାଇଁ ? ଯାହାର ଏତିକି ଟିକିଏ କର୍ତ୍ତବ୍ୟବୋଧ ନାହିଁ । ସେ କଅଣ ଯିବ ଦେଶର କାମ କରିବାକୁ !" ଦୁର୍ଗାପଦ ବିବ୍ରତ ହେଲା । ନିଜ ଅକ୍ଷମତା ଉପରେ ରାଗି ଦିନେ ସେ ଗୋଟିଏ କାଣ୍ଡ କରି ବସିଲା । ସାମାନ୍ୟ କାରଣରେ ସେ ଜଣେ ଉଚ୍ଚପଦସ୍ଥ ଇଂରେଜ କର୍ମଚାରୀଙ୍କୁ ପ୍ରହାର କଲା, ଅବଶ୍ୟ ଦୋଷ ଥିଲା କର୍ମଚାରୀଙ୍କର । ଯେତେବେଳେ ଅନ୍ୟ ସମସ୍ତେ ଓ ଦୁର୍ଗାପଦ ଭାବିଲା ଯେ ଭବିଷ୍ୟତ ନଷ୍ଟ ହୋଇଗଲା, ସେତେବେଳେ ସେ ଯାଇଲା ସେହି କର୍ମଚାରୀଙ୍କଠାରୁ କ୍ଷମା ପ୍ରାର୍ଥନାର ଛଠି । କିନ୍ତୁ ଏହି ଘଟଣା ପାଇଁ ଦୁର୍ଗାପଦର ଚାକିରି ମିଳିବା ଅସମ୍ଭବ ହୋଇଗଲା । କୌଣସି ପ୍ରତିଷ୍ଠାନ—ସରକାରୀ ବା ବେସରକାରୀ କର୍ମଚାରୀ ତାକୁ ସାମାନ୍ୟ ଖଣ୍ଡେ ଚାକିରି ଦେଲେ ନାହିଁ । ଘରର ଆର୍ଥିକ ଅବସ୍ଥା ଏପରି ଯେ ଭିକ୍ଷା ବୃତ୍ତି କରିବାକୁ ଆଉ ଡେରି ନ ଥାଏ । ସ୍ତ୍ରୀ ଓ ବାଳକ ବାଳିକା ନେଇ ପନ୍ଦର ଜଣ ବିଶିଷ୍ଟ ଗୋଟିଏ ପରିବାର । ସ୍ତ୍ରୀମାନଙ୍କର ଏପରି କୌଣସି ଗୁଣ ନାହିଁ ଯେ ଅର୍ଥୋପାର୍ଜନରେ ସାହାଯ୍ୟ କରିବେ । ଦୁର୍ଗାପଦ ସମସ୍ତ ଲଜ୍ଜା ଓ ଉଚ୍ଚାଶା ତ୍ୟାଗ କରି ଚାକିରି ଅନୁସନ୍ଧାନରେ ବୁଲିବାକୁ ଲାଗିଲା । ସବୁଠୁ ବଳି ତାକୁ ଅପମାନ ଲାଗିଲା ଏକଥା ଦେଖି ଯେ ଯେଉଁ କନ୍ୟା ପିତାମାନେ ବିଷ୍ଣୁପ୍ରସାଦ ବାବୁ ବଞ୍ଚିଥିବା ସମୟରେ ବାରମ୍ବାର ବିବାହ ପ୍ରସ୍ତାବ ସହ ନାନା ପ୍ରଲୋଭନ ଦେଖାଉଥିଲେ, ସେମାନେ ଏ ଦୁର୍ଦ୍ଦିନରେ ଥରେ ଚାହିଁଲେ ବି ନାହିଁ । ସମାଜ ଓ ଦେଶର ଲୋକମାନଙ୍କ ପ୍ରତି ତାର ଯେଉଁ ବିଦ୍ୱେଷ ଜାତ ହେଲା, ତାହା ରହିଗଲା ନିଜକୁ ବଡ଼ ଦେଖାଇବାକୁ ଯାଇ ବାହାରେ ଯେତେ ଦେଶପ୍ରେମିକତା ଦେଖାଉ ବା ସ୍ୱରାଜ୍ୟପ୍ରାର୍ଥୀମାନଙ୍କର ପ୍ରଶଂସା କରୁନା କାହିଁକି, ଶେଷରେ ଚାକିରି ଦେଲେ ଜଣେ ଇଂରେଜ ।

Digitized by srujanika@gmail.com

ସାମାନ୍ୟ ପରିଶ୍ରମରେ ଟଙ୍କାର ସ୍ରୋତ ବହୁଥିବା ପରେ ଘରେ ସମସ୍ତେ ନିଃଶ୍ୱାସ ମାରିଲେ । ଦୁର୍ଗାପଦ କିନ୍ତୁ ସ୍ୱର୍ଗ ପାଇଲା । ମଇଦା ସହିତ ତେନ୍ତୁଳ ମଞ୍ଜିର ଗୁଣ୍ଡ, ଚିନି ସହିତ କାଚ ଗୁଣ୍ଡ, ତେଲ ସହିତ ପାଣି, ଘିଅ ସହିତ ଚର୍ବି ଓ ଅନ୍ୟାନ୍ୟ ନାନା ନୂତନ ଆବିଷ୍କାରରେ କୋଟି କୋଟି ଟଙ୍କା ଲାଭ କରି ମଧ୍ୟ ବ୍ୟବସାୟୀ-ମାନଙ୍କର ପିପାସା ଉପଶମ ନ ହୁଏ । ଜିନିଷର ମୂଲ୍ୟ ବୃଦ୍ଧି ଅନେକେ ଯେତେବେଳେ ଊର୍ଦ୍ଧ୍ୱଗାମୀ ହେଉଥାଆନ୍ତି, ସେତେବେଳେ ବ୍ୟବସାୟୀମାନେ ମନ୍ଦିର, ଧର୍ମଶାଳା ଓ ଦାନ ଆଦି ନାନା ଅନୁଷ୍ଠାନ ଦ୍ୱାରା ଧାର୍ମିକତାର ପ୍ରମାଣ ଦେଇ ଦେଶରେ ପୂଜ୍ୟ ହେଉ ଥାଆନ୍ତି । ଘରେ ଯାହା ସାମାନ୍ୟ କେତେ ଖଣ୍ଡ ଅଳଙ୍କାର ଓ ଜମି ଥିଲା, ତାହା ବନ୍ଧକ ହୋଇଗଲା । ଦୁର୍ଗାପଦ ତଥାପି ଆଦର୍ଶଭ୍ରଷ୍ଟ ହୋଇ ନାହିଁ । କିନ୍ତୁ ଋଣଦାତାମାନେ ଯେତେବେଳେ ତାଙ୍କରେ ଅପମାନ କରିବାକୁ ଛାଡ଼ିଲେ ନାହିଁ ସେତେବେଳେ ଦୁର୍ଗାପଦ ଟିକିଏ ଭାବି ବସିଲା । ଯେଉଁଠି ତାର ସ୍ୱାକର ସେଠି ଘୁଷ୍ ନେବାର ଯଥେଷ୍ଟ ସୁବିଧା ଥିଲେ ମଧ୍ୟ ସେ କେବେ ହେଲେ ଲୋଭ କରି ନାହିଁ । କିନ୍ତୁ ଅବସ୍ଥା ଏପରି ହେଲା ଯେ, ମାସ ସରିଆଣା ନେବାକୁ ସୁଦ୍ଧା ତାର ବାଧିଲା ନାହିଁ । ମନ ତାର ଯୁକ୍ତି କଲା, 'ଆଦର୍ଶ ବୋଲାଯିବ ନାମାନ୍ତର ମାତ୍ର । ତାର ମଧ୍ୟ ବଞ୍ଚିବାର ଅଧିକାର ଅଛି । ଏ ଯୁଗରେ ଯଦି ବଞ୍ଚିବାର ଉପାୟ ଏହାହିଁ ହୁଏ, ସେ କାହିଁକି ସେ ଉପାୟ ନ କରିବ ।'

କିନ୍ତୁ ପୁଣି ହଠାତ୍ ସବୁ ଓଲଟ ପାଲଟ ହୋଇଗଲା ଯେତେ-ବେଳେ କମଳାକାନ୍ତ ବାବୁ ତାଙ୍କର ସୁନ୍ଦରୀ କନ୍ୟା ସହ ଦୁର୍ଗାପଦର ଘରର ଗୋଟିଏ ପାଖରେ ଭଡ଼ା ନେଇ ରହିଲେ । ବାଣୀର ଉଚ୍ଚ କୁଚ, ବର୍ତ୍ତୁଳ ନିତମ୍ବ ଉପରେ ନର୍ତ୍ତିତ କେଶ ଗୁଚ୍ଛ, ଅପାଙ୍ଗ ଚାହାଣୀ,

Digitized by srujanika@gmail.com

ଲସ୍ୟମୟ ଗମନ ତାକୁ ଦୁର୍ବାର ଶକ୍ତିରେ ଆକର୍ଷଣ କରିବାକୁ ଲାଗିଲା । ତାର ପ୍ରତି ପଦକ୍ଷେପରେ ଦୁର୍ଗାପଦର ପ୍ରତ୍ୟେକ ଧମନୀରେ ରକ୍ତ ଗରମ ହୋଇ ଉଠିଲା । ସେ ଅନୁଭବ କଲା ଯେପରି ତାର ମସ୍ତିଷ୍କ ଉପରେ ରକ୍ତର ଚାପ ବୃଦ୍ଧି ପାଉଛି । ଯୌବନର ପ୍ରାରମ୍ଭରେ ହୃଦୟରେ ଏହିପରି ବେଦନା ସେ ଅନୁଭବ କରିଥିଲା । ତାର ସୁପ୍ତ କାମନା ଜାଗ୍ରତ ହେଲା ଭୀଷଣ ବୁଭୁକ୍ଷା ନେଇ । ଆଜି ଯାହା କରୁଛି ବାକି ଥିଲା ବାଣୀର ମୁହଁରୁ ନିଜ ଲେଖାର ପ୍ରଶଂସା ଶୁଣି ମୁଣ୍ଡଟି ଏକଦମ୍ ଘୂରିଗଲା । ବାଣୀର ଜବାଣୀକୁ ଘୃଣା । ଦୁର୍ଗାପଦ କାହାରିକୁ ନ ପଚାରି ଚୌକିରୁ ଉଠିପଡ଼ି ଦେଲା । ଘରର ସମସ୍ତେ ଧୂର୍ଣ ସମସ୍ୱରେ ସ୍ପନ୍ଦନ କରି ଉଠିଲେ । ଦୁର୍ଗାପଦ ଗର୍ବର ସହିତ ବାଣୀର ମୁହଁକୁ ଚାହିଁଲା ପ୍ରଶଂସା ପାଇଁ ବାଣୀର ପାତଳା ଅଧରରେ ଖେଳିଗଲା ମୋନାଲିସାର ରହସ୍ୟମୟୀ ହସ । ଦୁର୍ଗାପଦ ତାହାକୁହିଁ ଯଥେଷ୍ଟ ମନେକଲା । ଯାହାର ପ୍ରତୀକ୍ଷାରେ ସେ ଯୌବନର ଉତ୍ତମାଂଶ କଟାଇ ଦେଇଛି, ସେ ଆଜି ଦୁଆରେ । ଦୁର୍ଗାପଦର ଜୀବନଧାରା ବଦଳି ଗଲା । ତାର ଲୁପ୍ତ ପ୍ରେରଣା ଓ ଆଦର୍ଶ ଫେରି ଆସିଲା । ସାମାନ୍ୟ ଟିକିଏ ଦକ୍ଷିଣା ପବନରେ ଆକାଶର ଭୟଙ୍କର କଳାମେଘ ନିମିଷକେ ଅନ୍ତର୍ହିତ ହେଲା ଭଳି ତାର ସବୁ ବିକୃତି ତିରୋହିତ ହେଲା । ଦୁର୍ଗାପଦ ପୁଣି ଲାଗିପଡ଼ିଲା ବ୍ୟାୟାମ ଓ ଲେଖା ପଢ଼ାରେ । ଅଳ୍ପଦିନ ଭିତରେ ତାହାର ଚେହେରାର ଅନେକ ପରିବର୍ତ୍ତନ ହୋଇଗଲା । ଦେହ ଓ ମନରେ ସେ ଅପୂର୍ବ ସ୍ୱାସ୍ଥ୍ୟ ଅନୁଭବ କଲା ।

ଓକାଲତି ଆରମ୍ଭ କଲା । କିନ୍ତୁ ବାଣୀ ତାର ସମ୍ପୂର୍ଣ୍ଣ ତାହା ନ ଜାଣିବା ପର୍ଯ୍ୟନ୍ତ ସେ ସେଥିରେ ମନ ଲଗାଇ ପାରିଲା ନାହିଁ । ଅପେକ୍ଷା କରିବାର ତାର ଧୈର୍ଯ୍ୟ ନାହିଁ । ବର୍ଷ ବର୍ଷ ଧରି ଗୁପ୍ତ

Digitized by srujanika@gmail.com

ପ୍ରଣୟ କରିବାକୁ ତାର ସମୟ ନାହିଁ । ତାର ପ୍ରତିଦ୍ୱନ୍ଦୀ ଶ୍ରୀନିବାସ ଦେଖିବାକୁ ସୁନ୍ଦର । ନିଜ ବିଷୟରେ ନାନା ଅଦ୍ଭୁତ କଥା ସୁନ୍ଦର ବିଶ୍ୱାସଯୋଗ୍ୟ ଭାବରେ କହି ସେ ବାଣୀର ମନ ଜୟ କରିବାକୁ ଚେଷ୍ଟା କରୁଛି । ବାଣୀର ସାମାନ୍ୟ ଇଚ୍ଛା ସେ ସାଙ୍ଗେ ସାଙ୍ଗେ ପୂରଣ କରେ । ଦୁର୍ଗାପଦ ଭାବେ ଏ ନିର୍ଲଜ୍ଜତାକୁ ବାଣୀ ନିଶ୍ଚୟ ଘୃଣା କରୁଛି । ନିଜର ନାନା ଗୁଣ ଓ ପୌରୁଷ ଦେଖାଇ ଦୁର୍ଗାପଦ ବାଣୀକୁ ଆକୃଷ୍ଟ କରିବାର ଚେଷ୍ଟା କରେ । କିନ୍ତୁ ତାର ଅନ୍ତରର ଭୟ ଶ୍ରୀନିବାସ ପ୍ରତି । ମନରେ ଶ୍ରୀନିବାସର ଏହି ନିର୍ଲଜ୍ଜତା ପାଇଁ ଦୁର୍ଗାପଦ ତାକୁ ଅପମାନ ଦେଇ ବୁଝେ । ଶ୍ରୀନିବାସ ଗୋଟାଏ ଅବଜ୍ଞାରେ ହସି ହସି କହେ "ଏଥିରେ ଲଜ୍ଜା କରିବାର କଅଣ ଅଛି । ବିଗ ବା ମୟୂର ବଗୁଲି ବା ମୟୂରୀକୁ ଆକୃଷ୍ଟ କରିବା ପାଇଁ ନାନା ପ୍ରକାର ନୃତ୍ୟର ପ୍ରଦର୍ଶନୀ ଦେଖାଏ । ଏ ଦୃଷ୍ଟାନ୍ତ ପ୍ରାଣୀ ଜଗତରେ ବହୁଳ । ତୋ ମତରେ ଏ ମଧ୍ୟ ନିର୍ଲଜ୍ଜତା । କିନ୍ତୁ ଏହାହିଁ ପ୍ରକୃତିର ନିୟମ । ସମାଜର ଅପ୍ରାକୃତିକ ନିୟମ ଓ ଆଦର୍ଶ ଯୋଗୁଁ କେତେକ ବ୍ୟର୍ଥ ଯୁବକ ସାହିତ୍ୟରେ ନାରୀ ପ୍ରତି ଔଦାସୀନ୍ୟ ବା ଅବଜ୍ଞାର ଭାବ ଦେଖାଇ ନାରୀକୁ ଆକୃଷ୍ଟ କରିବାର ଯେଉଁ ପନ୍ଥା ଦେଖାଇ ଅଛନ୍ତି, ତାହା ଅନ୍ୟ ବ୍ୟର୍ଥ ଯୁବକଙ୍କର ମନକୁ ଭଲ ଲାଗି ପାରେ, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ତାହା ଅଚଳ । ତା ଛଡ଼ା ସମାଜ ପକ୍ଷରେ ତାହା ଅସ୍ୱାସ୍ଥ୍ୟକର ମଧ୍ୟ ।" କେତେଥର ନଈ କୂଳରେ ବାଣୀ ସହିତ ଏକା ବସିଥିବା ସମୟରେ ଦୁର୍ଗାପଦ ଭାବେ ତାର ମନ ଖୋଲିଦେବାକୁ । କିନ୍ତୁ ସ୍ଥିର ହୋଇ କହିବା ନିଜ୍ଞା ସେ ଆଉ କିଛି କରିପାରି ନାହିଁ । ବ୍ୟର୍ଥତାର ଗୋଟାଏ ଅଯଥା ଗର୍ବ ଅଛି । ସେହି ଗର୍ବରେ ଦୁର୍ଗାପଦ ଇଚ୍ଛାକଲେ ବାଣୀ ଆଗେ ଏ ଦୁର୍ବଳତା ପ୍ରକାଶ କରିବ—ଯେଉଁ ଅଗ୍ନି ତାକୁ ତଳେ ତଳେ ଦଗ୍ଧ

Digitized by srujanika@gmail.com

କରୁଥିଲା, ତାହା ଅନୁଭବ କଲେ ମଧ୍ୟ ଦୁର୍ଗାପଦ ଏହାକୁ ଦୁର୍ବଳତା ବୋଲି ମନକୁ ବୁଝାଇବାର ଚେଷ୍ଟା କରଛି । ନିଜର ମନ ଖୋଲି ସବୁ କହିବାକୁ ଚେଷ୍ଟା କଲେ ମଧ୍ୟ ସେ କେବେହେଁ ତାହା କରି ପାରିନାହିଁ । ନିଜର ଏ ଅକ୍ଷମତା ଯେତେବେଳେ ତାର ଅସହ୍ୟ ବୋଧହୁଏ, ସେତେବେଳେ ତାର ଆଖିରୁ ପାଣି ଝରି ପଡ଼େ । ଦିନେ ସେ ସବୁ ଦୁର୍ବଳତା ଠେଲି ବାଣୀକୁ ତାର ମନକଥା କହିବାକୁ ତାର ଘରକୁ ଗଲା । ସେ ଦିନ ବାଣୀ ଘରେ ଏକା । ଘରକୁ ଯାଇ ସେ ଯାହା ଦେଖିଲା ସେଥିରେ ସେ ନିଶ୍ଚଳ ହୋଇ ଛିଡ଼ା ହୋଇ ରହିଲା । ବାଣୀ ଯାହାକୁ ଘୃଣାକରେ ବୋଲି ସେ ଭାବିଥିଲା ସେ ଆଲିଙ୍ଗନ କରି ରହିଛି ବାଣୀକୁ—ବାଣୀ ତାର ଛାତିରେ ମୁଣ୍ଡ ରଖି ଛିଡ଼ା ହୋଇ ରହିଛି । ଦୁର୍ଗାପଦର ମୁଣ୍ଡ ହଠାତ୍ ଘୂରିଗଲା । ସେ କୌଣସି ମତେ ନିଜକୁ ସମ୍ଭାଳି ଶ୍ରୀନିବାସର ମୁଣ୍ଡ ଫଟାଇ ଦେବାର ଅଦମ୍ୟ ଇଚ୍ଛାକୁ ଚାପି ଧୀରେ ଧୀରେ ଫେରି ଆସିଲା । ସମସ୍ତ ନାରୀ ଜାତି ପ୍ରତି ଘୃଣାରେ ତାର ଦେହ ଥରି ଉଠିଲା । କୌଣସି ନାରୀର ମସୃଣ ସୁନ୍ଦର ବେକ ଚିପି ମାରିଦେବାର କଳ୍ପନାରେ ସେ ଗୋଟାଏ ଆନନ୍ଦ ଅନୁଭବ କଲା । ଘରକୁ ଫେରିଆସି ବୃଥା କାରଣରେ ସେ ତାର ସାନ ଭଉଣୀକୁ ପ୍ରହାର କଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଦୁର୍ଗାପଦ ନୀରବରେ ବସି ଭାବିଲା "ନାରୀ ସ୍ୱାଧୀନତା ଉଚ୍ଛୃଙ୍ଖଳତାର ନାମାନ୍ତର । ଆଜିକାଲି କାହାରି ସଂଯମ ନାହିଁ । ଏହି ଅସଂଯତାକୁ ପ୍ରଶ୍ରୟ ଦେବା ପାଇଁ ଗୋଟାଏ ମତ ଉଠିଛି ନାରୀକୁ ସ୍ୱାଧୀନତା ଦେବା । ମୁଁ ଯଦି କ୍ଷମତା ପାଆନ୍ତି··· । ଏଇତ ନାରୀ । ବାହାରର କ୍ଷଣିକ ସୌନ୍ଦର୍ଯ୍ୟ ତଳେ ପଙ୍କ, କୃମି, କୁତ୍ସିତ ହାଡ଼, ମିଥ୍ୟା, ଛଳନା, ବ୍ୟଭିଚାର, ନରକ । ବୁଦ୍ଧ ଶଙ୍କରଙ୍କର ପନ୍ଥା ହିଁ ଠିକ୍ ।"

Digitized by srujanika@gmail.com

ପରଦିନ ତାର ଭୀଷଣ କମ୍ପ ସହ ଜ୍ୱର ଆସିଲା । ଏ ଜ୍ୱର ଛାଡିବାକୁ ଲାଗିଲା ତାର ତିନ ମାସ । ଚିକିତ୍ସା ବିନା ମରୁ ମରୁ ଦୁର୍ଗାପଦ ବଞ୍ଚି ଉଠିଲା କିନ୍ତୁ ନିଃଶ୍ୱାସ ମାରିବାକୁ ତାର ବେଳ ନାହିଁ । ଏତେ ଦିନ ଉତ୍ତେଜନାରେ ଘରର ଦାରିଦ୍ର୍ୟ କଥା ତାର ଖିଆଲ ନ ଥିଲା ସାମାନ୍ୟ ଟିକିଏ ସୁସ୍ଥ ହୋଇ ସେ ଚାକିରି ଉଦ୍ଦେଶ୍ୟରେ ବାହାରିଲା । ବହୁ କଷ୍ଟରେ ହେଲେ ମଧ୍ୟ ଅଳ୍ପଦିନ ଭିତରେ ସେ ଖଣ୍ଡେ ଚାକିରି ପାଇଲା । ବିବାହର ଉପଯୁକ୍ତ ବୟସ ତାର ଅତିକ୍ରମ କରି ଯାଇଛି । ଘରର ସମସ୍ତେ ପୁଣି ଥରେ ସମସ୍ୱରେ କ୍ରନ୍ଦନ କରି ଉଠିଲେ । ପ୍ରଥମ ଯୌବନ ବ୍ୟର୍ଥତାରେ କଟିଯିବା ପରେ ବିବାହ ଗୋଟିଏ ଦୁଃସାହସିକ କାର୍ଯ୍ୟ ମନେ ହୁଏ । କିନ୍ତୁ ସମବେତ କ୍ରନ୍ଦନର ଶକ୍ତିକୁ ସେ ଏଡି ପାରିଲା ନାହିଁ । ସେ ଭାବିଲା "ପୁତ୍ରାର୍ଥେ କ୍ରିୟତେ କାର୍ଯ୍ୟା । ତା ସହିତ ଆଉ ସମ୍ବନ୍ଧ କଅଣ ହେବ ? ଘରର ଓ ସମାଜର ମଙ୍ଗଳ ପାଇଁ ମୁଁ ଆଦର୍ଶ ବିବାହ କରିବି ।" ଯେଉଁ ସାମାଜିକ ଅଟ୍ଟାଳିକା ବିବାହ ଉପରେ ପ୍ରତିଷ୍ଠିତ ତାର ଭିତ୍ତି ମନର ସ୍ୱାସ୍ଥ୍ୟକର ଆନନ୍ଦରେ । ଦୁର୍ଗାପଦ ମନର ସେ ସ୍ୱାସ୍ଥ୍ୟ ହରାଇଛି । ସମାଜରେ ଯେତେବେଳେ ଯୌତୁକ ପ୍ରଥା ଘୃଣ୍ୟ ଆକାର ଧାରଣ କରିଥାଏ, ଦୁର୍ଗାପଦ ବିବାହ କଲା ଗୋଟିଏ ଅତି ଦରିଦ୍ର ପରିବାରର ସୁନ୍ଦରୀ କନ୍ୟାକୁ ବିନା ଯୌତୁକରେ । ଘରର ସମସ୍ତେ ଅଗତ୍ୟା ଏହାକୁ ସମର୍ଥନ କଲେ । ଏ ବିବାହ ଯୋଗୁଁ ସେ ସମାଜରେ ପାଇଲା ସମ୍ମାନ ।

ପ୍ରତିମା ସୁନ୍ଦରୀ ହେଲେହେଁ ଏତେ ବୟସ ପର୍ଯ୍ୟନ୍ତ ତାର ବିବାହ ହୋଇ ନ ଥିଲା । ପିତାର ଦାରିଦ୍ର୍ୟ ଯୋଗୁଁ । ଏଥି ସକାଶେ ପିତାଙ୍କ-ଠାରୁ ବହୁ ଗଞ୍ଜଣା ସେ ପାଇଛି । ପିତା ପ୍ରକାରାନ୍ତରେ ତାକୁ ଆତ୍ମହତ୍ୟା କରିବାକୁ ମଧ୍ୟ କହି ଅଛନ୍ତି । ନିଜର ବ୍ୟର୍ଥ ଜୀବନ ବିସର୍ଜନ ଦେବା ପାଇଁ ମନସ୍ଥ କଲାବେଳେ ସେ ପାଇଲା ଦୁର୍ଗାପଦ

Digitized by srujanika@gmail.com

ଭଲ ସ୍ୱାମୀ—ଯାହାର ବାହାରେ ବେଶୀ ସୁନାମ । ବାସର ରାତିରେ ପ୍ରତିମା ଖାଲି ଧଳା ବସ୍ତ୍ର ପିନ୍ଧିଛି ଆଖି ଢଳଢଳରେ କୃତଜ୍ଞତା ଭରି ଦୁର୍ଗାପଦଙ୍କୁ ଚାହିଁ ରହିଲା । ଦୁର୍ଗାପଦ ଆଖିରେ ଫୁଟି ଉଠିଲା ଦୟା କରିବାର ଗର୍ବ ।

ବାର୍ଦ୍ଧକ୍ୟ ବିନା ଆୟାସରେ କିଛି ପାଇଲେ ସୌଭାଗ୍ୟ ମନେ କରେ । ଯେତେ କ୍ଷୁଦ୍ର ହେଉ ନା କାହିଁକି ଯୌବନ ପ୍ରତ୍ୟେକ ଜିନିଷକୁ ଜୟ କରି ଲାଭ କରିବାରେ ଆନନ୍ଦ ପାଏ । ଏହି ଜୟରେ ଲାଭଠୁଁ ରୋମାଞ୍ଚ ବେଶୀ । ପ୍ରତିମାକୁ ଦୁର୍ଗାପଦ ପାଇଛି—ଜୟ କରି ନାହିଁ । ତାହାର ଏ ଆଦର୍ଶ ବିବାହ ସମାଜରେ ସମ୍ମାନ ଆଣି ଦେଇଛି—ଜୀବନରେ ପୁଲକ ଆଣି ଦେଇ ନାହିଁ । ଏହିଠାରେ ଦୁର୍ଗାପଦର ବ୍ୟର୍ଥତା । ଏହି ବ୍ୟର୍ଥତା ଉପରେହିଁ ଭବିଷ୍ୟତ ଜୀବନର ମୂଳଦୁଆ ପକାଇବାକୁ ହେବ । ବିବାହ ଆଜିକୁ ବର୍ଷେ ହେବ ହୋଇଗଲେ ମଧ୍ୟ ଦୁହେଁ ଦୁହିଁଙ୍କଠାରୁ ଅଛନ୍ତି ବହୁ ଦୂରରେ । ସମସ୍ତଙ୍କର ସେବା ଶୁଶ୍ରୂଷା ସାରି ପ୍ରତିମା ଯେତେବେଳେ ସମସ୍ତଙ୍କର ଧନ୍ୟବାଦ ଓ ଆଶୀର୍ବାଦ ନେଇ ଶୋଇବାକୁ ଆସେ, ସେତେବେଳେ ସେ ସ୍ୱାମୀର ସେବା ସାରି ଦେହ ଓ ମନର କ୍ଳାନ୍ତିରେ ଶୋଇପଡ଼େ ! ଏହାଛଡ଼ା ଦୁର୍ଗାପଦ ଆଉ କିଛି ପାଇନାହିଁ । ସେ ଦେଇଛି ବା କଅଣ ? ଦୁର୍ଗାପଦ ଯଥାସାଧ୍ୟ ଚେଷ୍ଟା କରେ ମନ ଭିତରେ ପ୍ରେମର ପୁଲକ ଜାତ କରାଇବାକୁ । ସେ ଭାବେ "ପ୍ରତିମା ଅପୂର୍ବ ସୁନ୍ଦରୀ । ମନଟି ମଧ୍ୟ ତାର ସରଳ । ମୋର ଓ ଅନ୍ୟର ତୃପ୍ତି ପାଇଁ ସେ ସର୍ବଦା ବ୍ୟସ୍ତ । ମୋର ଭାଗ୍ୟ ମୁଁ ପ୍ରତିମାକୁ ସ୍ତ୍ରୀ ରୂପେ ପାଇଛି ।" ପ୍ରତିମା ମଧ୍ୟ ଭାବେ, "ମୋର ଭାଗ୍ୟ ମୁଁ ଏଭଳି ସ୍ୱାମୀ ପାଇଛି । କେତେ କ୍ଷମା ଓ ଦୟାଳୁ ! ଏ ବିବାହ ହୋଇ ନ ଥିଲେ ମୁଁ ଆତ୍ମହତ୍ୟା କରିଥାନ୍ତି କିମ୍ବା କେଉଁ ଅପଦାର୍ଥର ହାତ ଧରି ଥାଆନ୍ତି ।" ଦୁହେଁ

Digitized by srujanika@gmail.com

ଅପ୍ରାଣ ଚେଷ୍ଟା କଲେ ହୃଦୟରେ ସେହି ପୁଲକ ଜାତ କରାଇବାକୁ ଯାହାର ପରିବରେ ସମସ୍ତ ଦୁଃଖ କଷ୍ଟ, ଗ୍ଲାନି ମନେ ହୁଏ । କିନ୍ତୁ ଦୁହିଁଙ୍କର ସେ ଉତ୍ସ ବନ୍ଦ ହୋଇ ଯାଇଛି । ହୃଦୟରେ ଗୋଟାଏ ଯନ୍ତ୍ରଣା ପାଇବା ଛଡ଼ା ଆଉ କିଛି ଲାଭ ହୁଏ ନାହିଁ । ମନର ଏହି ଅସହ୍ୟ ଅଚଳ ଅବସ୍ଥା ପାଇଁ ଦୁର୍ଗାପଦ ମଝିରେ ମଝିରେ ନିଜ ଉପରେ ଭାରି ରାଗି ଭାବେ ଏତେ ସାମାନ୍ୟ ପ୍ରେମର ଭାବ ଟିକକ ମୁଁ ଆଣି ପାରୁନାହିଁ !! କେବେ ମୋର ପ୍ରତିମା ପ୍ରତି ନିର୍ମଳ ପ୍ରେମ ଆସିବ । ଏହି ଛବିଶ ବର୍ଷ ବୟସରେ ଏତେ ବାର୍ଦ୍ଧକ୍ୟକୁ ଧିକ୍ । ନାଃ—ପିଲାପିଲା ହେଲେ ସବୁ ପାଇବ ।” ପ୍ରତିମା ମଧ୍ୟ ଭାବେ "ଏଇ ତ ଜୀବନ । ଏହା ତ ସମସ୍ତଙ୍କ ଭାଗ୍ୟରେ ହୁଏ । ଆଉ କିଛି ନ ମିଳୁ ଦୁଃଖ କଷ୍ଟ ତ ନାହିଁ । ପିଲାଛୁଆ ହେଲେ ସବୁ ପାଇବ ।” ମନ ଭିତରେ ଯାହା ଥାଉ ବାହାରେ ଏମାନେ ଆଦର୍ଶ ଦମ୍ପତି । ଦୁହିଁଙ୍କ ଭିତରେ ସାମାନ୍ୟ ମନାନ୍ତର କେହି କେବେହେଁ ଦେଖି ନାହାନ୍ତି । ଏ ସୁଖ୍ୟାତି ତଳେ ଅଛି ଅଭିନୟ ଏବଂ ଏହି ଅଭିନୟ ତଳେ ଅଛି ପୁଣି ନିଜ ସହିତ ଅବିରତ ଯୁଦ୍ଧ ।

ଦୁର୍ଗାପଦର ଜନ୍ମଠାରୁ ଆଜି ପର୍ଯ୍ୟନ୍ତ ଦୁଇଟି ମହାଯୁଦ୍ଧ ଶେଷ ହୋଇ ତୃତୀୟଟିର ସୂତ୍ରପାତ ହୋଇ ସାରିଛି । ବିଭିନ୍ନ ଦେଶର ଓ ଲୋକର ଶାନ୍ତି ଚେଷ୍ଟା ପୁଣି ଯୁଦ୍ଧର ନୂଆ କାରଣ ରୂପେ ଦେଖା ଦେଉଛି । କିନ୍ତୁ ବ୍ୟକ୍ତିର ଜୀବନରେ ଏହି ମହାଯୁଦ୍ଧ, ବାହ୍ୟ ସଫଳତା ସତ୍ତ୍ୱେ ବ୍ୟକ୍ତିର ଏହି ବୀଭତ୍ସ ବିକୃତି, ପୃଥିବୀ ମହାଯୁଦ୍ଧର କାରଣ ନୁହଁ ବୋଲି କିଏ କହି ପାରିବ !!! ଦୁର୍ଗାପଦ ବର୍ତ୍ତମାନ ଛଅଟି ପିଲାର ପିତା । ପ୍ରତିମାର ଏଥିରେ ଆପତ୍ତି ନାହିଁ କିମ୍ବା ଦୁର୍ଗାପଦର ସ୍ତ୍ରୀର ସ୍ୱାସ୍ଥ୍ୟ ପ୍ରତି ଲକ୍ଷ ନାହିଁ । ଦୁହେଁହିଁ ମଝିରେ ମଝିରେ ଆତ୍ମତୃପ୍ତିର ଇଚ୍ଛା ଦମନ କରି ରହିଁଥିଲେ ସନ୍ତାନ । ଦୁହିଁଙ୍କର

Digitized by srujanika@gmail.com

ସୁଖର କଳ୍ପନା ସନ୍ତାନଙ୍କୁ କେନ୍ଦ୍ର କରି । ପ୍ରତିମା ସବୁବେଳେ ବ୍ୟସ୍ତ ଥାଏ ସନ୍ତାନ ଓ ସ୍ୱାମୀର ସେବାରେ । ଦୁର୍ଗାପଦର ଲକ୍ଷ୍ୟ ଅର୍ଥ ସମ୍ମାନ ଓ ପ୍ରତିପତ୍ତି । ବହୁତ ପରିଶ୍ରମ କରି ଅଳ୍ପକାଳ ମଧ୍ୟରେ ତାର ଚାକିରିର ଅନେକ ଉନ୍ନତି ହୋଇଛି । ଆହୁରି ଉନ୍ନତି ତାର ଉଦ୍ଦେଶ୍ୟ । ଦେଶର ଅବସ୍ଥା ସୁଧାରିବା ପାଇଁ ସେ ନାନା ଉପାୟର ପ୍ରସ୍ତାବ ଦେଇ ମନ୍ତ୍ରୀଙ୍କ ଠାରୁ ଉନ୍ନତି ଓ ପ୍ରଶଂସା ପାଇଛି । ଦେଶର ଅବସ୍ଥା ସୁଧାରିବା ବା ସମାଜରେ ଉନ୍ନତି ଆଣିବା ତାର ଲକ୍ଷ୍ୟ ନୁହେଁ । ତେଣୁ ତାର କର୍ମତତ୍ପରତାରେ ମାନବିକତା ନାହିଁ । ସେ ଯାହା ହେଉ, ସୁଲେଖକ, ସଂସ୍କାରକ, କର୍ତ୍ତବ୍ୟନିଷ୍ଠ ବୋଲି ସେ ସମ୍ମାନ ସହିତ ଅର୍ଥ ଓ ପ୍ରତିପତ୍ତି ମଧ୍ୟ ପାଉଛି । କିନ୍ତୁ ଏହା ମାଦକ ଦ୍ରବ୍ୟ ଭଳି ସେ ଅଧିକରୁ ଅଧିକ ପାନ କରିବାକୁ ଚାହେଁ । ତାର ତୃପ୍ତି ନାହିଁ, ପ୍ରତିମା ମଧ୍ୟ ଶଶୁର ଘରେ ପାଇଛି ସମ୍ମାନ ତାର ସରଳତା ଓ ନିରାଡମ୍ବରତା ପାଇଁ, ସେ ମଧ୍ୟ ଅଧିକ ଆଶାରେ ନିଜର ସୁଖ, ଶାନ୍ତି, ସ୍ୱାସ୍ଥ୍ୟ ବିସର୍ଜନ ଦେଇ ଲାଗିଛି ସମସ୍ତଙ୍କୁ ତୃପ୍ତି କରିବାରେ । ତଥାପି ଦୁହିଁଙ୍କର ମନ ଦିନେ ଦିନେ ହାହାକାର କରି ଉଠେ ସେହି ସୁଖ ପାଇଁ ଯାହାକି ସେ ଆଉ ପାଇବେ ନାହିଁ ।



Digitized by srujanika@gmail.com

# ଭୌତିକ

ହଠାତ୍ ଦିନେ ବଦଳିର ଆଦେଶ ପାଇଲି କୋରାପୁଟ ଜିଲ୍ଲାକୁ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ ହୋଇ ଯିବାକୁ । ବ୍ଲକସ୍ତରର ପଦୋନ୍ନତ ହୋଇ ବଦଳି ହେଲି । ଅତଏବ ଆପତ୍ତି ଅଭିଯୋଗ କରିବାକୁ ସାହସ ହେଲା ନାହିଁ । କାରଣ କିଏ ଜାଣେ ଅସୁବିଧା ଦର୍ଶାଇଲେ ବଦଳିର ଆଦେଶ ଫେରାଇ ନିଆ ନ ହବ । ପିଲାପିଲିଙ୍କୁ ସାଙ୍ଗରେ ନେବାର ସୁବିଧା ହେଲା ନାହିଁ, କାରଣ ସମସ୍ତେ ଇସ୍କୁଲର ଛାତ୍ର-ଛାତ୍ରୀ । ଶେଷ ପରୀକ୍ଷା ଆଉ କିଛିମାସ । ଏଭଳି ଅବସ୍ଥାରେ ଗୋଟିଏ ଇସ୍କୁଲ ଛଡ଼ାଇ ଆଉ ଗୋଟିଏ ନୂଆ ଇସ୍କୁଲରେ ଭର୍ତ୍ତି କରାଇବା ମାନେ ବର୍ଷଟିଏ ନଷ୍ଟ । କୋରାପୁଟରେ ମଧ୍ୟ ସୁବିଧା ଥିବ ଏ ସମସ୍ୟରେ । ଅତଏବ ପିଲାଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଧ୍ୟ ଗୃହିଣୀ ଯିବାକୁ ଅମଙ୍ଗ ହେଲେ ।

ଅଗତ୍ୟା ନିଜେ ଚାଲିବା ଭଳି ସାମାନ୍ୟ କିଛି ଜିନିଷ ନେଇ ଲମ୍ବା ସଫରକୁ ଉପଭୋଗ୍ୟ କରିବା ପାଇଁ ଦିନେ ନୂଆ ଗାଡ଼ି ଦେଖି ଭାଡ଼ାର ଯନ୍ତ୍ରକୁ ଏକା ନୂଆ କିଣା ହୋଇଥିବା ମଟରରେ । କୋରାପୁଟ ଆଉ ସେତେବେଳେ ଦୁଇଶହ ମାଇଲ ଅଛି ସେତେ-

ବେଳେ ରାତି ଆଠଟା । ଆକାଶରେ ଜ୍ୟୋତ୍ସ୍ନାର ପ୍ଳାବନ, ସୃଷ୍ଟିଆଡ଼େ ବର୍ଷୀୟାଁ ବନାନୀ, ନବନନ୍ଦନ ନାଅର । ନବନନ୍ଦନା ଭ୍ରମରର ଅବିରାମ ଶୁଭୁଥାଏ ମୋର ନୂଆ ମଟରର ଅପୂର୍ବ ଗୁଞ୍ଜନ । ପ୍ରତ୍ୟେକ ମଣିଷ ବୋଧହୁଏ ପାଗଳ, ବିଶିଷ୍ଟ ପରିସ୍ଥିତିରେ ତାର ବିଶିଷ୍ଟ ପ୍ରକାର ପାଗଳାମି ପ୍ରକାଶ ପାଏ । ଏ ପରିସ୍ଥିତିରେ ମୋର ବି ଗୋଟାଏ ପ୍ରକାର ପାଗଳାମି ବାହାରିଲା । ମଟର ଛାଡ଼ିଦେଲି ଘଣ୍ଟାକୁ ୭୦ ରୁ ୭୦ ମାଇଲ ଗତିରେ । ଖାଲି ସେତିକି ନୁହେଁ, ମଟରଟାକୁ ଅଙ୍କେଇ ବଙ୍କେଇ ରାସ୍ତାରେ ଚଲାଇଲି । ମଝିରେ ମଝିରେ ଷ୍ଟିୟାରିଂ ଛାଡ଼ି-ଦେଇ ବି ଚଳେଇଲି । ଅନେକ ଥର ରାସ୍ତା କଡ଼କୁ ମଟର ଚାଲିଯାଇ ଓଲଟି ଯିବାରୁ ଅଳ୍ପକେ ରକ୍ଷା ପାଇଛି । ଓଲଟିଲେ ମଟରଟି ଅନ୍ତତଃ ଚାଳିଶିଟି ଥର ଓଲଟ ପାଲଟ ହୋଇ ଅଟକିବ ଯାଇ କୌଣସି ପଥର ବା ଗଛରେ ପିଟି ହୋଇ । ପାଗଳାମି ଏମିତି ମାଡ଼ି ବସିଥାଏ ଯେ ପରିଣାମ ଆଖି ଆଗରେ ଦେଖା ଦେଇ ସୁଦ୍ଧା ସେମିତି ମଟର ଚଳେଇଥାଏ ଖାଲି ସେତିକି ନୁହେଁ, ଗୀତ ଗାନ୍ଧ ଦେଇଥାଏ ତାରସ୍ୱର ସ୍ୱରରେ ଯାହାର ଶବ୍ଦ ଦିଲ୍ଲୀରୁ ବର୍ମା ପର୍ଯ୍ୟନ୍ତ ନିଶ୍ଚୟ ଶୁଭୁଥିବ । କଲେଜରେ ପଢ଼ିବା ବେଳେ ସୁରମା ପ୍ରେମରେ ପଡ଼ି ତାକୁ ଆକର୍ଷଣ କରିବା ପାଇଁ ଥରେ ଥରେ ଗୀତ ଗାଇଥିଲି, କାରଣ ମୋର ପ୍ରତିଦ୍ୱନ୍ଦୀ ଦାମୋଦରର ଅନେକ ଭଲ ଗୁଣ ଭିତରେ ଭଲ ଗୀତ ଗାଇବା ଗୁଣଟି ଥିଲା । ଫଳରେ ଖାଲି ଯେ ସୁରମାକୁ ହରାଇଲି ତାହା ନୁହେଁ, ଅନେକ ବିଦ୍ରୂପ ମଧ୍ୟ ସହ୍ୟ କରିବାକୁ ପଡ଼ିଥିଲା । ତାହାପରେ ଆଉ କେବେ ଗୀତ ଗାଇନାହିଁ । ଗୀତ ଗାଇବାର କୋହ ଉଠିଲେ ତାକୁ ଠେଲି ଦେଇଛି ।

ଆଜି କିନ୍ତୁ ବାପ୍ପା ରଜା ମୋତେ ବାପ୍ପା କରି ଦେଇଛି । ପାଗଳାମି ଏମିତି ସ୍ତରକୁ ଚାଲିଗଲା ଯେ ଆଉ କିଛିକ୍ଷଣ ଯାଇଥିଲେ

Digitized by srujanika@gmail.com

ବାପୁ। ଭଜା ତାଳ ମାଳ ମଜା ଦେଖିଥାଆନ୍ତି ପ୍ରବେଶ। ମନ୍ତ୍ରୀ କଣ୍ଠ ଧାରଣ୍ତ, ସମାଜର ହୃଷ୍ଟମ ମନୁଷ୍ୟତାର ବାନ୍ଧନର ମୁକ୍ତ ପାଇ ମୋର ମନର ନିଗୂଢ଼ ସ୍ତରରେ ଲୁକାୟିତ ଥିବା ଆଦିମ ବର୍ବରତା ପ୍ରକାଶ ପାଇଛି। ହୋଇଥିବ ! ହୋଇଥିବ !

ହଠାତ୍ ଆତଙ୍କିତ ହୋଇ ଶୁଣିଲି ମଟରର ସୁମଧୁର ଗୁଞ୍ଜନ ବନ୍ଦ ହୋଇ ବାହାରୁଛି ଗୋଟାଏ ବିକଟ ଭଡ଼ ଭଡ଼ ଧଡ ଧଡ ଆବାଜ। ନିମିଷକେ ସମ୍ମୁଖ ପାଗଳାମି ବୁଝିଗଲି। ସନ୍ଧ୍ୟାରେ ଜ୍ଞାତ ହେଲି ମଟର ପାଞ୍ଚ ମିନିଟରେ ନୋଟିସ ଦେଲା ଆଉ ବୁଝିବ ନାହିଁ। ଫଳତଃ ସେଇଆ ହେଲା ମଧ୍ୟ। ଆଉ ଅଳ୍ପ ବାଟ ଗଲା ପରେ ତିନୋଟି ଥର ବିକଟ ଶବ୍ଦ କରି ମଟର ବନ୍ଦ ହୋଇଗଲା। ସମସ୍ତ କାମନା-ବାସନା ତ୍ୟାଗୀ ନିର୍ବାଣ ପ୍ରାପ୍ତ ସନ୍ନ୍ୟାସୀ ଭଳି ଅଟଳ ଭାବରେ ରାସ୍ତା ମଝିରେ ଛିଡ଼ା ହୋଇ ରହିଲା। ଠେଲିବାକୁ ଚେଷ୍ଟା କଲି, ସୂତାଏ ବି ଘୁଞ୍ଚାଇ ପାରିଲି ନାହିଁ। ଯନ୍ତ୍ର ବିଦ୍ୟାର 'ଯ' ଅକ୍ଷର ନ ଜାଣିଲେ ମଧ୍ୟ ମଟରର ବନେଟ ଟେକି କଉଠି କଅଣ ବଗିଡ଼ିଛି ଖୋଜିବାକୁ ଚେଷ୍ଟା କଲି। ଉଦ୍ଦେଶ୍ୟ ଆଉ କିଛି ନୁହେଁ, ମଟରକୁ ଜଣାଇ ଦବାକୁ ଚାହେଁ ଯେ, ମୋ ପାଖରେ ଚାଲାକି ଚଳିବ ନାହିଁ, ମୁଁ ସବୁ ଜାଣେ। ଏଥିରେ ସେଥିରେ ହାତ ମାରିଲି, କିଛି ଫଳ ହେଲା ନାହିଁ। ତା' ପରେ ହାତ ଯୋଡି ଛିଡ଼ା ହୋଇ କହିଲି, କିନ୍ତୁ ମୋର ମନରେ କଅଣ ଏଇଆ ଥିଲା, ଶେଷରେ ଜଙ୍ଗଲ ମଝିରେ ମୋତେ ବାଘ ମୁହଁକୁ ଠେଲି ଦବୁ। ଅନେକ ହୋଇ ଉତ୍ତେଜିତ କରିବା ପାଇଁ ସାବନ୍ତ ଇଚ୍ଛାକୁ ଘଷାଟି ନିକିଥିଲି ତାର ସୃଷ୍ଟିକୁ। କୌଣସିଥିରେ କିଛି ହେଲାନାହିଁ। ଭଗବାନ୍ ନାହିଁ ଯେ ହାସ୍ୟରସ ସୃଷ୍ଟି କରିବାକୁ ବସିଛନ୍ତି କହନ୍ତି ! ସେମାନେ ଅସହାୟତା ଭିତରେ କୌତୁକହିଁ ସୃଷ୍ଟି କରୁଛନ୍ତି କେବଳ। କିନ୍ତୁ

Digitized by srujanika@gmail.com

ମହାକବି କାଳିଦାସ କହିଛନ୍ତି, ବିଶେଷ ମାନସିକ ଅବସ୍ଥାରେ ମନୁଷ୍ୟର ଜୀବ ଓ ନିର୍ଜୀବ ମଧ୍ୟରେ ପାର୍ଥକ୍ୟ ଜ୍ଞାନ ରହେନାହିଁ । ତାହା ନ ହେଲେ ବିରହୀ ଯକ୍ଷ କଅଣ ମେଘକୁ ପ୍ରିୟା ପାଖକୁ ସନ୍ଦେଶ ନେଇ ଯିବାକୁ ଅନୁନୟ ବିନୟ କରି ଥାଆନ୍ତା ! ଆଜି ଜ୍ଞାନୀ ବିଜ୍ଞାନୀମାନେ ବି କହୁଛନ୍ତି, କୌଣସି ବସ୍ତୁର ବସ୍ତୁତ୍ୱ ବାସ୍ତବ ନୁହଁ, ମନର ଭ୍ରମ ମାତ୍ର । କିଏ କହିପାରେ ମଠରର କୌଣସି ଗୁପ୍ତ ଉଦ୍ଦେଶ୍ୟ ନାହିଁ ।

ହତାଶ ଭାବରେ ସେତେବେଳେ ଚାରିଆଡ଼େ ଚାହିଁ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲି ମୁଁ କେଉଁ ପରିସ୍ଥିତିରେ । ଦେଖିଲି ଚାରି-ଆଡ଼େ ନିବିଡ଼ ଜଙ୍ଗଲ ନିକଟରେ ବା ଦୂରରେ ମନୁଷ୍ୟ ବସବାସ ବା ଉପସ୍ଥିତିର କୌଣସି ଲକ୍ଷଣ ନାହିଁ । ହାତ ଘଡ଼ିକୁ ଚାହିଁ ଦେଖିଲି ରାତି ମାତ୍ର ନ'ଟା । ପରିସ୍ଥିତିର ଭୟଙ୍କରତା ସେତେ-ବେଳେ ସମ୍ୟକ ଭାବରେ ଉପଲବ୍ଧ ହେଲା । ଭୟରେ ମୁଣ୍ଡରୁ ଅରଜା ପଡ଼ିଲା । ରାତିକ ସେଇଠି ମଠର ଭିତରେ ରହିବା ଛଡ଼ା ଆଉ ଉପାୟ ନାହିଁ । ବନ୍ଧୁକରେ ଗୁଳି ଭରତି କରି ସେଇଠି ରହିବାର ଯୋଗାଡ଼ କରୁଛି ଏଇ ସମୟରେ ଦେଖିଲି ଦୂରରୁ ଗୋଟିଏ ମିଞ୍ଜି ମିଞ୍ଜି ଆଲୁଅ ଝଲ୍ସାଦେଇ ଅତି କ୍ଷିପ୍ର ଗତିରେ ମୋ ଆଡ଼କୁ ଆସୁଛି । ନିଶ୍ଚୟ ମଟର ନୁହେଁ କାରଣ ତା ହୋଇଥିଲେ ଦୁଇଟି ଆଲୁଅ ଦିଶନ୍ତା କିମ୍ବା ଗୋଟିଏ ହେଲେ ବି ଏତେ ନିଷ୍ପ୍ରଭ ଦିଶନ୍ତା ନାହିଁ । କେହି ମଣିଷ ଯଦି ଆସୁଥାନ୍ତା ତେବେ ଏତେ କ୍ଷିପ୍ର ଗତିରେ ଆସୁଛି କିପରି ସେ । ଭୟରେ କପାଳରେ ଝାଳ ବାହାରି ପଡ଼ିଲା । ଦେଖୁ ଦେଖୁ ଆଲୁଅ ମୋ ନିକଟରେ ! ଦେଖିଲି ଜଣେ ଲୋକ ଆଲୁଅ ଧରି ଧରି ବୁଲୁଛି । ମନରେ ଟିକିଏ ଆଶ୍ୱାସ ପାଇଲି । ବାବୁ ଏଠି କେଉଁଠି ମୁଣ୍ଡ ଗୁଞ୍ଜିବା ଜାଗା ଟିକିଏ ମିଳିବ ? ଲୋକଟି ଡାହାଣ

Digitized by srujanika@gmail.com

ପଟକୁ ଧାଡ଼ ଦେଖାଇ ଚାଲିଗଲା । ମୁହୁଁ ମୁହୂର୍ତ୍ତ ଆଲୁଅ ଅଦୃଶ୍ୟ ହୋଇଗଲା । କି ଆଶ୍ଚର୍ଯ୍ୟ । ଏ ଭୂତ, ନା ମରୀପ, ନା ଦେବଦୂତ । ଅଜଣା ଭୟ ମାଡ଼ି ବସିଲା ମୋତେ । ଚାହାଣି ଆଡ଼କୁ ଅନେଇ ଦେଖିଲି ଗୋଟାଏ ଅଣଓସାରିଆ ରାସ୍ତା ସିଧା ଚାଲି ଯାଇଛି । କି ଆଶ୍ଚର୍ଯ୍ୟ ! ଟର୍ଚ୍ଚ ଆଲୁଅରେ ଚାରିଆଡ଼ ଏତେ ଦେଖାଜଣା କିନ୍ତୁ ଏତେବେଳ ପର୍ଯ୍ୟନ୍ତ ଏ ରାସ୍ତା ମୋ ନଜରରେ ପଡ଼ି ନାହିଁ !!

ମଟରର ସବୁ କାଚ ବନ୍ଦ କରିଦେଇ, ସଙ୍ଗେ ନେଇ ବନ୍ଧୁକ, କିଛି ବିସ୍କୁଟ, ପାଣି ବୋତଲ, ଟର୍ଚ୍ଚ ଓ ଅନ୍ୟାନ୍ୟ ଜିନିଷ ଧରି ରାସ୍ତାରେ ଚାଲିଲି । କିଛି ବାଟ ଗଲାପରେ ଦେଖିଲି କାଠ ପଟାରେ ଲେଖା ହୋଇଛି 'ଡାକ ବଙ୍ଗଳା' । ମନର ସବୁ ସାହସ ଫେରି ଆସିଲା । ଧୀରେ ଧୀରେ ପାଦ ପକାଇ ଆଗେଇ ଗଲି । ଥୋଡ଼ାବାଟ ଗଲା ପରେ ଦେଖିଲି ଡାକ ବଙ୍ଗଳା । ଚାରିଆଡ଼ ନିର୍ଜନ, ଚୌକିଦାରର ଚିହ୍ନ ବର୍ଣ୍ଣ ନାହିଁ ।

ଚୌକିଦାର, ହୋ ଚୌକିଦାର, ଜୋରରେ ପାଟି କରି ଡ଼ାକିଲି, କାହାରି ସ୍ୱର ଶବ୍ଦ ନାହିଁ ।

ସବୁ ରାଗ ଯାଇ ପଡ଼ିଲା ଚୌକିଦାର ଉପରେ । ମନେ ମନେ ଚୌକିଦାରର ଚାକିରି ନେବା ସଙ୍କଳ୍ପ କରି ପିଣ୍ଡାକୁ ଉଠି ଦେଖିଲି ଗୋଟିଏ କବାଟ ମେଲା ଅଛି । ଦୁଆର ଠେଲି ଭିତରକୁ ଗଲି । ଜିନିଷ ପତ୍ର ରଖିଦେଇ ଶୋଇବା ଯୋଗାଡ଼ କରିବାକୁ ଯାଇ ଦେଖିଲି ଘୋଡ଼ାଇହେବା ପାଇଁ କିଛି ଆଣିନାହିଁ । ଅଗତ୍ୟା ଡର ମାଡୁଥିଲେ ବି କାହାରିକି ଚୁଣି ମହଲ ଆସନ୍ତେ । କିନ୍ତୁ ଘରୁ ବାହାରିବା ମାତ୍ରେ ଶୁଣିଲି କୌଣସି ଜନ୍ତୁର କରୁଣ ଆର୍ତ୍ତନାଦ ଅତି ନିକଟରେ । କବାଟ ବନ୍ଦକରି ଅଗତ୍ୟା ଘରେ ରହିଲି । କିଛିକ୍ଷଣ ଧରି ଚାଲିଲା ଦୁଇ ଜନ୍ତୁ ମଧ୍ୟରେ ଭୀଷଣ ଯୁଦ୍ଧର ଶବ୍ଦ । ତା ପରେ ସବୁ ଶୂନ୍‌

Digitized by srujanika@gmail.com

ଶାନ୍ । କଏ ଗୋଟାଏ ଢ଼'ଣ ଢୋଷାର ଘୋଷାର ଯେମିତ ଦୂରକୁ ଗ୍ଲଲଗଲେ ।

ବାଣ୍ଡୁଟ ଟିଣ ଖୋଲି ସେଥିରୁ ଅଧେ ବାଣ୍ଡୁଟ ଖାଇ ପେଟେ ପାଣି ପିଇ ଖଟ ଉପରେ ଗଡ଼ି ପଡ଼ିଲି । ଝରକା ପାଖରେ ଶୁଭୁଥାଏ ମଝିରେ ମଝିରେ କାହାର ଧୀର ପଦକ୍ଷେପ ଏବଂ ଅର୍ଦ୍ଧ କାଶ୍ଯାଧ । ଭୟରେ ଶ୍ୱାସ ରୋଧହୋଇ ଆସିଲା, ନିଦ ମାଡ଼ିଲା ନାହିଁ ।

ବାଣ୍ଡୁଟ ଟିଣରେ ଗୁଡ଼ା ହୋଇଥିବା ଖବର କାଗଜଟା ନେଇ ଶୋଇ ଶୋଇ ପଢ଼ିବାକୁ ଚେଷ୍ଟା କଲି ମନରୁ ଭୟ ଦୂର କରିବାକୁ । ଖବର କାଗଜ ଖୋଲିବା ମାତ୍ରକେ ଗୋଟାଏ ଅଦ୍ଭୁତ ଫୋଟୋ ମୋର ଦୃଷ୍ଟି ଆକର୍ଷଣ କଲା । ବିରାଟ ସମୁଦ୍ର ଆଉ ସେ ସମୁଦ୍ର ଭିତରୁ ବାହାରିଛି ଗୋଟାଏ ବିରାଟ ନାଭି ଓ ତା ଉପରେ ଫୁଟିଛି ଗୋଟାଏ ବିରାଟ ପଦ୍ମଫୁଲ । ଠିକ୍ ଯେମିତି ମହାକାଳ ଓ ମହା-ଶୂନ୍ୟରେ ବିଷ୍ଣୁ ଯୋଗ ନିଦ୍ରାଭିଭୂତ, ତାଙ୍କର ନାଭି ଦେଶରୁ ବାହାରିଛି ଗୋଟିଏ ନାଡ ଏବଂ ନାଳ ଉପରେ ଫୁଟିଛି ଗୋଟିଏ ପଦ୍ମ । ସେ ପଦ୍ମ ଉପରେ ଚତୁରାନନ ବସି ଧ୍ୟାନ ମୁଖରେ ଗମ୍ଭୀର ନାଦରେ ଉଚ୍ଚାରଣ କରୁଛନ୍ତି ଓଁ ଓଁ ଓଁ । ତଳେ ଲେଖା ବୃହଦଗତରେ ବିସ୍ଫୋଟ ଲୀଳା କରିବା ସଙ୍ଗେ ସଙ୍ଗେ ବୁଦ୍‌ବୁଦ ଭଳି ଜନ୍ମି ଉଠୁଛି କେତେ ସୂର୍ଯ୍ୟ । କେତେ ଗ୍ରହ, କେତେ ତାରା ! ଖବର କାଗଜର ଛବି ତଳେ ଲେଖା ହୋଇଛି ଦେଖିଲି ଉଦ୍‌ଯାନ ବୋମା ପରୀକ୍ଷା । ମନରେ ଗୋଟାଏ କ୍ଷୁଦ୍ର ବିତୃଷ୍ଣା ଜାତ ହେଲା । କାହିଁକି ଧ୍ୱଂସର ଏ ତାଣ୍ଡବ ଲୀଳା ଭିତରେ ମଣିଷ ଗର୍ବ ଅନୁଭବ କରୁଛି କି ? କିମ୍ବା ଏପରି ହୋଇପାରେ ସୃଷ୍ଟିର ନିୟମ ସହିତ ଏହାର ଘନିଷ୍ଠ ସମ୍ବନ୍ଧ ଅଛି ! ଧୀରେ ଧୀରେ ମିଶେ କାଳ ଅନନ୍ତ କାଳରେ । କାଳର ମହା ସମୁଦ୍ରରେ କେତେ ତରଙ୍ଗ ଉଠେ ପୁଣି ସେଇଥିରେ ଲୀନ ହେଉଛି ! କିଏ ଖୋଜି ପାଇବ କାହାର କାରଣ କଅଣ !

Digitized by srujanika@gmail.com

ଆଖି ସାମନାରେ ଭାସି ଉଠିଲା ମହାଶୂନ୍ୟର ଗୋଟାଏ ବିରାଟ ଚକ । ପିଲା ଦିନରେ ଆମର ଗାଁର ଇଷ୍ଟଦେବ ରାଧାକାନ୍ତଙ୍କ ମନ୍ଦିରରେ ରାସପୂର୍ଣ୍ଣିମା ଦିନ ରାଧାକୃଷ୍ଣଲୀଳାର ଯେମିତି ଚକ ଦେଖିଥିଲି ସେମିତି ଗୋଟିଏ ଚକ । ସେ ଚକର ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ଖୋପ ହୋଇଛି । ଚକଟି ମହା ଶୂନ୍ୟରେ ବୁଲିବାକୁ ଲାଗିଲା । ବୁଲିବୁଲି ଗୋଟିଏ ଖୋପ ମୋ ଆଖି ସାମନାକୁ ଆସିଲା । ସେ ଖୋପରେ ପଦ୍ମାସନରେ ବସିଛନ୍ତି ଗୋଟିଏ ସୌମ୍ୟ ଯୁବକ । ଆଖି ଧ୍ୟାନ ମଗ୍ନ, ଓଠର ଏକ ପ୍ରାନ୍ତରେ ଟିକିଏ ହସ ଲାଗି ରହିଛି । ପିନ୍ଧିଛନ୍ତି ଗୋଟିଏ ହଳଦିଆ ଲୁଗା ଏବଂ ଦେହରେ ସେଇ ରଙ୍ଗର ଗୋଟିଏ ଚଦର । ମୁଣ୍ଡର କୁଞ୍ଚୁକୁଞ୍ଚିଆ ବାଳଗୁଡ଼ିକ ଟେକା ହୋଇ ଠିକ୍ ତାଳୁ ଉପରେ ଜୁଡ଼ା ବନ୍ଧା ହୋଇଛି । ବାଁ ହାତଟି ବାଁ ଆଣ୍ଠୁ ଉପରେ ନ୍ୟସ୍ତ । ଡାହାଣ ହାତର ପାପୁଲିଟି ଉଠାଇ ସେ କଅଣ କହିବାକୁ ଲାଗିଲେ ମୁଁ ବୁଝି ପାରିଲି ନାହିଁ । ବୁଝିବାକୁ ଚେଷ୍ଟା କରୁ କରୁ ଚକଟି ବୁଲିଗଲା । ଏଥର ମୋ ଆଖି ସାମନାକୁ ଯେଉଁ ଖୋପ ରହିଲା ସେଥିରେ ଛିଡ଼ା ହୋଇଛନ୍ତି ଏକ ଗୌରକାନ୍ତ ପୁରୁଷ । ମୁହଁରେ ଦାଢ଼ି ନାହିଁ । ମୁଣ୍ଡର ଲମ୍ବା ଲମ୍ବା ବାଳଗୁଡ଼ିକ କାନ୍ଧ ଉପରେ ପଡ଼ିଛି । ପିନ୍ଧିଛନ୍ତି ରକ୍ତବର୍ଣ୍ଣର ଗୋଟିଏ ଆଲଖାଲ୍ଲା । କାନ୍ଧରେ ଧରିଛନ୍ତି ସେ ଗୋଟିଏ ବଡ଼ କ୍ରସ କାଠ । ଦୃଷ୍ଟି ତାଙ୍କର ଉପରକୁ । ସେ ମଧ୍ୟ ହାତ ଟେକି କଅଣ କହିବାକୁ ଲାଗିଲେ । ଚକ ପୁଣି ଘୂରିଗଲା । ଏଥର ଆଖି ସାମନାରେ ଯେଉଁ ଖୋପ ରହିଲା ସେଥିରେ ଛିଡ଼ା ହୋଇଛନ୍ତି ଆଉ ଏକ ପୁରୁଷ । ଉଜ୍ଜ୍ୱଳ ତାମ୍ରବର୍ଣ୍ଣ ଦେହର କାନ୍ତି । ପିନ୍ଧିଛନ୍ତି ଦୁଗ୍ଧଧବଳ ଏକ ଆଲଖାଲ୍ଲା । ମୁଣ୍ଡର ବାଳଗୁଡ଼ିକ ବାବୁରି କଟା । ତା ଉପରେ ଏକ ଲମ୍ବା ଟୋପି । ମୁହଁରେ ତାଙ୍କର ଏକ ଅପୂର୍ବ ଦୃଢ଼ତା ଫୁଟି ଉଠିଛି । ସେ ମଧ୍ୟ

Digitized by srujanika@gmail.com

କଅଣ କହିବାକୁ ଲଗିଲେ । ତକ ପୁଣି ଘୁରିଗଲା, କେତେ ଯେ ଖୋପ ! ଆଜ କେତେ ଯେ ମଣିଷ ! ତକ ଘୁରୁଚି ତ ଘୁରୁଚି । ଏକ ଅପୂର୍ବ ବଂଶୀ ଧ୍ୱନି ଭାସି ଆସିଲା ଏବଂ ତା ସହିତ ନୂପୁର ନିକ୍ୱଣ, ଝୁମ୍ ଝୁମ୍, ଝୁମ୍ ଝୁମ୍ । ସେ ବଂଶୀ ଧ୍ୱନିରେ ଦୁହିଁଙ୍କର ଆହ୍ୱାନ, ଆଜ ସେ ନୂପୁର ନିକ୍ୱଣରେ ଅଭିସାର ସନ୍ଧାନ ।

ନୂପୁରର ଶବ୍ଦରେ ନିଦ ହଠାତ୍ ଭାଙ୍ଗିଗଲା । ଧଡ଼ପଡ଼ ହୋଇ ବିଛଣାରେ ଉଠି ବସିଲି । କିନ୍ତୁ କି ଆଶ୍ଚର୍ଯ୍ୟ ! ଏତ ସ୍ୱପ୍ନ ନୁହେଁ !! ନୂପୁରର ଶବ୍ଦ ଏପର୍ଯ୍ୟନ୍ତ ଶୁଭୁଛି, ଆଖି ମଳି କାନଡେରି ଶୁଣିଲି । ନା, ଏତ ସ୍ୱପ୍ନର ଶବ୍ଦ ନୁହେଁ । ଝରକା ତଳେ ସ୍ପଷ୍ଟ ସେ ଶବ୍ଦ ଶୁଣିବାକୁ ପାଇଲି । କେତେବେଳେ ଦ୍ରୁତ, କେତେବେଳେ ଧୀର । ତା ସହିତ କାହାର ଦ୍ରୁତ ପଦକ୍ଷେପ ମଧ୍ୟ ଶୁଭିଲା । ଭୟରେ ରୁମ ଟାଙ୍କୁରି ଉଠିଲା । ବନ୍ଧୁକ ଧରି ଖଟ ଉପରେ ବସିଲି ।

ହଠାତ୍ ଧଡ଼କରି ଘରର କବାଟ ଖୋଲିଗଲା । ଚମକିପଡ଼ି ଚାହିଁଲି ସେଆଡ଼େ । ଘରେ ପ୍ରବେଶ କଲା ଏକ କଦାକାର ପୁରୁଷ ମୂର୍ତ୍ତି । ଆଖି ଓ ମୁହଁରେ ତାର ଯୌନ ଲାଳସାର ଭାବ ସୁସ୍ପଷ୍ଟ । ତା' ପଛରେ ପ୍ରବେଶ କଲା ଗୋଟିଏ ସୁନ୍ଦରୀ ଯୁବତୀ । ସେ କଦାକାର ପୁରୁଷଟା ଯୁବତୀକୁ ଠେଲି ତଳେ ପକାଇଦେଲା । କିନ୍ତୁ ଯୁବତୀଟି ତଳେ ପଡ଼ିଯାଇ ନାଗିବଳରେ ବାନ୍ଧିବାକୁ ଲାଗିଲା ।

ଚିତ୍କାର କରି ଉଠିଲି, କିଏ ସେ ?

କଦାକାର ପୁରୁଷଟା ମୋ ଆଡ଼କୁ ଚାହିଁ ବିକଟ ଚିତ୍କାର କରି ହସି ଉଠି କହିଲା, ଚୁପ୍ ରହୋ ଶାଲେ ।

ତା'ପରେ ଚାଲିଲା ଦୁହିଁଙ୍କର ନାଟକୀୟ ଯୌନ କ୍ରୀଡ଼ା ।

ଆରେ ଏଯେ ସୁରମା !! ସୁରମା ? ତୁମେ !

Digitized by srujanika@gmail.com

ପୁରୁଷଟା ମୋ ଆଡ଼େ ଝୁଙ୍କି ମୁରୁକ ମୁରୁକ ହସି ଚାଲିଗଲା । ମୁଣ୍ଡଟା ଗରମ ହୋଇଗଲା । ଆଖିମଳି ଝୁଙ୍କି ଦେଖିଲି କେହି ନାହାନ୍ତି, ଏ କ'ଣ ସ୍ୱପ୍ନ ନା ଭୌତିକ କାଣ୍ଡ ନା ବାସ୍ତବ ଘଟଣା !!

ହଠାତ୍ ପୁଣି ଥରେ କବାଟ ଖୋଲିବାର ଶବ୍ଦରେ ଚମକି ପଡ଼ିଲି । ଏଥର କବାଟଟା ବିକଟ ଶବ୍ଦରେ ଖୋଲିଗଲା । ପ୍ରବେଶ କଲା ସେହିପରି ଗୋଟାଏ କଦାକାର ପୁରୁଷ ତା'ର ବଳିଷ୍ଠ ଠେଲି ପଦାକୁ ବାହାରିଛି ଦୁଇଟା ମୁନିଆ ଦାନ୍ତ । ପୂର୍ବର ପୁରୁଷଟା ସହିତ ଏହାର ଅନେକ ସାମଞ୍ଜସ୍ୟ ଅଛି । କଦାକାର ପୁରୁଷଟା ଆଜି ଗୋଟିଏ ସୁନ୍ଦର ଯୁବକକୁ ଠେଲି ଚଳେ ପକାଇ ଦେଇ ଛାତିରେ ତାକୁ ନିର୍ମମଭାବରେ ପ୍ରହାର କରିବାକୁ ଲାଗିଲା ।

ଆରେ ଏଯେ ଦାମୋଦର !

ଦାମୋଦର ବ୍ୟାପାର କ'ଣ ? କାହିଁକି ଏ କଦାକାର ପୁରୁଷଟା ତୁମକୁ ମାରୁଛି ? ସଭୟେ ପଚାରିଲି ।

କେଜାଣି, ତୁମେ ଜାଣିଥିବ । ଦାମୋଦର କହିଲା ।

ବାଃ । ମୁଁ ଜାଣିବି କେମିତି ? ସୁରମା ତୁମକୁ ଭଲ ପାଇ ବାହା ହେଲା ସେଥିରେ ମୋର କଅଣ କ୍ଷତି ହେଲା । ଭଗବାନ ମୋତେ ସୁରମା ଠାରୁ ବଞ୍ଚାଇଛନ୍ତି । ସୁରମାର ଚରିତ୍ର ବିଷୟରେ ଯଥେଷ୍ଟ ପ୍ରମାଣ ପାଇ ସାରିଛି । ଆଜି ତୁମେ ମୋଠୁ ବେଶୀ ଜାଣନ୍ତି କଲ ସେଥିରେ ମୋର ତ କିଛି କ୍ଷତି ନାହିଁ, ମୁଁ କାହିଁକି ହିଂସା କରିବି ।

କେଜାଣି, କହି ଦାମୋଦର ଶୂନ୍ୟରେ ମିଳେଇ ଗଲା । ସେ କଦାକାର ପୁରୁଷଟା ମଧ୍ୟ କୁଆଡ଼େ ମିଳେଇ ଗଲା । ଅନେଇ ଦେଖିଲି ମୋର ଖଟ ଉପରେ ପଡ଼ିଛି ସେ ଛୁରୀକଟା । ଦୁଆର

Digitized by srujanika@gmail.com

ଆଜିକୁ ବୃଦ୍ଧ ଦେଖିଲି ଦୁଆର ପୂର୍ବ ପରି ବନ୍ଦ । ପ୍ରଚଣ୍ଡ ଶୀତରେ ମଧ୍ୟ ଦେହରୁ ଝାଳ ବାହାରି ମୋର ଜାମା ଭିଜିଗଲା ।

ପୁଣି ଦୁଆର ଖୋଲିବାର ଶବ୍ଦ । ଗୋଟାଏ ପ୍ରକାଣ୍ଡ ମଞ୍ଚରେ ଦୁଆର ସାମନାରେ ଏଥର ଛିଡ଼ା ହେଲା । ସେଥିରୁ ବାହାରିଲେ ଏକ ପ୍ରୌଢ଼ । ପିନ୍ଧିଛନ୍ତି ସିଲକ୍ ପେଣ୍ଟ ଜାମା । ଦେହେ ଆଖିରେ ପ୍ରକାଶ ପାଉଛି ବାଙ୍ଗାଳିଙ୍କ ପରି ଲୋକ । କେନ୍ଦ୍ରରେ ନେମମଳ ମୂର୍ତ୍ତିର କଦାକାର ପୁରୁଷମାନଙ୍କ ସହିତ ସାଦୃଶ୍ୟ ଅଛି । ଯୁବକ ପଛରେ ପ୍ରବେଶ କଲେ ଅନେକ ଲୋକ, ବାହାର ହାତରେ ଥାଳିଭରି ନାନା ସୁଖାଦ୍ୟ । ଖାଦ୍ୟର ସୁଗନ୍ଧରେ ଘରଟି ମହକି ଉଠିଲା । ଆଉ କେତେକ ଟେବୁଲ ଆଣିଲେ କେତେ ପ୍ରକାରର ବିଳାସ ସାମଗ୍ରୀ । ଯୁବକଟି ପ୍ରତ୍ୟେକ ପଦାର୍ଥ ତୃପ୍ତିର ସହିତ ଦେଖି ଦେଖି କହିବାକୁ ଲାଗିଲା, ଆହୁରି ଆଣ, ଆହୁରି ଦିଅ, ଦେଶ ସେବା ଫେବା ବାଜେ କଥା, ବୃଦ୍ଧବସ୍ଥା ଥାଉ ଥାଉ ସବୁ କରିଯିବ । ମୁଁ ବିଚିତ୍ର ଘଟଣା ଗୁଡ଼ିକ ଦେଖିବାକୁ । ପାଖରେ ପଡ଼ିଛି ନ ପଡ଼ିଛି ସବୁ ମିଳେଇ ଗଲା । ଆଶ୍ଚର୍ଯ୍ୟ ହୋଇ ବୃଦ୍ଧ ରହିଲି କବାଟ ଆଡ଼େ । କବାଟ ପୂର୍ବ ପରି ବନ୍ଦ ରହିଛି । ମୁଁ ପାଗଳ ହୋଇ ଯାଇ ନାହିଁତ ! ଏ ଘରଟା କଅଣ ଭୂତଙ୍କ ଆଡ଼୍ଡା !!

ପୁଣି କବାଟ ଖୋଲିବାର ଶବ୍ଦ । ଏଥର ପ୍ରବେଶ କଲେ ଆଉ ଏକ ଯୁବକ । ଉଦ୍ଧତ ଯୁବକ । ଏ ଯୁବକ ମଧ୍ୟ ଦେଖିବାକୁ ପୂର୍ବର ପୁରୁଷମାନଙ୍କ ପରି ଯନ୍ତ୍ରର କଦାକାର ମୂର୍ତ୍ତି । ପ୍ରବେଶ କରିବା ମାତ୍ରକେ ଯୁବକ ତର୍ଜନୀ ହଲାଇ ବାହାକୁ କହିବାକୁ ଲାଗିଲା, ଜାଣ ମୁଁ କିଏ ? ମୁଁ ସର୍ବଜୟୀ । ମୁଁ ମହାନ୍ ଗଣ ନେତା, ମୁଁ ବାହୁ ବଳରେ ପୃଥିବୀ ଛାରଖାର କରିଦେଇ ପାରେ, ଅର୍ଥ ବଳରେ ସମସ୍ତଙ୍କୁ ବଶୀଭୂତ କରିପାରେ, ଜ୍ଞାନ ବଳରେ ମୁଁ ସମସ୍ତଙ୍କର

Digitized by srujanika@gmail.com

ସମ୍ମାନର ପାତ୍ର । ମୋର ଭଦ୍ରତା ବଳରେ ସମସ୍ତଙ୍କର ଶ୍ରଦ୍ଧା ଆକର୍ଷଣ କରିପାରେ । ମୋ ପାଇଁ ଦେଶ ଆଜ ପୃଥିବୀରେ ପରିଚିତ । ଦେଶ ବୋଇଲେ ମୁଁ ।

ମୁଁ ? ସଭୟେ ପଚାରିଲି ।

ହଁ, କାଲି ରାତିରେ ମଠରେ ମୁଣ୍ଡାକୁ ଗୋଟିଏ ବାଟପରେ ଆସିଥିଲି ସେହି ବାଟରେ ଯାଉଥିଲି ।

ଆଶ୍ଚର୍ଯ୍ୟ, କଅଣ କହିବାକୁ ବୁଝାନ୍ତି ଏମାନେ ? ଏମାନେ କଣ ଭୂତ ନା ଜୀବତ । କଏ ଏମାନେ ?

ଗୋଟାଏ ପେଚା ଗଛ ଡାଳରୁ ଧାଇଁକରି ଉଠିଲା, ଭୂମ୍, ଭୂମ୍, ଭୂମ୍ ।

ତାପରେ କଅଣ ହୋଇଚି ଜାଣେନା; ମୂର୍ଚ୍ଛିତ ହୋଇ ବଢ଼ଣା ଉପରେ ପଡ଼ିଗଲି ଏତିକି ମାତ୍ର ଖିଆଲ ଅଛି ।

ଯେତେବେଳେ ଜ୍ଞାନ ଫେରି ପାଇଲି ଦେଖିଲି ଦିନ ବାରଟା । ଚୌକିଦାର ମୁଣ୍ଡ ଉପରେ ଛିଡ଼ା ହୋଇ ଡାକୁଛି । ଆଖି ଖୋଲି ବଲ ବଲ କରି ତାହାଆଡ଼େ ଚାହିଁଲି ।

ଚୌକିଦାର ସନ୍ଦେହରେ କହିଲା, ଆଜ୍ଞା କ୍ଷମା କରିବେ ଦୋଷ । ଏଟା ଭୂତ ଘର । ଏଠି ରାତିରେ କେହି ରୁହନ୍ତି ନାହିଁ ।

ବଢ଼ଣାରୁ ଉଠି ଚୌକିଦାରକୁ ପାଞ୍ଚ ଟଙ୍କା ବକ୍‌ସିସ୍ ଦେଲି । ଚୌକିଦାର ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ମୋ ଆଡ଼େ ।

ତାପରେ ମଟରକୁ ଫେରି ଆସି ଷ୍ଟାର୍ଟ ଦେବା ମାତ୍ରେ ମଟର ଚାଲିଲା । ନୀରବରେ ଚାଲିଲି କର୍ମରେ ଯୋଗ ଦେବା ପାଇଁ ।

—:(✱):—

Digitized by srujanika@gmail.com

# ଇଚ୍ଛା-ପୂରଣ

ଭଗବାନ୍‌ଙ୍କ ଦପ୍ତରରେ "ଇଚ୍ଛାପୂରଣ" ବିଭାଗ । ପ୍ରଥମେ ପଡ଼ିବ ଗ୍ରହ ଉପଗ୍ରହ ସୃଷ୍ଟି-ବିଭାଗ । ତା'ପରେ ଜୀବସୃଷ୍ଟି-ବିଭାଗ । ହଜାର ହଜାର ଶିଳ୍ପୀ ବସି ନାନା ଡିଜାଇନର ଜୀବମାନଙ୍କର ଚିତ୍ର ଅଙ୍କନ କରୁଛନ୍ତି । ସେଗୁଡ଼ିକ ସେ ବିଭାଗର କର୍ତ୍ତା ଅନୁମୋଦନ କରିବା ପରେ ଭଗବାନଙ୍କ ପାଖରେ ପେଶ୍ କରିଦିଆଯାଉଛି ତାଙ୍କର ଶେଷ ଅନୁମୋଦନ ପାଇଁ । ଜୀବ ସୃଷ୍ଟି ବିଭାଗ ପରେ ଜୀବ-ଲୋପ-ବୃଦ୍ଧି-ମୃତ୍ୟୁ-ନିୟନ୍ତ୍ରଣ-ବିଭାଗ । ଏଠି ମଧ୍ୟ ହଜାର ହଜାର ଦେବତାମାନେ ବସି କେଉଁ କେଉଁ ଶ୍ରେଣୀର ଜୀବ କିପରି ଭାବରେ ଲୋପ କରାଯିବ ବା ବୃଦ୍ଧି କରାଯିବ ତାହା ବିଚାର କରି ଭଗବାନଙ୍କୁ ଜଣାଉଛନ୍ତି । ଶେଷୋକ୍ତ ବିଭାଗ ପରେ ପଡ଼ିବ ଇଚ୍ଛାପୂରଣ ବିଭାଗ । ଏମାନଙ୍କ ଛଡ଼ା ଆହୁରି ହଜାର ହଜାର ବିଭାଗର ଉପବିଭାଗ ଅଛି । ଇଚ୍ଛା-ପୂରଣ ବିଭାଗର ସ୍ଥାନଟି କେଉଁଠି ଠିକ୍ ଜଣାଇଦେବା ପାଇଁ ମାତ୍ର କେତୋଟି ବିଭାଗର ନାମ କହିଲି । ଆପଣ ଇଚ୍ଛା କଲେ ମୋର କଥାର ସତ୍ୟତା ପରୀକ୍ଷା କରିବା ପାଇଁ ଯାଇ ପାରନ୍ତି । କିନ୍ତୁ ସେ ଇଚ୍ଛା ଆପଣଙ୍କର ଆହୁରି ଅନେକ ବର୍ଷ ପରେ ହେଉ ଏହାହିଁ ମୋର କାମନା ।

Digitized by srujanika@gmail.com

ଦପ୍ତରର ଅନ୍ୟାନ୍ୟ ବିଭାଗଗୁଡ଼ିକ ତୁଳନାରେ ଇଚ୍ଛାପୂରଣ ବିଭାଗଟିର ପ୍ରାଧାନ୍ୟ କମ୍ । ତେବେ ଏ ବିଭାଗର କର୍ମଚାରୀମାନେ ସର୍ବଦା କାର୍ଯ୍ୟବ୍ୟସ୍ତ ଏବଂ ବିଭାଗଟି ମଧ୍ୟ ଦିନ ରାତି ଖୋଲା ଥାଏ । ଏ ବିଭାଗର ଗୋଟିଏ ଉପବିଭାଗରେ କେବଳ ମନୁଷ୍ୟମାନଙ୍କର ଇଚ୍ଛାପୂରଣ ବିଷୟ ବିଚାର କରାଯାଏ । ଏ ଉପବିଭାଗର କାର୍ଯ୍ୟବିଧି ନିୟମ ଅନୁସାରେ ପ୍ରତ୍ୟେକ ମନୁଷ୍ୟର ପ୍ରତ୍ୟେକ ଦିନର ଇଚ୍ଛାଗୁଡ଼ିକ ଉକ୍ତ ଉପବିଭାଗର କର୍ମକର୍ତ୍ତା ନିଜର ମତାନୁଯାୟୀ ଆବଶ୍ୟକତା-ନୁସାରେ ସଜାଇ ଭଗବାନ୍‌ଙ୍କଠାରେ ପ୍ରତ୍ୟେକ ମୂହୂର୍ତ୍ତରେ ପେଶ୍ କରନ୍ତି । ଭଗବାନ୍ ଉକ୍ତ ପର୍ଯ୍ୟାୟକୁ ଅନୁମୋଦନ କଲେ କେଉଁ ଇଚ୍ଛା କେବେ ଏବଂ କିପରି ଭାବରେ ପୂରଣ କରିବାକୁ ହେବ ଆଦେଶ ଦିଅନ୍ତି । ଉପବିଭାଗୀୟ କର୍ମକର୍ତ୍ତାଙ୍କ ଇଚ୍ଛାଗୁଡ଼ିକର ଆବଶ୍ୟକତାନୁସାରେ ପର୍ଯ୍ୟାୟକୁ ଭଗବାନ୍ ଯେ ସବୁବେଳେ ଅନୁମୋଦନ କରନ୍ତି ତା ନୁହେଁ । ବେଳେ ବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶୀ ଆବଶ୍ୟକ ବୋଲି ମୁଖ୍ୟକର୍ତ୍ତା ମତ ଦେଲେହେଁ ଭଗବାନ୍ ତାହା ଅନୁମୋଦନ ନ କରି ଅନ୍ୟ ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶୀ ଆବଶ୍ୟକ ବୋଲି କହି ତାହା ପ୍ରଥମେ ପୂରଣ କରାଯାଉ ବୋଲି ଆଦେଶ ଦିଅନ୍ତି । ପୁଣି ବେଳେ ବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଭଗବାନ୍ ଆଦେଶ ଦିଅନ୍ତି ଯେ ଏହାର ପୂରଣ ମନୁଷ୍ୟର ସ୍ୱତନ୍ତ୍ର କ୍ଷମତାଧୀନ; ଅତଏବ ସେ ନିଜେ ତାହାର ପୂରଣ ପାଇଁ ଚେଷ୍ଟା କରିବା ଉଚିତ । ଅତଏବ ଭଗବାନଙ୍କ ଦପ୍ତରରୁ ତାହା ପାଇଁ କୌଣସି ସାହାଯ୍ୟ ମିଳିବା ଉଚିତ ନୁହେଁ । ଭଗବାନ୍‌ଙ୍କ ବିଚାରର ମୂଳମନ୍ତ୍ରଟି ବୁଝି ଇଚ୍ଛାଗୁଡ଼ିକୁ କ୍ରମାନୁସାରେ ସଜାଇବାରେ ଦକ୍ଷତା ଆସିବାକୁ ବିଭାଗୀୟ କର୍ମକର୍ତ୍ତାଙ୍କୁ ଅନେକ କାଳ ଲାଗେ । ତେଣୁ କୌଣସି

Digitized by srujanika@gmail.com

କର୍ମକର୍ତ୍ତା ନୂତନ ନିଯୁକ୍ତ ହେଲେ ସେ କାର୍ଯ୍ୟରେ ବିଭ୍ରାଟ ଘଟିବା ସ୍ୱାଭାବିକ ।

ମନୁଷ୍ୟର ଇଚ୍ଛାପୂରଣ ଉପବିଭାଗଟିର ପୂର୍ବତନ ମୁଖ୍ୟକର୍ତ୍ତା ଅବସର ନେବାପରେ ବର୍ତ୍ତମାନ ଯାନ୍ତ୍ରିକ ସେ ପଦରେ ନୂତନ ନିଯୁକ୍ତ ହୋଇଛନ୍ତି । ଅନ୍ତର୍ଯ୍ୟାମୀ ଦକ୍ଷତା ମଧ୍ୟ ତାଙ୍କୁ ଦିଆହୋଇ ଯାଇଛି ।

ଭଗବାନ୍ ତାଙ୍କ ନିଜ ଅଫିସ ଘରେ ଅନନ୍ତ-ଚୌକିରେ ବସି ଜୀବ ସୃଷ୍ଟି-ବିଭାଗର ଡିଜାଇନଗୁଡିକ ତନଖି କରୁଛନ୍ତି । ମନୁଷ୍ୟ-ମାନେ ମେଲେରିଆ ମଶା ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବାପରେ ଉକ୍ତ ମଶାମାନଙ୍କର ଡିଜାଇନ ସାମାନ୍ୟ ବଦଳାଇ ଯେଉଁ ନୂଆ ଡିଜାଇନ ତିଆରି ହୋଇଛି ତାହା ବର୍ତ୍ତମାନ କାର୍ଯ୍ୟକାରୀ କରାଯିବ କି ନା ସେ ବିଷୟରେ ଭଗବାନ୍ ଚିନ୍ତା କରୁଛନ୍ତି । ଜୀବ ଲୋପ ଓ ବୃଦ୍ଧି-ବିଭାଗର ଜୀବ ସୃଷ୍ଟି ବିଭାଗୀୟ କର୍ତ୍ତାଙ୍କ ମତ ଯେ ମଶାର ବିଲୋପ ସାଧନ କରିବା ମାନେ ମନୁଷ୍ୟଦ୍ୱାରା ଭଗବାନଙ୍କ ପରାଜୟ, ତେଣୁ ମଶାର ବିଲୋପ ସାଧନ କଦାପି ଉଚିତ ନୁହେଁ । ଭଗବାନ୍ ଉକ୍ତ ମତ ପଢି ସ୍ମିତହାସ୍ୟ କଲେ । ସେ ହାସ୍ୟଦ୍ୱାରା କହିଦେଲେ, ପରାଜୟହିଁ ମୋର ଜୟ । ମୁଖ୍ୟକର୍ତ୍ତା ମତ ଦେଇଛନ୍ତି ଯେ ଉକ୍ତ ଶ୍ରେଣୀର ମଶକ ଜୀବ ଲୋପ କରି ମନୁଷ୍ୟର ରକ୍ତଶୋଷଣକାରୀ ଅନ୍ୟାନ୍ୟ ଜୀବର ନୂତନ ସୃଷ୍ଟି ହେଉ ଅଥବା ସେପରି ଯେତେ ଜୀବ ଅଛନ୍ତି ସେଗୁଡ଼ିକର ବୃଦ୍ଧି କରାଯାଉ ଏବଂ ସେମାନଙ୍କୁ ସଞ୍ଜୀବନୀରସ ଅଧିକା ମାତ୍ରାରେ ଦିଆଯାଉ । ଏହି ସମୟରେ ଦିଲ୍ଲୀ ପାର୍ଲିଆମେଣ୍ଟର ଡ଼ି. ଡ଼ି. ଟି. ଓ ଗ୍ରୁବପୋକ ବିଷୟରେ ତୁମୁଳ ବାଦାନୁବାଦ ଭଗବାନଙ୍କ କର୍ଣ୍ଣଗୋଚର ହେଲା । ଭଗବାନ୍ ସ୍ମିତହାସ୍ୟ କରି ଫାଇଲ୍‌ଗୁଡ଼ିକ ରଖିଦେଇ ଆଦେଶ ଦେଲେ ଯେ

Digitized by srujanika@gmail.com

ମନୁଷ୍ୟମାନଙ୍କର ସେ ବିଷୟରେ ଶେଷ ନିଷ୍ପତ୍ତି ପର୍ଯ୍ୟନ୍ତ ଅପେକ୍ଷା କରିଯାଉ ଏବଂ ମୋର ସୃଷ୍ଟିତତ୍ତ୍ୱ ଜାଣିବାରେ ମନୁଷ୍ୟର ବୁଦ୍ଧି ଆଜି ପର୍ଯ୍ୟନ୍ତ କେତେ ଅଗ୍ରସର ହୋଇଛି ସେ ବିଷୟରେ ଗୋଟିଏ ସବିଶେଷ ବିବରଣୀ ଦିଆଯାଉ । ଜୀବ ସୃଷ୍ଟି ଓ ଜୀବ ଲୋପ ଏବଂ ବୃଦ୍ଧି ବିଭାଗର କର୍ତ୍ତାମାନେ ସେମାନଙ୍କ ଫାଇଲ୍ ଆଦି ନେଇ ଚାଲିଯିବା ପରେ ଐକ୍ତିକ ତାଙ୍କର ଫାଇଲ୍ ଆଦି ଦାଖଲ କଲେ । ପ୍ରଥମେ ପଡିଲା ଦୁର୍ଗାଚରଣ ବାବୁଙ୍କ ସେଦନର ଇଚ୍ଛାଗୁଡ଼ିକ । ଐକ୍ତିକ ଅନ୍ତର୍ଯ୍ୟାମୀ ପ୍ରଥମେ ଦୁର୍ଗାଚରଣ ବାବୁଙ୍କ ସେଦନର ଇଚ୍ଛା-ଗୁଡ଼ିକର ଯେଉଁ ସବିଶେଷ ବିବରଣୀ ଦେଇଛନ୍ତି ତାହା ନିମ୍ନରୂପ ।

ଦୁର୍ଗାଚରଣ ଜଣେ ମନୁଷ୍ୟ ଏବଂ ମନୁଷ୍ୟମାନଙ୍କ ଶାସନ ଦପ୍ତରରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେ ଜଣେ ଲେଖକ ମଧ୍ୟ । ମେଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ଆରୋଗ୍ୟ ଲାଭ କରି ଥିଲେହେଁ ସେ ଦୁର୍ବଳ ହୋଇ ପଡିଥିବାରୁ ବର୍ତ୍ତମାନ ଦୁଇଅନୁଲ୍ଲତା (ମନୁଷ୍ୟମାନଙ୍କ ଗଣନାରେ ଦୁଇମାସ) ଛୁଟି ନେଇ ଘରେ ବିଶ୍ରାମ କରୁଛନ୍ତି । କୌଣସି କାର୍ଯ୍ୟ ନ ଥିବାରୁ ତାଙ୍କର ଇଚ୍ଛାଗୁଡିକ ଅନେକଗୁଣ ବୃଦ୍ଧି ପାଇଛି । ସେଥିଭିତରୁ କେତେଗୁଡ଼ିଏ ଇଚ୍ଛା ଅତି ହାସ୍ୟାସ୍ପଦ, ତେଣୁ ସେଗୁଡ଼ିକର ଉଲ୍ଲେଖ କରିନାହିଁ, ଯେପରି ତାଙ୍କର ଗୋଟିଏ ଇଚ୍ଛା ଐଶ୍ୱରିକ ଶକ୍ତି ପାଇ ସେ ଶୂନ୍ୟରେ ଭ୍ରମଣ କରୁଛନ୍ତି । (ଭଗବାନ୍ ଏଠାରେ କହିଲେ, ଐକ୍ତିକ, ତୁମେ ସେ ଇଚ୍ଛାଗୁଡିକର ଉଲ୍ଲେଖ ନ କରି ଉଚିତ କରିଛ । କିନ୍ତୁ ତୁମେ ଉଲ୍ଲେଖ ନ କରିବାର କାରଣ ହାସ୍ୟାସ୍ପଦତା ଦେଖାଇବା ଉଚିତ ହୋଇ ନାହିଁ, କାରଣ ଅନେକ ସମୟରେ ଉକ୍ତ ପ୍ରକାର ହାସ୍ୟାସ୍ପଦ କାରଣଗୁଡିକହିଁ ମନୁଷ୍ୟ ବୁଦ୍ଧିର ବିକାଶ ଆଣି ଦେଇଛି । କିନ୍ତୁ ସେ ପ୍ରକାର ଇଚ୍ଛାଗୁଡିକର ପୂରଣ କରିବା ମନୁଷ୍ୟର ସ୍ୱତନ୍ତ୍ର କ୍ଷମତାଭୁକ୍ତ

Digitized by srujanika@gmail.com

ତାଲିକାରେ ମୁଁ ରଖିଛି । ତେଣୁ ସେଥିପାଇଁ ଈଶ୍ୱରଙ୍କ ସାହାଯ୍ୟ ଦରକାର ନାହିଁ ।)

...ଅନ୍ୟ ଇଚ୍ଛାଗୁଡ଼ିକ ମୁଁ ଚନ୍ଦ୍ରର ସମୟ ଅନୁସାରେ ସଜାଇ କ୍ରମରେ ଦେଲି...

...ସକାଳୁ ଉଠିବାକୁ ଦୁର୍ଗାଚରଣଙ୍କ ଡେରି ହେଲା । ଅନେକ ରାତି ପର୍ଯ୍ୟନ୍ତ ନିଜକୁ କେନ୍ଦ୍ର କରି ଅନେକ କଳ୍ପନା ସେ କରିଛନ୍ତି । କିପରି ସେ ଖୁବ୍ ବଡ଼ ଲେଖକ ହୋଇଛନ୍ତି, ସାରା ପୃଥିବୀ ତାଙ୍କୁ ସମ୍ମାନିତ କରିଛି, ସବୁ ପୁରସ୍କାର ସେ ପାଇଛନ୍ତି, ପୁଣି, କିପରି ସେ ପୃଥିବୀରେ ବଡ଼ ବକ୍ତା ହୋଇଛନ୍ତି, ତାଙ୍କର ବକ୍ତୃତାରେ ସାରା ପୃଥିବୀ ଚମତ୍କୃତ ଇତ୍ୟାଦି ଭାବି ଭାବି ସେ କ୍ଳାନ୍ତ ହୋଇ ଶୋଇପଡ଼ିଥିଲେ ଅନେକ ରାତିରେ ।

ସକାଳୁ ଉଠି ଦାନ୍ତ ଘଷୁ ଘଷୁ ପୁଣି ସେଇ ଭାବନାଗୁଡ଼ିକ ସେ ଭାବି ବସିଲେ । ଭାବୁ ଭାବୁ ନିଜର କଳ୍ପିତ କ୍ଷମତାରେ ସେ ମୁଗ୍ଧ ହୋଇଗଲେ । ଦାନ୍ତ ଘଷି ସାରି ପାଇଖାନାରେ ମଧ୍ୟ ସେହି ଭାବନା, ଗାଧୋଇ ସାରି ସେ ଜଳଖିଆ ଖାଇ ବସିଲେ । ଆଜି ତାଙ୍କର ବଡ଼ା ଖାଇବାକୁ ଇଚ୍ଛା ହେଲା । ସାନ-ପୁଅକୁ ପଠାଇଲେ ବଡ଼ା ଆଣିବାକୁ । ପନ୍ଦର ମିନିଟରେ ମୋଟ ଚାରୋଟି ଗରମ ବଡ଼ା ଆଣିଦେଇ ପୁଅ ଆଶାରେ ଛିଡ଼ା ହୋଇ ରହିଲା । ଦୁର୍ଗାଚରଣ ବାବୁ ରାଗିଯାଇ କହିଲେ, ଯା ପଢ଼ିବୁ ଯା, ଖାଲି ସବୁବେଳେ ଖାଇବା ନାମ ଯାଃ, ପୁଅ ଡରସଙ୍କୁଚରେ ଚାଲିଗଲା ।

ବଡ଼ାଗୁଡ଼ିକ ଖାଇସାରି ତେଲିଆ ହାତ ପଦ୍ମପତ୍ରରେ ପୋଛି ହେଲାବେଳକୁ ତାଙ୍କର ପ୍ରଥମ ଅବସ୍ଥାର ଗୋଟିଏ ସ୍ମୃତି ହଠାତ୍ ମନେ ପଡ଼ିଲା । ସେତେବେଳେ ସେ ଥିଲେ ଦରିଦ୍ର । ତାଙ୍କର

Digitized by srujanika@gmail.com

ସହପାଠୀ ବନ୍ଧୁ ଯାନା ଥାଏ ନକଟରେ ଗୋଟିଏ ବେନ୍ତପର ଘରେ । ସକାଳୁ ଉଠି ଗାଧୋଇ ସାର ଦୁର୍ଗାଚରଣ ଚାଲି ଯାଆନ୍ତ ଯାନା ଘରକୁ । ଦୁଇଟି ବଡ଼ା ବୁଲ ବକାଳ ଦେଇଯାଏ ଧାରସ୍ଥାନରେ । ସେଥିରୁ ଗୋଟିଏ ଖାଆନ୍ତ ଯାନା ଓ ଆଉ ଗୋଟିଏ ଦୁର୍ଗାଚରଣ । ଖାଇସାର ଦୁଇଜଣଯାକ ପଦ୍ମପତ୍ରରେ ହାତ ପୋଛୁ ପାଣି ଗିଲାସେ ଗିଲାସେ ପିଇ ଯେତେବେଳେ ବସନ୍ତ ସେତେବେଳେ ସେମାନଙ୍କର ଭାବରୁ ମନେହୁଏ ଯେପରି ନାନା ଉପାଦେୟ ଆହାର ସେମାନେ କରିଛନ୍ତି ।

ଆଜ ବଡ଼ା ଖାଇସାରି ଦୁର୍ଗାଚରଣଙ୍କ ହଠାତ୍ ସେଇ ସ୍ମୃତିଟି ମୁହୂର୍ତ୍ତକ ପାଇଁ ମନରେ ଜାଗିଲା । ବନ୍ଧୁ ସହିତ ପ୍ରାୟ ପାଞ୍ଚ ବର୍ଷ ହେବ ଦେଖା ହୋଇ ନାହିଁ । ମୁହୂର୍ତ୍ତକ ପାଇଁ ତାଙ୍କର ଗୋଟିଏ ଇଚ୍ଛା ଜାଗିଲା, ଯାନା ସାଙ୍ଗରେ ଦେଖା ହୁଅନ୍ତା କି !

ପର ମୁହୂର୍ତ୍ତରେ ଦୁର୍ଗାଚରଣ ଖଟ ଉପରେ ଶୋଇପଡ଼ି ମନେ ମନେ କହିଲେ, ମୋର ସେଇ ଉଜ୍ଜ୍ୱଳମୟ ଭବିଷ୍ୟତ କଥା ଭାବି ଭାବି ଯାଉଛି··· (ଏହା ପରେ ଏତେ ବିଭିନ୍ନ ପ୍ରକାରର ଇଚ୍ଛା ତାଙ୍କ ମନ ଭିତରେ ଜାଗିଲା ଯେ ସେଗୁଡ଼ିକ ସଜାଇ ଲିପିବଦ୍ଧ କରିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିଲା । ଯାହା ହେଉ ଯଥାସମ୍ଭବ ମୁଁ ସେଗୁଡ଼ିକ କ୍ରମାନ୍ୱୟରେ ଦେଉଛି) ଖଟ ଉପରେ ଶୋଇପଡି ପ୍ରଥମେ ସେ ଗାନ୍ଧିଙ୍କ ଜୀବନ-ଚରିତ କିଛିକ୍ଷଣ ପଢିଲେ । ତା'ପରେ ସେ ବହି ଥୋଇଦେଇ ଭାବିବାକୁ ଲାଗିଲେ ଯେ, ସେ ଜଣେ ବଡ଼ ନେତା ହୋଇଛନ୍ତି । କେବଳ ରାଜନୈତିକ ନେତା ନୁହଁ, ଆଧ୍ୟାତ୍ମିକ ନେତା ବି । ତାଙ୍କର ଆଧ୍ୟାତ୍ମିକତା ବଳରେ, ଭଗବାନଙ୍କୁ ସେ ପ୍ରତ୍ୟକ୍ଷ ଭାବରେ ପାଇଛନ୍ତି ଏବଂ ଭଗବାନଙ୍କୁ ପ୍ରାର୍ଥନା କରି ସେ ତାଙ୍କ ଦ୍ୱାରା ସବୁ କାର୍ଯ୍ୟ କରାଉଛନ୍ତି । (ଭଗବାନ୍ ସ୍ୱିଁ ତାଙ୍କ ଦ୍ୱାର

Digitized by srujanika@gmail.com

କଲେ) ପ୍ରାର୍ଥନା ବଳରେ ସେ ଚୀନା ସୈନ୍ୟଙ୍କୁ ଭାରତ ସୀମାରୁ ହଟାଇ ଦେଇଛନ୍ତି ।

...ତା'ପରେ ସେ ମନେ ମନେ କହିଲେ, ନା ପୁଣି ମୂଳରୁ ଭାବିବ । ଭାବିବାକୁ ଲାଗିଲେ—ମୁଁ ଜଣେ କର୍ମଚାରୀ ହେଲେ ମଧ୍ୟ ବଡ଼ ଲେଖକ ହୋଇଛି । କେବଳ ଓଡ଼ିଆ ଭାଷାରେ ନୁହ, ଭାରତରେ ସବୁ ଭାଷାରେ ମୁଁ ବଡ଼ ବଡ଼ ଲେଖା ପ୍ରକାଶ କରୁଛି ଏବଂ ସମସ୍ତେ ପଢ଼ି ମୁଗ୍ଧ ହେଉଛନ୍ତି । (ଓଡ଼ିଆ ଛଡ଼ା ସେ ଆଉ କୌଣସି ଭାଷାର ଆଦ୍ୟ ଅକ୍ଷର ସୁଦ୍ଧା ଜାଣି ନାହାନ୍ତି) ମୋର ଲେଖାଗୁଡ଼ିକ ଭାରତରେ ଉଚ୍ଚ ପୁରସ୍କାର ଲାଭ କରିଛି ଏବଂ ପୃଥିବୀରେ ମଧ୍ୟ ଶ୍ରେଷ୍ଠ ପୁରସ୍କାର ପାଇଛି । ଯେଉଁଠାକୁ ଯାଉଛି, ସେଠି ଲୋକେ ମୋତେ ଦେଖି ଆଶ୍ଚର୍ଯ୍ୟ ଓ ମୁଗ୍ଧ ହେଉଛନ୍ତି । ଏବେ ମୁଁ ରେଳ ଗାଡ଼ିରେ ଯାଉଛି, ମୋତେ କେହି ଚିହ୍ନି ପାରୁ ନାହାନ୍ତି । କିନ୍ତୁ କେତେକ ଯୁବକ ଯୁବତୀ ମୋର ଲେଖା ବିଷୟରେ ଆଲୋଚନା କରୁଛନ୍ତି ଏବଂ ଉଚ୍ଚ ପ୍ରଶଂସା କରୁଛନ୍ତି । ସେମାନେ ଜାଣି ନାହାନ୍ତି ଯେ ମୁଁ ଅଛି । ତା'ପରେ ମୁଁ ଆତ୍ମପ୍ରକାଶ କଲି । ନା, ସେଟା କରିବା ଅହମିକା ହେବ । (କିପରି ସେ ବିନୟ ରକ୍ଷା କରିବେ ଅଥଚ ନିଜକୁ ଜାହିର କରିବେ ତାହାର ଉପାୟ ନ ପାଇ ସେ ଚିନ୍ତା ତ୍ୟାଗ କରି ସେ ଅନ୍ୟ ଚିନ୍ତା କରିବାକୁ ଲାଗିଲେ) ଏହି ସମୟରେ ତାଙ୍କର ସ୍ତ୍ରୀ ତାଙ୍କର ସାନ ପୁଅକୁ ଆଣି ତାଙ୍କ କୋଳରେ ଥୋଇ ଦେଇ କହିଲେ, ଚୂପ୍ କରି ଖାଲି ଶୋଇଛ ଅଥଚ ପୁଅଟା ଏଣୁ ତେଣୁ ଖାଇ ଯାଉଛି, ମୋତେ ରାନ୍ଧିବାକୁ ଦେଉ ନାହିଁ, ଟିକିଏ ବସି ପାରୁନା, ମୋତେ ଜାଳିଯାଅ ସବୁ । ଦୁର୍ଗାଚରଣ ରାଗିଯାଇ କହିଲେ, ତୁମର ରାନ୍ଧିବାଟା ମୋର ଚିନ୍ତା କରିବାଠୁ ବେଶୀ ମୂଲ୍ୟ-ବାନ ହେଲା ? ମୁଁ ବର୍ତ୍ତମାନ ଗୋଟାଏ ଲେଖା ବିଷୟରେ ଚିନ୍ତା

Digitized by srujanika@gmail.com

କରୁଛୁ ଆଉ ତୁମେ ସବୁ ଗୋଳମାଳ କରନେଇଲ ! ଏପରି ସ୍ତ୍ରୀ ପାଇ କେବେ କେହି···ଧ୍ୟାପ୍··· (ସ୍ତ୍ରୀ ପୁଅକୁ ଧରି) ଘୁଙ୍କାଗଲେ ଡମଡମ ହୋଇ ସ୍ତ୍ରୀ କହିଲେ ଯେ "ଯେତେବେଳେ ଓଦାଣ ଚିନ୍ତା କରନ୍ତା ବାହାନାରେ ଶୋଇ ରହୁଛନ୍ତି, ହୁଃ")

ଦୁର୍ଗାଚରଣ ପୁଣି ଭାବିବାକୁ ଲାଗିଲେ···ମୁଁ ଗୁଜରାଟରେ ଦକ୍ଷତା ଦେଖାଇ ବହୁତ ଉନ୍ନତି କରିଛି ଏବଂ ଅନେକ ଦରମା ପାଉଛି । ପ୍ରକାଣ୍ଡ କୋଠା କରିଛି । (ଏଇଠି ସେ ଭାବିବାକୁ ଲାଗିଲେ ଏକେଇଠି ଜମି କଣି କୋଠା କରିବେ । କଟକରେ ତ ବର୍ତ୍ତମାନ ସହରର ଭିତରେ ଆଉ ଜାଗା ନାହିଁ । ତାଙ୍କର ପୁରୁଣା ପୈତୃକ ବାସ ଭୂମିଟି ଅତି ସାନ । ସେଠି ତାଙ୍କ ଇଚ୍ଛାନୁସାରେ ବଡ଼ କୋଠା କରି ହେବ ନାହିଁ । ଏ ସ୍ଥାନ ଛାଡ଼ି ଆଉ ଦୂରକୁ ମଧ୍ୟ ଯିବାକୁ ଇଚ୍ଛା ହେଉ ନାହିଁ । କାରଣ ସେମାନଙ୍କ ପାଖ ତାଙ୍କର କୋଠା ଆଉ, ବନ୍ଧୁମାନଙ୍କୁ ପ୍ରଭୂତ ଐଶ୍ୱର୍ଯ୍ୟ ଦେଖାଇ ତାଙ୍କର ଈର୍ଷା ଉଦ୍ରେକ କରାଇ ପାରିବେ ନାହିଁ ତା ହେଲେ···। ଏହା ପରେ କୋଠା ନକ୍ସାର ହିସାବ କରୁ କରୁ ସେ ଆଉ ଥଳକୂଳ ନ ପାଇ ତାହା ତ୍ୟାଗ କରି ପୁଣି ମନେ ମନେ କହିଲେ, ନାକ ମୂଳରୁ ପୁଣି ଭାବିବାକୁ ହେବ)

······ତା ପରେ ମୁଁ ମଧ୍ୟ ଜଣେ ବଡ଼ ବୈଜ୍ଞାନିକ ହୋଇଛି । ମୋର ଗବେଷଣାରେ ମୁଁ ଆଇନ୍‌ଷ୍ଟାଇନଙ୍କଠାରୁ ବଡ଼ ହୋଇଛି । ଅଙ୍କଦ୍ୱାରା ଦେଖାଇ ଦେଇଛି ଭଗବାନଙ୍କ ଅସ୍ତିତ୍ୱ ଅଛି । (ଭଗବାନ୍ ସ୍ମିତହାସ କଲେ) । (ଏଠାରେ କହି ରଖେ ଯେ ଅଙ୍କଶାସ୍ତ୍ରଠାରୁ ବହୁତ ଦୂରରେ ଦୁର୍ଗାଚରଣ । ଅଙ୍କ ଦେଖିଲେ ତାଙ୍କୁ ଜ୍ୱର ଆସେ) ।

······ମୁଁ ମଧ୍ୟ ସନ୍ତରଣ ଦ୍ୱାରା ପ୍ରଶାନ୍ତ ମହାସାଗର ଅତିକ୍ରମ କରିବି ।

Digitized by srujanika@gmail.com

······ନାଃ, ନାଃ, ଏସବୁ ଅସମ୍ଭବ କଥା ଭାବି ଲାଭ ନାହିଁ । କେବଳ ମୁଁ ଜଣେ ପୃଥିବୀପ୍ରସିଦ୍ଧ ଲେଖକ ଓ ଜଣେ ବଡ ଆଧ୍ୟାତ୍ମିକ ଓ ରାଜନୈତିକ ନେତା ହୋଇଛି । ଏକାଧାରରେ ସବୁ ହୋଇଛି··· କିନ୍ତୁ ଏସବୁ ହେବାକୁ ହେଲେ ଭଗବାନଙ୍କ ସାହାଯ୍ୟ ଦରକାର । ଭଗବାନଙ୍କର ଅସ୍ତିତ୍ୱ ହୃଦୟ ମଧ୍ୟରେ ଅନୁଭବ ନ କଲେ ତାଙ୍କୁ ପାଇପାରିବ ନାହିଁ । ଅତଏବ ପ୍ରଥମେ ମୋତେ ଭଗବାନଙ୍କ ପ୍ରତି ପ୍ରେମ ଉପୁଜାଇବାକୁ ହେବ···ଆଚ୍ଛା···ଭଗବାନଙ୍କ ଅସ୍ତିତ୍ୱରେ ମୋର ବିଶ୍ୱାସ ଥାଉ ବା ନ ଥାଉ, ସେ ଯଦି ଅଛନ୍ତି ତେବେ କାହିଁକି ମୋ ମନରେ ତାଙ୍କ ପ୍ରତି ପ୍ରେମ ଦେଉ ନାହାନ୍ତି ? ହେ ଭଗବାନ୍, ମୋତେ ଜଣେ ବଡ ଲେଖକ ଓ ନେତା କରିଦିଅ, ମୁଁ ଆଉ ଶାମା ଦାମା ପରି ଜୀବନ ଗୁଡ଼େଇବି ନାହିଁ······

ଭଗବାନ୍ କହିଲେ, ଝିଙ୍କି କ, ଲୋକଟାର ବୟସ କେତେ ?

—ପଇଁତିରିଶ ?

ଭଗବାନ୍ ମୃଦୁହାସ୍ୟ କରି କହିଲେ, ଲୋକଟାର ବୁଦ୍ଧି ଏ ପର୍ଯ୍ୟନ୍ତ ପରିପକ୍ୱ ହୋଇ ନାହିଁ; ବାସ୍ତବରେ କିନ୍ତୁ ସମସ୍ତ ମାନବଜାତି ବର୍ତ୍ତମାନ ପ୍ରାପ୍ତବୟସ୍କ ଅର୍ଥାତ୍ ବୁଦ୍ଧି ଦିଗରୁ ବାଳକ ଅବସ୍ଥା ଅତିକ୍ରମ କରି ନାହିଁ । ତା'ର କାରଣ ଏପରି ହୋଇ ନ ପାରେ କାହିଁକି ଏ ଅବସ୍ଥାରେ ମନୁଷ୍ୟର ନିଜକୁ ପ୍ରଚାର କରିବା ପ୍ରବୃତ୍ତି, ନିଜକୁ ଅନ୍ୟ ସମସ୍ତଙ୍କଠାରୁ ବଡ଼ କରିବାର ଚେଷ୍ଟା ପ୍ରବଳ ହୁଏ । ଅହମିକା ପ୍ରବଳ ଥାଏ । ମୋତେ ଯେ ପାଇବାକୁ ଚାହୁଁଛି କେବଳ ନିଜକୁ ବଡ଼ କରି ଅନ୍ୟ ଆଗରେ ଦେଖାଇବ ବୋଲି । ସେ ଇଚ୍ଛା-ପୂରଣ କରିବାର ଉପାୟ ତା'ର ସ୍ୱାଭାବିକ କ୍ଷମତାଦ୍ଧିକ । ସେ ତାହା କରି-ପାରେ, କିନ୍ତୁ ନିଜକୁ ନିଜେ ଗୌରବ ଦାନ ଚେଷ୍ଟାରେ ତା'ର ବୁଦ୍ଧି ଭ୍ରଷ୍ଟ ହେବ । ତା'ର ବ୍ୟକ୍ତିତ୍ୱ ପ୍ରକାଶ ପାଇବ ତା'ର ଜାତି,

Digitized by srujanika@gmail.com

ଧର୍ମ ବା ଦେଶକୁ ସବୁଠାରୁ ବଡ଼ କରିବାରେ । ପ୍ରତ୍ୟେକେ ବଡ଼ ହେବାର ସଂଘର୍ଷରେ ସମଗ୍ର ମାନବଜାତିର ଧ୍ୱଂସ ନିଶ୍ଚିତ୍ତ ହେବ, ମୋହର ଯଦୁବଂଶ ଧ୍ୱଂସ ଭଳି । ତୁମ୍ଭେ କେଉଁ ଇଚ୍ଛାକୁ ପ୍ରାଧାନ୍ୟ ଦେଇଛ ?

—ମୁଁ ଦୁର୍ଗାଚରଣର ଲେଖକ ହେବା ଓ ଲୋକଙ୍କ ସେବା କରିବାର ଇଚ୍ଛାକୁ ପ୍ରାଧାନ୍ୟ ଦେଇଛି ।

—କାହିଁକି ?

—ସବୁ ଇଚ୍ଛାଗୁଡ଼ିକ ମଧ୍ୟରେ ଏ ଦୁଇଟି ଇଚ୍ଛାକୁ ସେ ବାରମ୍ବାର ଧ୍ୟାନ ଦେଇଛନ୍ତି ଏବଂ ବ୍ୟାକୁଳଭାବରେ ଇଚ୍ଛା କରିଛନ୍ତି । ତେଣୁ ଏ ଇଚ୍ଛା ଦୁଇଟି ଅତି ଆନ୍ତରିକ ।

ଭଗବାନ୍ ପୁଣି ସ୍ମିତହାସ କରି ଆଦେଶ ଦେଲେ, ତୁମ୍ଭେ ଭୁଲ୍ କରିଛ । ଯାହାହେଉ, ଅତିଶୀଘ୍ର ତୁମ୍ଭେ ତା'ର ବନ୍ଧୁ ଘନାକୁ କଟକ ପଠାଅ ଏବଂ ଦୁର୍ଗାଚରଣ ସହିତ ସାକ୍ଷାତ କରାଅ ।

ଶ୍ରୀକୃଷ୍ଣଙ୍କ ଆଦେଶ ପାଇ ଚାଲିଗଲେ ।

× × ×

ଦୁର୍ଗାଚରଣ କ୍ରମ କ୍ରମ କ୍ଲାନ୍ତ ହୋଇ ପଡ଼ିଲେ । ମନରେ ତାଙ୍କର ଅବସାଦ ଆସିଲା । ଏତେ ଅସମ୍ଭବ ଭାବନା ଭାବୁଛନ୍ତି ବୋଲି ନିଜପ୍ରତି ଘୃଣା ମଧ୍ୟ ହେଲା । ସେ ଉଠି ଟିକିଏ ବୁଲି ଆସିବାକୁ ବାହାରିଲେ । ଘରୁ ବାହାରିଛନ୍ତି କି ନା ଦେଖିଲେ ତାଙ୍କର ବନ୍ଧୁ ଘନା ଯାଉଛନ୍ତି । ଦୁହେଁ ଦୁହିଁଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ।

ଦୁର୍ଗାଚରଣ ପଚାରିଲେ, କଅଣ ତୁମେ କୁଆଡେ ?

—ମୁଁ ବର୍ତ୍ତମାନ ଭୁବନେଶ୍ୱରରୁ ଆସିଲି, ବାପା ଜରୁରୀ ଖବର ଦେଲେ ଆସିବାକୁ ।

Digitized by srujanika@gmail.com

—ଇସ୍, ୫ ବର୍ଷ ପରେ ଦେଖା, ନୁହଁ ? ଆଜ ସକାଳେ ବଡ଼ା ଖାଉ ଖାଉ ତୋ କଥା ମନେ ପଡ଼ୁଥିଲା ! ଏତେ କେତେବର୍ଷ ମୁଁ ତ କଟାଇଲି ଦୂର ମୁଲକରେ ! ତୋର ଖବର ରଖି ନାହିଁ । ଆଜ ସକାଳେ ଭାବୁଥିଲି ଯେ, ତୋ ସହିତ ଦେଖା ହୁଅନ୍ତା କି ?

ଦୁହେଁ ଦୁହିଁଙ୍କୁ ଆନନ୍ଦରେ କୁଣ୍ଢାଇ ପରସ୍ପରଠାରୁ ବିଦାୟ ନେଲେ ।

ଦୁର୍ଗାଚରଣ ବୁଲି ଯାଉ ଯାଉ ଭଦ୍ରଙ୍କର କଥାଟି ମନେ ପଡ଼ିଲା......

Lord I know not
what to ask of thee
Thou only knowest
what I need.
Thou lovest me
better than I know how to love myself.
Smite me or heal me,
depress me or raise me up,
I adore all thy purposes
without knowing them;
I do not know how to pray,
Pray thyself in me.

—*—

Digitized by srujanika@gmail.com

# ମ୍ୟୁନିସିପାଲିଟୀ ଗଳ୍ପ

ସେ ଗୋଟାଏ ଅଦ୍ଭୁତ ମୁହୂର୍ତ୍ତ, ଅତି ମର୍ମନ୍ତୁଦ ମୁହୂର୍ତ୍ତ । ମୋ ଜୀବନରେ ଏପରି ଗୋଟାଏ ମୁହୂର୍ତ୍ତ ଆସିଥିଲା, ଯେଉଁ ମୁହୂର୍ତ୍ତରେ ମୋ'ର ପ୍ରତ୍ୟୁତ୍ପନ୍ନମତିତା ଉପରେ ନିର୍ଭର କରିଥିଲା ମୋ ଦେଶର ସମ୍ମାନ ଓ ଗୌରବ । ସେ ମୁହୂର୍ତ୍ତ ଯେ ଏପରି ଅପ୍ରତ୍ୟାଶିତ ଭାବରେ ଓ ଏପରି କଦର୍ଯ୍ୟ ପରିସ୍ଥିତି ମଧ୍ୟରେ ଉପସ୍ଥିତ ହେବ, ମୋର ଧାରଣା ନ ଥିଲା । ସେ କଥା ଭାବିଲେ ଏ ପର୍ଯ୍ୟନ୍ତ ମୋର ଦେହ କ୍ରୋଧ ଓ ଘୃଣାରେ ଥରି ଉଠେ । ଏ ପର୍ଯ୍ୟନ୍ତ ମୁଁ ଆକ୍ଷେପ କରି କୁହେ, ହାୟ, ହାୟ ଏହି ସାମାନ୍ୟ ଘଟଣାରୁ ମୋର ବିଦେଶୀ ବନ୍ଧୁ ମୋ ଦେଶ ବିଷୟରେ କି କଦର୍ଯ୍ୟ ଧାରଣା ନେଇଗଲେ କେଜାଣି ? ମୋ ଦେଶର ଅତୀତର ଗୌରବୋଜ୍ଜ୍ୱଳ ଇତିହାସ, ମୋ ଦେଶର ଶିଳ୍ପୀ, ସାହିତ୍ୟିକ, ଦାର୍ଶନିକ, ତ୍ୟାଗବୀର-ମାନଙ୍କର କେତେ କଥା ମୁଁ ତାଙ୍କୁ କହି ନ ଥିଲି ! କେତେ ଉଚ୍ଚ ଧାରଣା ନେଇ ମୋର ବିଦେଶୀ ବନ୍ଧୁ ଆସି ନ ଥିଲେ ମୋ ଦେଶ ଦେଖିବାକୁ !! ଭାରତବର୍ଷର ତପସ୍ୟା ହନନକର ଶୁଖୁଆ ପୋଡ଼ାରେ ଗଲା ? ଅଥବା ଜ୍ଞାନୀମାନେ ଯଥାର୍ଥରେ କହି ଅଛନ୍ତି, ଜଣେ ଦି'ଜଣ ମହାପୁରୁଷଙ୍କ କୌଣସି ଦେଶରେ ଆବିର୍ଭାବରୁ ସେ ଦେଶର ଲୋକ-

Digitized by srujanika@gmail.com

ମାନଙ୍କ ଚରିତ୍ର ବିଷୟରେ ଧାରଣା କରିବା ଉଚିତ ନୁହେଁ । ଦେଶର ସାଧାରଣ ଲୋକେ ସେମାନଙ୍କର ଦୈନନ୍ଦିନ ଜୀବନରେ ଓ ଅତି ନଗଣ୍ୟ ଘଟଣାରେ ଯେଉଁପରି ବ୍ୟବହାର କରନ୍ତି, ତାହାହିଁ ଦେଶର ପ୍ରକୃତ ପରିଚୟ । ଗାଁ ପରିମଳ ଧୋବା ତୁଠରୁ ଜଣାପଡ଼େ । ଟାଉଟର ଯେଉଁ ଦେଶର ନେତା, ଶୋଷକ ଶ୍ରେଣୀ ଯେଉଁ ଦେଶର ମାର୍ଗଦର୍ଶକ, ସ୍ୱାର୍ଥସିଦ୍ଧି ଯେଉଁଠି ନେତୃତ୍ୱର ପ୍ରେରଣା ଦିଏ, ଜାଲ ଜୁଆଚୋରୀ ଯେଉଁଠି ଶ୍ରେଷ୍ଠ ରାଜନୀତି ରୂପେ ପ୍ରଶଂସିତ, ଅନ୍ୟର ବିରୁଦ୍ଧରେ ମିଥ୍ୟା ମକଦ୍ଦମା କରିବାରେ ଯେଉଁଠି ଲୋକେ ତତ୍ପର, କର୍ମଚାରୀମାନେ ଯେଉଁଠି ଦୁର୍ନୀତିପରାୟଣ, ସେ ଦେଶରେ ଗୋଟାଏ ଦି'ଟା ଯିଶୁ, ମହମ୍ମଦ, ବୁଦ୍ଧ, ଶଙ୍କର, ଚୈତନ୍ୟ, ଗାନ୍ଧୀ ଜାତ ହୋଇ ଜନ୍ମିଲେ ବୋଲି ସେ ଦେଶ ମହାନ୍, ଏ ଧାରଣା କେବଳ ଭ୍ରମାତ୍ମକ ନୁହେଁ, ଆତ୍ମଘାତୀ ଏବଂ ବ୍ୟକ୍ତିତ୍ୱର ଅନୁପନ୍ଥୀ ମଧ୍ୟ । ଥାଉ ସେକଥା ।

ଗୋପାଳନ ବିଷୟରେ ଶିକ୍ଷା କରିବାକୁ ମୁଁ ବିଦେଶରେ ଥିଲି ଦୁଇବର୍ଷ । ସେହି ସମୟରେ ଡେଭିଡ଼ଙ୍କ ସହିତ ମୋର ଆଳାପ ହୋଇଥିଲା ଏବଂ ସେ ଆଳାପ କ୍ରମେ କ୍ରମେ ବନ୍ଧୁତ୍ୱରେ ପରିଣତ ହେଲା । ଅବଶ୍ୟ ପ୍ରଥମ ଆଳାପ ତୀବ୍ର ସମାଲୋଚନା ମଧ୍ୟରେ ହୋଇଥିଲା । ସେ ମୋର ଗୋପାଳନ ବିଷୟରେ ଶିକ୍ଷା ପାଇଁ ବିଳାତ ଯିବାକୁ ଆକ୍ଷେପ କରି କହିଥିଲେ, ମୁଁ ବୁଝିପାରୁ ନାହିଁ, କାହିଁକି ଭାରତର ଛାତ୍ରମାନେ, ବିଶେଷତଃ ହିନ୍ଦୁମାନେ, ଗୋପାଳନ ବିଷୟରେ ଶିକ୍ଷା ନେବାକୁ ଏ ଦେଶକୁ ଆସୁଛନ୍ତି; ଯେଉଁ ଦେଶରେ ଗାଈ ମାତୃସ୍ଥାନୀୟା, ସେ ଦେଶର ଲୋକେ ପୁଣି ଗୋପାଳନ ଶିକ୍ଷା କରିବେ ଅନ୍ୟ ଦେଶରୁ ? ଖାଲି ସେତିକି ନୁହେଁ, ରନ୍ଧନ ଶିକ୍ଷା, ଗ୍ରାମଗଠନ ଶିକ୍ଷା ଇତ୍ୟାଦି ନାନା ହାସ୍ୟାସ୍ପଦ ଶିକ୍ଷା ପାଇଁ ଛାତ୍ରମାନେ

Digitized by srujanika@gmail.com

ବିଦେଶ ଆସୁଛନ୍ତି !! ମୋର ମନେ ହୁଏ, ସେ କହୁଥିଲେ, ପରାଧୀନତାର ମୋହ ଆପଣମାନଙ୍କର ଏ ପର୍ଯ୍ୟନ୍ତ କଟି ନାହିଁ ।

ଏହାର ଉତ୍ତରରେ ମୁଁ ବିଶେଷ କିଛି କହିପାରି ନ ଥିଲି । କିନ୍ତୁ ମୋ ଦେଶର ଦର୍ଶନ, ଧର୍ମ ଆଦି ବିଷୟରେ ମୁଁ ତାଙ୍କୁ ବୁଝାଇଥିଲି । ତାପରେ କିନ୍ତୁ ମୋ ଦେଶ ପ୍ରତି ଏବଂ ମୋ ଦେଶ ପାଇଁ ମୋ ପ୍ରତି ଆକୃଷ୍ଟ ହୋଇଥିଲେ । ଡେଭିଡ଼ ଜଣେ ସାମ୍ବାଦିକ । "ଦୈନନ୍ଦିନ ଇତିହାସ"ର ଭ୍ରାମ୍ୟମାଣ ସମ୍ବାଦଦାତା ରୂପେ ସେ ଖବରକାଗଜ ସଂବାଦ ସଂଗ୍ରହ କରନ୍ତି ଏବଂ ସେହି ସୂତ୍ରରେ ନାନା ଦେଶ ଭ୍ରମଣ କରି ସେ ଭ୍ରମଣବୃତ୍ତାନ୍ତ ଉକ୍ତ ପତ୍ରିକାରେ ପ୍ରକାଶ କରନ୍ତି । ତାଙ୍କ ସହିତ ବନ୍ଧୁତା ହେବା ପରେ ମୁଁ ମଧ୍ୟ ତାଙ୍କ ସହିତ ବୁଲିବାର ସୁଯୋଗ ପାଇଛି । ସେଠି ଗୋଟିଏ ଅଦ୍ଭୁତ ଘଟଣା ଥରେ ଦେଖିଲି । ଜଣେ ଠିକାଦାର ଗୋଟିଏ ସରକାରୀ ଘର ପ୍ରସ୍ତୁତ କରି ଦେବା ପାଇଁ ତେର ଲକ୍ଷ ଟଙ୍କାରେ ଠିକା ନେଇଥିଲେ । ଘର ପ୍ରସ୍ତୁତ ହୋଇ ସାରିଲା ପରେ ସେ ଦେଖିଲେ ଯେ ଚୂନ ଭଲ ରହିଚି, ଶୁଖୁ ନାହିଁ । ସେ ଅନୁସନ୍ଧାନ କରି ଦେଖିଲେ ଯେ ଚୂନରେ କିଛି ଖରାପ ଜିନିଷ ମିଶି ଯାଇଛି । ଠିକାଦାର ଜଣକ ଦଣ୍ଡତାଳ କୋଠାଟିକୁ ସମ୍ପୂର୍ଣ୍ଣ ଭାଙ୍ଗି ପୁଣି ଗଢ଼ି ଦେଲେ ନିଜ ଖର୍ଚ୍ଚରେ ଏବଂ ସେଥିପାଇଁ ସେ ସର୍ବସ୍ୱାନ୍ତ ମଧ୍ୟ ହୋଇଗଲେ । ଏହାଠୁ ବଳି ଆଶ୍ଚର୍ଯ୍ୟର କଥା ଆଉ କ'ଣ ଥାଇପାରେ ? ତାଙ୍କର ସେ ସାଧୁତା ପାଇଁ ସମ୍ବାଦପତ୍ରମାନଙ୍କରେ ଡିଣ୍ଡିମ ବାଜିଲା ନାହିଁ, ଯେପରି ତାହା ଗୋଟିଏ ଅତି ସାଧାରଣ ଘଟଣା !! ସେଦିନ ମୋର ଦୃଢ଼ ଧାରଣା ହୋଇଥିଲା, ସମାଜବାଦ କୁହ ବା ଗୋଷ୍ଠୀବାଦ କୁହ, ଗାନ୍ଧୀବାଦ କୁହ ବା ପୁଞ୍ଜିବାଦ କୁହ, ଏକଚ୍ଛତ୍ରବାଦ କୁହ ବା ଗଣତନ୍ତ୍ର କୁହ କୌଣସି 'ବାଦ' ସଫଳ ହେବ ନାହିଁ, ବରଂ ବାଦବିବାଦ ବିକ୍ରତର

Digitized by srujanika@gmail.com

କାରଣ, ଯଦି ସାଧାରଣ ଲୋକର ଆଧ୍ୟାତ୍ମିକ ଉନ୍ନତି ନ ହୁଏ। ଆଉ ନେତା ଆଧ୍ୟାତ୍ମିକ ଉନ୍ନତି ନ କଲେ, ନେତାଙ୍କ ନୈତିକ ଉନ୍ନତିକୁ ଚାହିଁ ନା ଜାଣିଲେ, ସବୁ ବାଲିରେ ପାଣି ଢାଳିବା ଭଳି ହେବ। ଛାଡ଼ନ୍ତୁ ସେ କଥା।

ବିଦେଶରୁ ବିଦାୟ ନେବା ବେଳେ ବନ୍ଧୁ ଜେଫରସନଙ୍କୁ ଥରେ ମୋ ଦେଶକୁ ଆସିବାକୁ ନିମନ୍ତ୍ରଣ କଲି। ସେତେବେଳେ କିଏଣ ଭାବିଥିଲି, ସତେ ସେ ଏ ଦୂର ଦେଶକୁ ଆସିବେ ? କିନ୍ତୁ ଯାହା ଆଶଙ୍କା କରିଥିଲି, ତାହାହିଁ ଘଟିଲା। ଦିନେ ହଠାତ୍ ବନ୍ଧୁଙ୍କ ଚିଠି ପାଇଲି, ସେ ନୂଆ ନେତାମାନଙ୍କ ମୋ ଦେଶ ପରିଦର୍ଶନ ସମ୍ପର୍କରେ ତାଙ୍କର ପତ୍ରିକାର ସମ୍ବାଦଦାତା ରୂପେ ସେ ଆସୁଛନ୍ତି ଏବଂ ତାଙ୍କର କାର୍ଯ୍ୟବହୁଳ ଦିନଗୁଡ଼ିକ ମଧ୍ୟରୁ କୌଣସିମତେ ଦୁଇଟି ଦିନ ଉଡ଼୍-ଓଇଟାର ବାହାର କରି ମୋ ଘରେ ରହିବେ। ମୋ ଘରେ ରହିବେ? ମୋ ଘରେ ରହିବେ !! କଥାଟା ବାରମ୍ବାର ମୋର ମସ୍ତିଷ୍କ ଭିତରେ ହାତୁଡ଼ି ମାରିବାକୁ ଲାଗିଲା।

କିନ୍ତୁ ଉପାୟ ନାହିଁ। ମୋ ଦେଶ ସରକାର ରାଷ୍ଟ୍ରୀୟ ମହାନ୍ ଅତିଥିମାନଙ୍କ ପରିଦର୍ଶନ ପାଇଁ ବିପୁଳ ଅର୍ଥ ବ୍ୟୟ କରିବାକୁ ଲାଗିଲେ। ମୁଁ ମଧ୍ୟ ସାଧ୍ୟାନୁସାରେ ମୋର ବିଦେଶୀ ବନ୍ଧୁଙ୍କ ରହଣୀ ପାଇଁ ଅର୍ଥ ବ୍ୟୟ କରିବାକୁ ଲାଗିଲି। ମୋର ବାସଗୃହର ମାର୍ଜନା ନୂତନ ଆସବାବପତ୍ର ଇତ୍ୟାଦି କିଣିବାରେ ଅନେକ ଖର୍ଚ୍ଚ ହୋଇଗଲା। ପରିବାରବର୍ଗଙ୍କୁ ନାନା ଉପଦେଶ ଦେବାକୁ ଲାଗିଲି। ସେମାନଙ୍କୁ କହିଲି, ରାଷ୍ଟ୍ରୀୟ ନେତାମାନେ ମୋ ଦେଶ ବିଷୟରେ ଯେଉଁ ଧାରଣା ନେଇଯିବେ, ତାହା ଭଲ ହେବାକୁ ବାଧ୍ୟ। କିନ୍ତୁ ମୋର ବନ୍ଧୁ ଯେଉଁ ଧାରଣା ନେଇଯିବେ ତାହାହିଁ ହେବ ମୋ ଦେଶର ପ୍ରକୃତ ପରିଚୟ; ତେଣୁ ତୁମ୍ଭମାନଙ୍କ ଉପରେ, ସାବଧାନ,

Digitized by srujanika@gmail.com

ବର୍ଷର ଏଠରେ ଦେଶର ସମ୍ମାନ, ଅତଏବ ତୁମ୍ଭେମାନେ ଉଦ୍ବୋଧିତ ବାଂହାର ଓ ପରିଚ୍ଛନ୍ନତା ବିଷୟପ୍ରତି ବିଶେଷ ଧ୍ୟାନ ଦିଅ, ହଁ।

ବିଦେଶୀୟ ନେତାମାନେ ମୋ ଦେଶର ଐତିହାସିକ କୀର୍ତ୍ତିସ୍ଥାନ, ଉନ୍ନୟନ ଯୋଜନା ଆଦି ପରିଦର୍ଶନ କରି, ବହୁ ପ୍ରଶଂସା କରି ଦୁଇ ଦିନ ପାଇଁ ବିଶ୍ରାମ ନେଲେ। ପରଦିନ ମୁଁ ବନ୍ଧୁଙ୍କୁ ପାଗ୍ଲେଟି ଆଣିଲି ମୋର ଘରକୁ।

ବାଟରେ ଆସୁ ଆସୁ ବନ୍ଧୁ ଗୋଟିଏ ପ୍ରକାଣ୍ଡ କୋଠା ଦେଖି କହିଲେ, ଏ ବୋଧହୁଏ ଆପଣଙ୍କର ଶ୍ରେଷ୍ଠ କଲେଜ? କିନ୍ତୁ ବିଦେଶୀ ଶାସକର ଦିନରେ ଏ ପର୍ଯ୍ୟନ୍ତ କାହିଁକି ଏହା ପରିଚିତ ହେଉଛି?

ମୁଁ ସଗର୍ବେ କହିଲି, ଏ ଦେଶ କୃତଘ୍ନ ନୁହେଁ। ଏ ଦେଶ ଶତ୍ରୁର ମଧ୍ୟ ଭଲ ଗୁଣ ପ୍ରଶଂସା କରିବାକୁ କୁଣ୍ଠାବୋଧ କରେ ନାହିଁ। ନାଁ ବଦଳାଇବାର କୌଣସି ପ୍ରୟୋଜନ ନାହିଁ।

ବନ୍ଧୁ ମୁଗ୍ଧ ସ୍ୱରରେ କହିଲେ, ବାଃ! ଚମତ୍କାର!! ଏ ଗୋଟିଏ ମାତ୍ର ଦୃଷ୍ଟାନ୍ତହିଁ ଏ ଦେଶର ମହତ୍ତ୍ୱର ଯଥେଷ୍ଟ ପରିଚୟ ଦିଏ।

ମନେ ମନେ ଖୁବ୍ ଖୁସୀ ହେଲି, ଖୁବ୍ ଗର୍ବ ଅନୁଭବ କଲି। କଥାରେ ଅଛି ପ୍ରଥମ ଧାରଣାହିଁ ଶେଷ ପର୍ଯ୍ୟନ୍ତ ରହେ। କିନ୍ତୁ କିଏ ଜାଣିଥିଲା···ବଜ୍ରାଘାତ ହେବ···।

ପରଦିନ ପ୍ରଭାତ ନ ହେଉଣୁ ପ୍ରାତଃଭ୍ରମଣ ପାଇଁ ବନ୍ଧୁଙ୍କୁ ନଦୀ କୂଳକୁ ନେଇଗଲି। ନଦୀରେ ଗୋଟିଏ ପ୍ରାଚୀନ କୀର୍ତ୍ତି ଦେଖାଇବା ମଧ୍ୟ ମୋର ଉଦ୍ଦେଶ୍ୟ ଥିଲା। ନଦୀର ଅପର ପାର୍ଶ୍ୱରୁ ସୂର୍ଯ୍ୟୋଦୟର ଦୃଶ୍ୟ ଅଧ ଅତି ରମଣୀୟ।

Digitized by srujanika@gmail.com

ନଈବନ୍ଧରେ ବୁଲୁ ବୁଲୁ ମୁଁ ଉକ୍ତ ପ୍ରାଚୀନ ନଗରର ଗୌରବମୟ ଇତିହାସ କହିବାକୁ ଲାଗିଲି । ବନ୍ଧୁ ମୁଗ୍ଧଭାବରେ ଶୁଣୁ ଥାଆନ୍ତି । ପୂର୍ବ ଦିଗ୍‌ବଳୟରେ ସେତେବେଳେ ପର୍ବତ ଶ୍ରେଣୀର ପଛପଟୁ ଖଣ୍ଡେ ଜଳନ୍ତା ଅଙ୍ଗାରଭଳି ଦେଖାଏ ସୂର୍ଯ୍ୟ ଦେଖାଗଲେଣି । ଧୀରେ ଧୀରେ ସମସ୍ତ ପୂର୍ବ ଗଗନ ରକ୍ତାଭ ହୋଇ ଉଠିଲା । ସେଠାରୁ ଲମ୍ବି ଆସିଛି ଗୋଟିଏ ସ୍ୱର୍ଣ୍ଣ ପାବଚ୍ଛ, ଠିକ୍ ଆମ ପର୍ଯ୍ୟନ୍ତ । ଏ ଦେଶର ଗୌରବ ରକ୍ଷା କରିବାକୁ ଯେପରି ସେ ଦିନ ସୂର୍ଯ୍ୟଦେବ ଓ ପର୍ଜନ୍ୟଦେବ ପୂର୍ବାକାଶରେ ଅପୂର୍ବ ବର୍ଣ୍ଣଛଟା ସୃଷ୍ଟି କରୁଥାଆନ୍ତି । ବନ୍ଧୁ ମୁଗ୍ଧ ଭାବରେ ଅନାଇ ରହିଥାଆନ୍ତି ସେ ଦୃଶ୍ୟ ଆଡେ । ତାଙ୍କର ମୁଗ୍ଧତା ଦେଖି ମୁଁ ଯେଉଁ ଗର୍ବ ଅନୁଭବ କରୁଥାଏ, କଅଣ କହିବି !!

ବନ୍ଧୁ ଦୃଶ୍ୟ ଦେଖୁ ଦେଖୁ ହଠାତ୍ ସୁଟ ପକେଟରୁ ରୁମାଲ୍ ବାହାର କରି ନାକ ଉପରେ ରଖିଲେ ଏବଂ ହଠାତ୍ ଅନ୍ୟମନସ୍କ ହୋଇଗଲେ । ସୁଟରୁ ମୋର ଅତଡ଼ା ଖସି ପଡ଼ିଲା । ବୁଝିପାରିଲି ନାକରେ ରୁମାଲ ରଖିବାର କାରଣ, ଗନ୍ଧବହ ମନ୍ଦେ ମନ୍ଦେ ଯେଉଁ ଗନ୍ଧ ପରିବେଷଣ କରୁଛି, ତାହା ମଳମୂତ୍ରର ନୁହେଁ, ତାହାର ଆଦ୍ୟ ଦୁଇ ଅକ୍ଷରର ।

ଉପାୟ ? କେମିତି ବନ୍ଧୁର ଘ୍ରାଣେନ୍ଦ୍ରିୟ କ୍ରିୟାକୁ ଦବାଇ ଶ୍ରବଣେନ୍ଦ୍ରିୟ କ୍ରିୟା ପ୍ରବଳ କରାଇବି, ଏହାର ଉପାୟ ଉଦ୍‌ଭାବନ କରିବାର ପ୍ରତ୍ୟୁତ୍ପନ୍ନମତିତା ଉପରେହିଁ ମୋର ଦେଶର ଗୌରବ ସେହି ମୁହୂର୍ତ୍ତରେ ନିର୍ଭର କରୁଥିଲା । ସେଥିପରେ ପୁଣି କୁକୁରପ୍ରିୟ ଜାତିର ଘ୍ରାଣଶକ୍ତି ଅତି ସୂକ୍ଷ୍ମ ।

ଜବାକୁସୁମ ସଙ୍କାଶଂ କାଶ୍ୟପେୟମ୍ ମହାଦ୍ୟୁତିମ୍...

Digitized by srujanika@gmail.com

ଶ୍ଲୋକଟି ଉଚ୍ଚସ୍ୱରରେ ଗାଇ ତାର ବିଷଦ୍ ବ୍ୟାଖ୍ୟା କରିବାକୁ ଲାଗିଲି । ସବୁ ବୃଥା !! ହାୟ, ହାୟ !

ବନ୍ଧୁ ନାକରୁ ରୁମାଲ କାଢ଼ିଲେ ନାହିଁକି ସେଠାରୁ ମଧ୍ୟ ଘୁଞ୍ଚିଲେ ନାହିଁ । କି ନିଷ୍ଠୁର ଏ ଲୋକଟା !

ବାଁ ପଟକୁ ଅନାଇ ଦେଖିଲି ନଦୀକୂଳ ନିକଟସ୍ଥ ସାନ୍ଧ୍ୟ ସୀମନ୍ତିନୀମାନେ ଧାଡି ଧାଡ଼ି ହୋଇ ରାସ୍ତାକଡରେ ବସି ପ୍ରାତଃକାଳୀନ କର୍ମ ସଙ୍ଗରେ ଆନନ୍ଦଦାୟକ କଳହରେ ଅଭିନିବିଷ୍ଟ । ବନ୍ଧୁଙ୍କ ଦୃଷ୍ଟିରୁ ସେମାନଙ୍କୁ ଆଢୁଆଳ କରି ଛିଡ଼ା ହେଲି । କିନ୍ତୁ ଡାହାଣ ପଟକୁ ଅନାଇ ଦେଖିଲି, କିଛି ଉପରେ ଆମେ ଯେଉଁଠି ଛିଡ଼ା ହୋଇଛୁ, ଠିକ୍ ତାହାର ତଳକୁ ଆମରି ଆଡ଼କୁ ପଛ କରି ଧାଡି ଧାଡି ହୋଇ ପୁରୁଷମାନେ ବସି ଯାଇଛନ୍ତି, ତନ୍ମୟ ଭାବରେ, କାହାରି ପ୍ରତି ଭ୍ରୂକ୍ଷେପ ନାହିଁ । ବନ୍ଧୁର ଦୃଷ୍ଟି ଏପର୍ଯ୍ୟନ୍ତ ସେମାନଙ୍କ ଉପରେ ପଡ଼ି ନ ଥାଏ ।

ମୋର ଶ୍ଳୋକ ଶୁଣି ବନ୍ଧୁ ମୁଗ୍ଧଭାବରେ କିଛିକ୍ଷଣ ମୋଆଡ଼େ ଚାହିଁ ଶ୍ଳୋକଟିର ଭାବ ହୃଦୟଙ୍ଗମ କରିବାକୁ ତଳକୁ ଚାହିଁଲେ । ଲୁଚିରୁ ମୋର ପୂର୍ଣ୍ଣ ଅଜ୍ଞତା ଖସି ପଡ଼ିଲା । ମନରେ ଏ ଦେଶଦ୍ରୋହୀ-ଗୁଡ଼ାକ ପ୍ରତି ଅଭିଶାପ ଓ ମୁହଁରେ ହସ ଫୁଟାଇ (ଆଧୁନିକ ରାଜ-ନୀତିରୁ ମୁଁ ଏଟା ହାସଲ କରିଚି) ପଛକୁ ହାତଦେଇ ପୃଷ୍ଠସତ୍ୟାଗୀ-ମାନଙ୍କୁ ଉଠିଯିବାକୁ ଘନ ଘନ ସଙ୍କେତ ଦେଲି । ସେମାନେ ଶୁଣନ୍ତେ କିଁଆ !!

ଏ ଦୁର୍ଗନ୍ଧ କେଉଁଠୁ ଆସୁଚି ? ବନ୍ଧୁ ସନ୍ଦିଗ୍ଧଭାବରେ ପଚାରିଲେ ।

ନିକଟରେ ଗୋଟିଏ କାରଖାନା ଅଛି···ମୁଁ କହିଲି ।

ସଭ୍ୟତାର ଅଭିଶାପ···ବନ୍ଧୁ କହିଲେ ।

Digitized by srujanika@gmail.com

ଆଧୁନିକ ଶିକ୍ଷା-ସଭ୍ୟତାହିଁ ତ ଏ ଦେଶକୁ ନଷ୍ଟ କରିବାକୁ ବସିଲାଣି···ମୁଁ କହିଲି ।

କିନ୍ତୁ, ବନ୍ଧୁ ପଚାରିଲେ, ଏମାନେ ଏପରି ଉଲଗ୍ନ ଭାବରେ ବସିଛନ୍ତି କାହିଁକି ?

ତୋର କଅଣ ଗଲା ହ୍ୟାପ୍ ? ମନେ ମନେ କହିଲି । କିନ୍ତୁ ପ୍ରକାଶ୍ୟରେ କହିଲି, ସେମାନେ ସୂର୍ଯ୍ୟୋପାସନା କରୁଛନ୍ତି, ଆପଣ-ମାନଙ୍କ ଦେଶରେ ଯେପରି ଅର୍ଦ୍ଧନଗ୍ନ ଅବସ୍ଥାରେ ସୂର୍ଯ୍ୟସ୍ନାନ କରନ୍ତି । ଆପଣମାନଙ୍କର ଯାହା ସ୍ୱାସ୍ଥ୍ୟରକ୍ଷାର ନିୟମ, ଆମର ତାହା ଧର୍ମ ପାଳନ, କାରଣ ଆମର ଦର୍ଶନରେ ଏ ଦେହ ଆମେ ଧାରଣ କରୁ, ଇନ୍ଦ୍ରିୟ ସୁଖ ଭୋଗ କରିବାକୁ ନୁହଁ, ପରମାତ୍ମାଙ୍କର ପରଶ ପାଇବାକୁ ।

ବାଃ ! ଚମତ୍କାର !! କିନ୍ତୁ ଏମାନେ ତ···ମୋର ମନେ ହୁଏ··· ଓଃ ହୋ ବୁଝିଲି···ଏ ଦୁର୍ଗନ୍ଧର କାରଣ । ଚାଲନ୍ତୁ ଏଠାରୁ ଯିବା, ସେମାନଙ୍କର ବାଧା ହେବ ଆମେ ରହିଲେ । ବନ୍ଧୁ ଗମ୍ଭୀରଭାବରେ ଆଗେଇଲେ ।

ମୋର ଗୋଡ଼ ଥରି ଉଠିଲା ଲଜ୍ଜା, ଅପମାନ ଓ କ୍ରୋଧରେ । ନୀରବରେ ବନ୍ଧୁଙ୍କୁ ଅନୁସରଣ କଲି । ଏହା ସାମାନ୍ୟ ଘଟଣା, କିନ୍ତୁ ଏହାର ବଜାଘାତରେ ମୋ ଦେଶର ସମସ୍ତ କୀର୍ତ୍ତି ଯେପରି ନିମିଷକେ ଧୂଳିସାତ୍ ହୋଇଗଲା !

—:*:—

Digitized by srujanika@gmail.com

# ଗୋଟିଏ ଇନ୍‌କୁଆରୀ

ଗୋଟିଏ ଇନ୍‌କୁଆରୀ କରିବାକୁ ବାହାରନ୍ତୁ ହରିହରପୁରକୁ । ହରିହରପୁର ହେଉଛି ଗୋଟିଏ ପର୍ବତ କୋଳରେ । ଗାଁର ପୂର୍ବ-ସୀମାକୁ ଲାଗି ରହିଛି ପର୍ବତମାଳା । ନାରଣପୁର, ହଟଣ୍ଡ, ମହମ୍ମଦପୁର, ଜଳଦା, ମଙ୍ଗଳପୁର ଇତ୍ୟାଦି । ଗାଁମାନଙ୍କ ସୀମାଦେଇ ପର୍ବତର ପ୍ରାଚୀର ଲମ୍ବି ଯାଇ ମିଶିଛି ଗୋରୁଖିଆ ପର୍ବତ ସହିତ । ଉଚ୍ଚ ପର୍ବତ ନୁହେଁ । ହେଲେ ଘୋର ଜଙ୍ଗଲ ।

ହରିପୁର ଗାଁ ସୀମାରେ ଦୁଇଟି ପର୍ବତ ପାଖାପାଖି ହୋଇ ଛିଡ଼ା ହୋଇଛନ୍ତି, କେତେ ଯୁଗଧରି ! କେତେ ଯୁଗର ଲୋକେ ତା ଉପରକୁ ଚଢ଼ିଛନ୍ତି କାଠ କାଟିବାକୁ, ସେମାନଙ୍କର ପାଦଚିହ୍ନ ନାହିଁ; କିନ୍ତୁ ଅନେକଙ୍କର ଇତିହାସ ରହିଯାଇଛି ସେହି ପର୍ବତ ଦୁଇଟିର ଦେହରେ । ଅଷଣାର ଗୋପି ବାପା ଯାଇଥିଲା କାଠ କାଟିବାକୁ, କାଠ ଖୋଜି ଖୋଜି ସେ ଢଅଁଙ୍କ ଅଧିଷ୍ଠାନ ଆଡ଼କୁ ଚାଲି ଯାଇଥିଲା । ଢଅଁ ତାକୁ ବାଘରୂପରେ ଦେଖା ଦେଇଥିଲେ, ବାସ୍ ସେଇଠି ଶେଷ, ଗୋଟିଏ ଝାଡ଼ା ପରେ । ପ୍ରାପ୍ତ ବୟସ ପୁରୁଷ ଆଗେ ସପନ ଣ ଯାଇଥିଲା ସେ ଜାଗାକୁ । ସେ ଥିଲା ଅମାନିଆ, ନାସ୍ତିକ, ଠାକୁର

Digitized by srujanika@gmail.com

ଠାକୁରାଣୀ ମାନୁ ନ ଥିଲା । ଯେମିତ ଯାଇଛୁ ସେ ଜାଗାକୁ ଠାକୁରାଣୀ ତାକୁ ନାଟରେ ବାନ୍ଧ ଦେଲେ, ନଟାରେ ଗୁଡ଼େଇ ଗୁଡ଼େଇ ହୋଇ ସେ ମଲା । ତା ବଂଶରେ ମଧ କେହୁ ଦୀପ ଦେବାକୁ ରହୁଲେ ନାହିଁ । ଏ ପର୍ଯ୍ୟନ୍ତ ତା ଢ଼ିହଟି ରହୁଛୁ, ସପନଢ଼ିହ, ଗାଁ ମୁଣ୍ଡରେ । ଖାଲି ଓଗୋଟାଏ ଅଧାକାନ୍ଥି ରହୁଛୁ, ଆଉ ରହୁଛୁ କେତେଗୁଡ଼ାଏ ଖପରା; ସେ ଭିଢ କେହୁ ମାଡ଼ନ୍ତି ନାହିଁ ।

ସେତ ଅଧରେ ଅନେକେ ଶବ୍ଦ ଆଉ ଗୋଟାଏ ଭୁହାଟ ଶୁଣିଛନ୍ତି, ହେ-ଏ-ଏ-ଏ-ଏ ହେଃ, ହେଃ, ହେଃ, ହାଃ, ହାଃ, ହାଃ । ଗାଁରେ କେହୁ ଅନ୍ୟାୟ ଅବ୍ୟବହାର କଲେ ଏପରି ଭୁହାଟ ଶୁଭେ । ଭୁହାଟ ଶୁଣିଲେ ଗାଁର ଲୋକେ ବୁଝିପାରନ୍ତି କେହୁ ଅନ୍ୟାୟ କରିଛନ୍ତି । ବାଜା ବାଜେ, ଠାକୁରାଣୀଙ୍କ ପୂଜା ହୁଏ, ଭୋଗ ଲାଗେ, ବଳି ପଡ଼େ, କାଳିସି ଲାଗେ । ତା ପରେ ବସେ ସଭା, ଯିଏ ଅନ୍ୟାୟ କରିଥାଏ, ସେ ନିଜେ ନିଜେ ଦୋଷ ସ୍ୱୀକାର କରେ । ଯାହା ଉଚିତ ଦଣ୍ଡ ବୋଲି ସଭା ସ୍ଥିର କରେ, ସେ ଦଣ୍ଡ ସେ ପାଏ।

ସେ ଯୁଗ ଗଲାଣି, ସେତେବେଳେ ଗାଁରେ ଗୋଟିଏ ପାଠଶାଳା ବି ନ ଥିଲା । ଗାଁ ଅବଧାନେ ପିଲାମାନଙ୍କୁ ବେତମାରି ପୋଥି ପଢ଼ିବା ଶିଖାଇ ପାରିଲେ ହେଲା "ନମଇ ନୃସିଂହ ଚରଣ, ଅନାଦି ପରମ କାରଣ" ବୋଲିବା ପର୍ଯ୍ୟନ୍ତ ଶିକ୍ଷା ହୋଇଗଲେ ଢେର୍ ହେଲା, ତା ପରେ କାନ୍ଧରେ ଜୁଆଳି ପକାଇ ବଳଦ ଲାଙ୍ଗୁଡ଼ ମୋଡ଼ି "ହେଟ୍ ହେଟ୍ ଶଳା ଖାଲିଜିଛୁ" କହି କହିକା ମୁଣ୍ଡି କି ଚଷା ହେବାକୁ ହେବାକୁ ପୁଅ ଚାଲିଲେ ହଳକୁ ।

ସେ ଯୁଗ ଗଲାଣି, ବର୍ତ୍ତମାନ ଗାଁରେ ଗୋଟିଏ ମାଇନର ସ୍କୁଲ । ସେ ପୁଣି ଉଚ୍ଚ ସ୍କୁଲ ହେବାକୁ ଯାଉଛୁ । ଗାଁର ଗୋଟିଏ ପାଣପୁଅ ବି. ଏ. ପାସ୍ କରି ବଡ଼ ଗୃହକର ହଲାଣି । ଗାଁରେ ଆଜ ସେ ନୂଆଣିଆ

Digitized by srujanika@gmail.com

ସ୍କୁଲ ଘର ନାହିଁ । ବ ସ୍କୁଲଟା ପକା ଘର ବ ହେଲଣି । ପଞ୍ଚବାର୍ଷିକ ଯୋଜନାଦ୍ୱାରା ଗାଁର ଅନେକ ଉନ୍ନତି ହେଲଣି ।

ଗୋଟିଏ ପ୍ରଧାନ ଯୋଜନା ହେଉଛି, ଦୁଇଟି ପର୍ବତ ମଝିରେ ବନ୍ଧ ପକାଇ ଜଳଭଣ୍ଡାର ତିଆରି କରିବା ୨୫ ହଜାର ଟଙ୍କାର ଯୋଜନା । ଜଳଭଣ୍ଡାରଟି ସୃଷ୍ଟି ହେଲେ ଆଠହଜାର ଏକର ଜମି ଆବାଦ ହୋଇ ପାରିବ ବୋଲି ବିଶେଷଜ୍ଞମାନେ ମତ ଦେଇଛନ୍ତି ।

କାମ ଆରମ୍ଭ ହେଲାଣି ଆଜକୁ ତିନିବର୍ଷ ହେବ; କିନ୍ତୁ ସେ ଆରମ୍ଭରେହିଁ ରହି ଯାଇଛି । ଆଗେଇ ପାରୁନି । ଯୋଜନାକାର୍ଯ୍ୟ ଆରମ୍ଭ ହେବା ଦିନରୁ ଗାଁରେ ତିନିଦଳ ସୃଷ୍ଟି ହୋଇଛି । ପ୍ରତ୍ୟେକ ଦଳ ଚାହୁଁଛି କାମଟି ସିଏ ହାତକୁ ନେବ । ଟଙ୍କା ଖର୍ଚ୍ଚ ହେବ ଅନେକ ଗୁଡ଼ାଏ । ପ୍ରତ୍ୟେକ ଦଳ ଅନ୍ୟ ଦଳର ଗୁଇ ଖୋଳି, ଦୋଷ ଦର୍ଶାଇ ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଏସ୍. ଡ଼ି. ଓ. ପର୍ଯ୍ୟନ୍ତ କେତେ ଯେ ବେନାମୀ ସ୍ୱନାମୀ ଦରଖାସ୍ତ କଲେଣି ତାହାର ଇୟତ୍ତା ନାହିଁ । କେହି ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଦରଖାସ୍ତ, ତାରବାର୍ତ୍ତା ପଠାଇଛନ୍ତି । ପ୍ରତ୍ୟେକଙ୍କ ଦପ୍ତରରେ ବଡ଼ା ବଡ଼ା ଦରଖାସ୍ତ ବନ୍ଧା ହୋଇ ରହିଲାଣି । ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି କମିଶନର, କଲେକ୍ଟର ଏସ୍. ଡି. ଓ. ଜିଲ୍ଲା ଇଞ୍ଜିନିୟର୍ କେତେ ଆସି ଇନ୍‌କ୍ୱାଏରି କରି ଗଲେଣି ! କିଛି ଫଳ ଫଳ ନାହିଁ । କାମ ଯେଉଁଠି ସେଇଠି । କଥାଟା ସେତିକରେ ରହିନାହିଁ, ମୁଣ୍ଡ ଫଟାଫଟି ପର୍ଯ୍ୟନ୍ତ ଯାଇଛି । ପର୍ବତ ଦେହରୁ ରକ୍ତନଦୀ ବୋହି ଯାଇ ସେ ଜଳ-ଭଣ୍ଡାରରେ ପଡ଼ୁଛି ।

ଗୋଟିଏ ଦଳର ନେତା ନାନା ଉପାୟ କରି ପୁଣି ଇନ୍‌କ୍ୱାଏରି ଆରମ୍ଭ କରାଇଛନ୍ତି । ମୁଁ ବାହାରିଚି ଇନ୍‌କ୍ୱାଏରି କରି । ସାଙ୍ଗରେ ଓଭରସିୟର୍, ବି. ଡି. ଓ. ଚପରାସି ଆଦି ନେଇ । ଏ ଥରର

Digitized by srujanika@gmail.com

ଅଭିଯୋଗ ହେଉଛି, ବନ୍ଧରେ ମୋଟେ ମାଟି ପଡ଼ି ନାହିଁ । ଯେଉଁ ଗାଡ଼ି ସବୁ କେତେ ଆଗରୁ ମାପ ହୋଇ ସରିଛି ଓ ତା'ର ଟଙ୍କା ପାଇ ଯାଇଛନ୍ତି, ପୁଣି ସେହି ଗାଡ଼ଗୁଡ଼ିକୁ ଟିକିଏ ଟିକିଏ ଚେଞ୍ଚି ଦେଇ ନୂଆ କରି ମାପ କରାଇ ପ୍ରାୟ ଷାଠିଏ ହଜାର ଟଙ୍କା ଆତ୍ମସାତ୍ କରିଛନ୍ତି ଅନ୍ୟ ଦଳର ଲୋକେ । ସେ ଟଙ୍କାରେ ଅମୁକର ନୂଆ ଘର କୋଠାଘର ହୋଇଛି, ତମୁକର ପିଣ୍ଡା ପକା ହୋଇଛି ଇତ୍ୟାଦି ।

ସଜବାଜ ହୋଇ ବାହାରୁ ବାହାରୁ ବାଜିଲା ପ୍ରାୟ ତିନିଟା । ୧୨ ମାଇଲ ରାସ୍ତା ଯିବାକୁ ହେବ ମଠରରେ । ତା'ପରେ ବିଲ ମଝି ଦେଇ ଚାଲିବାକୁ ହେବ ୪ ମାଇଲ୍ । ମଠରରୁ ଓହ୍ଲାଇ ଆମେ ବାହାରିଲୁ ବେଳକୁ ସୂର୍ଯ୍ୟ ଗୋରୁଖିଆ ପର୍ବତଚୂଡ଼ା ଉପରକୁ ଗଡ଼ିବାକୁ ଆରମ୍ଭ କଲେଣି ।

ଯେଉଁଠି ଆମ ମଠର ରହିବା କଥା ସେଠି ଅପେକ୍ଷା କରି ରହିଥିଲେ ଛନ୍ଦ ମହାନ୍ତ, ଯିଏ କି ଏ ଇନ୍‌କ୍ୱାଏରି କରାଇଛନ୍ତି । ତା'ଙ୍କ ସହିତ ଥିଲେ ପ୍ରାୟ ପଚାଶ ସତର ଲୋକ । ଆମେ ପହଞ୍ଚିବା ମାତ୍ରକେ ଆଭୂମିନମସ୍କାର କରି ହାତ ଯୋଡ଼ି ସମସ୍ତେ ଛିଡ଼ା ହେଲେ ।

ବାହାରିଲୁ, ଶ୍ରୀ ଛନ୍ଦ ମହାନ୍ତ ଓ ତାଙ୍କର ଲୋକେ ଆଗେ ଆଗେ ଚାଲିଲେ ବାଟ ଦେଖାଇ । ବିଲ ହିଡ଼େ ହିଡ଼େ ଆମେ ଚାଲିଚୁ । ଦୁଇ କଡ଼ରେ ଧାନ ବିଲ । ଧାନ ଗଛ ସବୁ ଅଣ୍ଟାଏ ଉଚ୍ଚର ହେଲେଣି । ଫୁଲ ଧରିଛି । ଚାରିଆଡ଼େ ଖାଲି ସବୁଜ । ସେ ସବୁଜିମା ମିଶିଯାଇଛି ଦୂର ଚକ୍ରବାଳର ନୀଳିମାରେ । ମଝିରେ ମଝିରେ ଗୋଟାଏ ଗୋଟାଏ ଝାଙ୍କି ଦିଶୁଛି । ସେ ଝାଙ୍କି ମଝିରେ ମଝିରେ ଅଳ୍ପ ସମୟ ପାଇଁ ଉଠି ପୁଣି ପଡ଼ି ଯାଉଛି । ତା' ତଳେ ଯେଉଁ ଜୀବ ଅଛନ୍ତି, ସେ ନିର୍ବିକାର ଭାବରେ କଅଣ କରି ଚାଲିଛନ୍ତି । ଆମ ପ୍ରତି ଭ୍ରୂକ୍ଷେପ ନାହିଁ । ବିଲରୁ ଗୋଟାଏ ଅଦ୍ଭୁତ ସୁଗନ୍ଧ ଆସୁଛି । ସେ ସୁଗନ୍ଧର ତୁଳନା ଦେବା ଅସମ୍ଭବ ।

Digitized by srujanika@gmail.com

ପଣ୍ଡିରଲ, ଉପ୍ରେ ବ ବାସନା ହୋ ।

କିଏ ଜଣେ ଉତ୍ତର ଦେଲା, ଆଜ୍ଞା ଧାନଫୁଲର ।

ଧାନଫୁଲର ଏମିତି ବାସନା ! ପଣ୍ଡିରଲ ।

ଛନ୍ଦ ମହାନ୍ତି କଥାର ଖିଅ ଧରି କହି ଚାଲିଲେ, ଆଜ୍ଞା, ଏ ବର୍ଷ ଧାନ ସବୁ ମରିଯିବ; ହେଟା ଜମି ଏଗୁଡ଼ାକ । ବନ୍ଧଟା ହୋଇଥିଲେ ମୁହାଏ ମୁହାଏ ପାଣି ପାଇଥାନ୍ତେ ବିଲଗୁଡ଼ାକ । ଦେଖନ୍ତୁ ଆଜ୍ଞା ଟିକିଏ ଦୃଷ୍ଟି ପକାନ୍ତୁ, ଧାନ ମୂଳ ସବୁ ଶୁଖି ଗଲାଣି । ହୁଗୁଳା ମାଟି ଆଜ୍ଞା, ପାଣି ଧରି ରଖିବ କାହିଁ ! ଏତେବେଳେ ଯିନା ପାଣି ଦରକାର ।...

ଆଜକୁ ୪୫ ବର୍ଷ ହେବ ଭାତ ଖାଇ ମୁଁ ମଣିଷ; କିନ୍ତୁ ଏ ପର୍ଯ୍ୟନ୍ତ ବୁଝି ପାରିଲି ନାହିଁ କେତେବେଳେ ଧାନ ଲୋଡ଼େ ପାଣି, କେଉଁବେଳେ ବା ପବନ, କେମିତି ବଢ଼େ ସେ ! କଅଣ ତା'ର ନିୟମ । କେତେ କଥା ଯେ ଅଛି ଧାନ ଗଛ ବିଷୟରେ ତା'ର ଆଦି ଅନ୍ତ ନାହିଁ ।

ଛନ୍ଦ ମହାନ୍ତି କହି ଚାଲିଛନ୍ତି; ଆଜ୍ଞା, ମୁଁ ଏ ସବୁ ଜଞ୍ଜାଳକୁ ଡରେ ନାହିଁ । ମୁଁ ଭଲ କି ମୋ ଘର ଭଲ । ପିଣ୍ଡା ବାହାରକୁ ଗୋଡ କାଢ଼େ ନାହିଁ ଆଜ୍ଞା । ହେଲେ ବନ୍ଧ ଟଙ୍କା ଏମିତି ବରବାଦ ହେଉଛି ଦେଖି ମୋ ଛାତି ଫାଟି ଯାଉଛି, ଏତେ ଅନ୍ୟାୟ ! ଓହୋ ! ଆଁ ଏଁ !!

ଦେଖ ହୋ...

ସେ ଖାଲି ପାଟିରେ କଥା କହୁ ନ ଥାଆନ୍ତି । ତାଙ୍କ ଆଖି, ମୁଣ୍ଡ, ସବୁ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ କଥା କହୁଥାଆନ୍ତି ।

ହରିହରପୁର ଗାଁରେ ପହଞ୍ଚିବାବେଳକୁ ବେଳବୁଡ଼ି ସମୟ । ଗାଁ ଭିତର ଦେଇ ଯିବାବେଳେ ଛନ୍ଦ ମହାନ୍ତି ଘର ଘର ଗୋଟାଏ

Digitized by srujanika@gmail.com

ଡ଼ାକ ଦେଇ ଯାଉଥାଆନ୍ତି, ଏ ଗଙ୍ଗା, ଏ ବାଉରି, ଏ ସପନା, ଆସ ଆସ ସବୁ ଅତି ଶୀଘ୍ର ବନ୍ଧ ଉପରକୁ । ସାହେବ ଡାକେ କଲେଣି ।

ବନ୍ଧ ଉପରକୁ ଗଲାବେଳକୁ, ସେଠି ମଧ୍ୟ ଲୋକେ ଦୁଇଦଳ ଛିଡ଼ା ହୋଇଛନ୍ତି । ଆମକୁ ଦେଖି ସମସ୍ତେ ଆଭୂମିନମସ୍କାର କଲେ ଓ ଛନ୍ଦ ମହାନ୍ତି ଆଡ଼କୁ ଚଉକି ଘୁଞ୍ଚିଲେ ।

ତା'ପରେ ଆଖି ପିଛୁଳାକେ ଗୋଟାଏ କାଣ୍ଡ ଘଟିଗଲା । କିଛି ବୁଝିଆଡ଼ୁ ନାହିଁ, ଦୁଇଟା ଢେଲା ଆସି ପଡ଼ିଲା ଛନ୍ଦ ମହାନ୍ତି ଉପରେ । ତା'ପରେ ମୋତେ ଘେରି ଉଭୟଦଳ ପେଲାପେଲି ହେଲେ । ତା ସହିତ ଗୁଳି ଖୋଲାଖୋଲି, କାହା ଈର୍ଷ୍ୟାର କାହା ସହିତ ପାପ-ପ୍ରଣୟ ଅଛି, କାହାର ଭଉଣୀ ବିବାହ ପୂର୍ବରୁ ପୁଅ ଜନ୍ମ କରିଛି, କିଏ ଇସ୍କୁଲ ଟଙ୍କା ଖାଇଯାଇଛି, କିଏ ପଞ୍ଚାୟତ ଧାନଗୋଲାରୁ ଧାନ ବୋହିନେଇ ଯାଇଛି, କିଏ ପଞ୍ଚାୟତ ଟିକସ ଖାଇ ଯାଇଛି, କିଏ କେଉଁ ମକଦ୍ଦମାରେ ଗୋଟାଏ ପକ୍ଷଠାରୁ ଶହେଟଙ୍କା ଘୁଷ୍ ନେଇଛି, କିଏ ବନ୍ଧ କାମରେ ଟଙ୍କା ଚଳୁ କରି ଦେଇଛି, କିଏ ଗୋଟାଏ ଧୋବଣୀକୁ ରକ୍ଷିତା କରି ରଖିଛି, ଯାବତୀୟ କଥା । ଠେଙ୍ଗା ସବୁ ମୁଣ୍ଡ ଉପରେ ବୁଲୁଛି ।

ମୁଁ ଉପାୟ ନ ପାଇ ପ୍ରାଣଭୟରେ ସମସ୍ତଙ୍କୁ ବୁଝାଇବାକୁ ଚେଷ୍ଟା କରୁଥାଏ । ଜଣେ ଡେପୁଟି ଏମିତି ଏକ ଘଟଣାରେ ପ୍ରାଣ ଦେଇଛନ୍ତି, ଲୋକେ ତାଙ୍କୁ ମାରି ହାଡ଼ରେ ପୋତି ଦେଇଛନ୍ତି । କଥାଟା ମନେ ପଡ଼ି ଯିବାରୁ ଛାତିରୁ ଅତଡ଼ା ଖସିପଡ଼ିଲା, ଝାଳ ବୋହିଗଲା ସାରା ଦେହରୁ ।

କୌଣସିମତେ ବାହାରିଆସିଲି । କହି ଆସିଲି ହାତ ଯୋଡ଼ି, ଆପଣମାନେ ଶାନ୍ତ ନ ହେଲେ ମୁଁ ଇନ୍‌କ୍ୱାଏରି କରିବି ନା···ହିଁ···।

Digitized by srujanika@gmail.com

ମୋ କଥା କେହି ଶୁଣିଲେ କି ନା ଜାଣେନା । ମୁଁ କିନ୍ତୁ ଗୁଡିପିଡି ହୋଇ ବାହାରି ଆସିଲି । ସେମାନେ ସେହିପରି ଯେଲିଯେଲି ହେଉ ଥାଆନ୍ତୁ ।

ମୁଁ ଚାଲି ଆସିଲି ଗାଁ ମୁଣ୍ଡକୁ । ପଚ୍ଚରି ପାଦ ଦେଶରେ ଗୋଟିଏ ଘଞ୍ଚ କୁଞ୍ଜ । ତା'ର ଭିତରେ ପଶିଗଲି ଆତ୍ମଗୋପନ କରିବାକୁ ।

ଚାରିଆଡ଼େ ତେନ୍ତୁଳି, ସାହାଡ଼ା, ବଉଳ ଆମ୍ବ ଆଦି ଗଛ ସବୁ ଲଗାଲଗି ଛନ୍ଦାଛନ୍ଦି ହୋଇ ଛିଡ଼ା ହୋଇଛନ୍ତି । ଭେଦ ଜ୍ଞାନ ନାହିଁ, ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ନୀରବ ଭାଷାରେ ଯେପରି କଥାବାର୍ତ୍ତା କହୁଛନ୍ତି, ଆଉ ମୁରୁକି ମୁରୁକି ହସୁଛନ୍ତି । ମଝିରେ ଗୋଟିଏ ପଥର ଚଟାଣର ଗୋଟିଏ ପାଖରେ କେତେଗୁଡ଼ିଏ ବେଦୀ ତିଆରି ହୋଇଛି । ପ୍ରତ୍ୟେକ ବେଦୀରେ ଗୋଟିଏ ଆବଡ଼ା ଖାବଡ଼ା ଦେଢ଼ା ମେଢ଼ା ପଥର ସିନ୍ଦୂର ଚନ୍ଦନ ଲାଗି ହେଙ୍ଗୁଳ ହୋଇ ରହିଛନ୍ତି । ଏହିପରି ଦଶଟି ବେଦୀ । ପ୍ରତ୍ୟେକ ବେଦୀ ପାଖରେ ମାଟି ତିଆରି କେତେ ହାତୀ, କେତେ ଘୋଡ଼ା, ହାତୀମାନଙ୍କ ଉପରେ ହାଉଦା ପଡ଼ିଛି, ସେ ହାଉଦାରେ ପୁଣି କେତେ କାରୁକାମ ହୋଇଛି, ହାଉଦା ଉପରେ ସିଂହାସନ । ଘୋଡ଼ାମାନଙ୍କ ମୁହଁ ଗୋଲ ଓ ଫମ୍ପା, ଗୋଡ଼-ଗୁଡ଼ିକ ମଧ୍ୟ ଗୋଲ ଓ ଫମ୍ପା; କିନ୍ତୁ ପ୍ରତ୍ୟେକଙ୍କ ଗୋଡ଼ରେ ଘଣ୍ଟି ଓ ପ୍ରତ୍ୟେକଙ୍କ ମୁଣ୍ଡରେ ସିନ୍ଦୂର ଚନ୍ଦନ ।

ଗୋଟିଏ ବୁଢ଼ା ଗୋଟିଏ ପହଁରାରେ ଢାଳାଟି ଗୋଡ଼କୁ ଥିଲା, ମୋତେ ଦେଖି ଓଳକି ହୋଇ ଦାନ୍ତ ନିକୁଟି ଛିଡ଼ା ହେଲା । ଅତି ବୁଢ଼ା; କିନ୍ତୁ ଦି ପାଟି ଦାନ୍ତ ଅଛି । ଦାନ୍ତଗୁଡ଼ିକ ହଳଦିଆ, ଆଖିରେ ନେଞ୍ଜରା, ପିନ୍ଧିଛି ଗୋଟିଏ ତେଲଚିକଟା ଗାମୁଛା । ଗାମୁଛାର ଦୁଇ

Digitized by srujanika@gmail.com

ପାଖର ଧଡ଼ ଓ ଧଡ଼କୁ ଲଗି ୨/୩ ଇଞ୍ଚ କନା ଗାମୁଛାର ବାଙ୍କା ଅଂଶ ନାହିଁ ବୋଲିଲେ ଚଳେ ।

ପଗ୍ଗରିଲି, ଇଏ୍ତ କ ଠାକୁରାଣୀ ହେବା ।

ବୁଢାଟି ଆକାଶକୁ ଚାହିଁଲା, ତା'ପରେ ଠାକୁରାଣୀମାନଙ୍କ ଆଡେ଼ ମୁହଁ କରି ଜୁହାର ହୋଇ କହିଲା, ଆଜ୍ଞା, ଦଶ ଭଉଣୀ ଏମାନେ···

ନା' କଅଣ ଏମାନଙ୍କର ?

ଆଜ୍ଞା, ଇଏତ' ହେଉଛନ୍ତି ବଡ ବାହ୍ମୁଣୀ, ତାଙ୍କ କଡ଼ରେ ତାଙ୍କ ପୁଅ···

ଏମାନଙ୍କୁ ଏପରି ଅଲଗା ହୋଇ ରଖା ହୋଇଛି କାହିଁକି ?

ଆଜ୍ଞା, ଏ ସବୁ ବାହ୍ମୁଣୀ, ଏଙ୍କ ପାଖରେ ଛେଦା ଲାଗିବ ନାହିଁ, ଛେଲି ଲାଗିବ ନାହିଁ । ଖାଲି ଅରୁଆ ପୂଜା ଏଙ୍କର । ସେଇଥିପାଇଁ ତାଙ୍କ ଆସ୍ଥାନ ଅଲଗା···

ବାହ୍ମୁଣୀ ଦେଖି ବୋଲି ଯାହାକୁ କୁହାଗଲା, ସେ ଆଉ କିଛି ନୁହେଁ ଗୋଟିଏ ପଥର ଛେଲା, ତଳକୁ ଓସାରିଆ, ଉପରକୁ ଗୋଳିଆ । ମୋଟ ପ୍ରାୟ ଇଞ୍ଚେ ହେବ, ତିନକୋଣିଆ ।

ପଗ୍ଗରିଲି, କହେ, ମୂର୍ତ୍ତି କାହିଁ ? ଏ ତ ପଥର ଛେଲକାଟାଏ ।

ବୁଢୀଟି କଉ ବାମୁଣ ବ୍ୟଥିତ ଭାବରେ ମୋତେ ଚାହିଁ ରହିଲା କିଛିକ୍ଷଣ ।

ଆଜ୍ଞା, ଦେଖନ୍ତୁ, ଏଇ ତାଙ୍କ ହାତ, ଏବି ଦେଖୁନାହାନ୍ତି ତାଙ୍କ କେଶ ମୁକୁଳା ହୋଇ ଉଡ଼ୁଛି ।

ସେ ସବୁ କିଛି ଦେଖି ପାରିଲି ନାହିଁ । କଅଣ ଗୋଟାଏ ଗାର ଅବଶ୍ୟ ଦିଶିଲା; କିନ୍ତୁ ତାକୁ ହାତ ନ କହି ଟେଗାଡ ବା ଓଗାଳ ନ କହି ପାହି କହିଲେ କିଛି କ୍ଷତି ହେବ ନାହିଁ; କିନ୍ତୁ ବୁଢା ପକ୍ଷରେ

Digitized by srujanika@gmail.com

ସେ ହାତ ଛଡ଼ା ଆଉ କିଛି ନୁହେଁ । ସେ ଯାହାକୁ ହାତ ବୋଲି କହୁଛି, ତାକୁ ଖାଲି ଆଖିରେ ଦେଖିଲେ ଚିହ୍ନିବା ଅସମ୍ଭବ । କେତେ କଳ୍ପନା କଲେ ବା ଜାଣିହେବ । ଅସମ୍ଭବ କଳ୍ପନା ଶକ୍ତି ଏମାନଙ୍କର !!...

ତା'ପରେ, ବୁଢ଼ା କହିଚାଲିଲା, ଏ ହେଉଛନ୍ତି ମଙ୍ଗଳା, ତାଙ୍କ ପାଖକୁ ଘଣ୍ଟିଆ ମଙ୍ଗଳା । ରାତିରେ ଘଣ୍ଟି ଘାଗୁଡ଼ି ପିନ୍ଧି ବୁଲି ବାହାରନ୍ତି । ଏଙ୍କ ହାବୁଡ଼ରେ ପଡ଼ିଗଲେ ରକ୍ଷା ନାହିଁ । ତା'ରେ ଅଛନ୍ତି ମା ବୁଗାଳ ଓ ତାଙ୍କ ପାଖକୁ ହରିହର ବୁଗାଳ । ଏ ଦୁ ଭଉଣୀ ଭାରି ସାଙ୍ଗ, ଏକା ସାଙ୍ଗରେ ବୁଲି ବାହାରନ୍ତି, ଏକା ସାଙ୍ଗରେ ଖାଆନ୍ତି । ଏ ଦୁ ଭଉଣୀଙ୍କ ନା' ଧରି କାଠ କାଟି ଗଲେ ବାଘ ବି ବାଟ ଛାଡ଼ି ଦେବ, ଖାଲି ଦେଖାଦେବ ସିନା କଣକି ଆସିବ ନାହିଁ । ତା'ପରେ, ଦେଖନ୍ତୁ, ପାଟମୁଣ୍ଡେଇ, ସୁନ୍ଦର ଓଉଁରା । ଏମାନଙ୍କ ବୟସ ହେଲାଣି, ଏମାନେ ଆଉ ବୁଲି ବାହାରନ୍ତି ନାହିଁ, ଖାଲି ଗାଁ'ର ଦୁର୍ଭଗ୍ୟ (ଦୁର୍ଭାଗ୍ୟ) ପଡ଼ିଲେ କୁହାଟ ଛାଡ଼ନ୍ତି ।

ଯେତେ ଠାକୁରାଣୀଙ୍କ ନାଁ କହିଲି ସବୁ ଗୋଟିଏ ଗୋଟିଏ ପଥର ଚେକା, କେଉଁଟି ବା ଚାରିକୋଣିଆ, କାହାର ବା ଆକାର ନିର୍ଣ୍ଣୟ କରିବା ଅସମ୍ଭବ । ସେମାନଙ୍କ ଭିତରୁ ପୁଣି, ଏ ବୁଢ଼ା ଜାଣେ, କାହାର ବୟସ ହେଲାଣି, କାହାର ବାଳ ମୁକୁଳା, କିଏ ଏକାଠି ଶୁଅନ୍ତି !!!

ଆଉ ଆଜ୍ଞା, ଇଆଡ଼େ ଦେଖନ୍ତୁ, ଏ ହେଉଛନ୍ତି ପଶ୍ଚିମା ମା । ଇଏ ଏଠି ନ ଥିଲେ ପଶ୍ଚିମ ଆଡ଼ୁ ଆସିଲେ ।

କେବେ ? ପଚାରିଲି ।

କେବେ କେଜାଣି ? ଆଜିକୁ ଶହେ କି ପାଞ୍ଚଶହ ବର୍ଷ ହେବ କିଏ କଳନା କରି ପାରିବ । ଗାଁରେ ଭଲି ମଡ଼କ ପଡ଼ିଥିଲା । ମା

Digitized by srujanika@gmail.com

ବ୍ରାହ୍ମଣୀ ସମ୍ଭାଳି ପାରିଲେ ନାହିଁ; ଏଙ୍କୁ ଡାକି ଆଣିଥିଲେ । ଲୋକେ ଦେଖିନଥନ୍ତି ଆଜ୍ଞା, ସବୁ ଅଧରେ, ଗୋଟିଏ ବଡ଼ ଆଲୁଅ ପଶ୍ଚିମ ଆଡ଼ୁ ମାଡ଼ି ଆସୁଥାଏ, ଆଉ ଝୁଣା ଗନ୍ଧ ଭାସି ଆସୁଥାଏ । ସେଇ-ଦିନୁ ସେ ଏଠି ରହି ଯାଇଛନ୍ତି । ଆଉ ଯାଇ ନାହାନ୍ତି ।

ବନ୍ଧ ଉପରୁ କୋଳାହଳ ଭାସି ଆସୁଥାଏ । ମଝିରେ ମଝିରେ ଗୋଟାଏ ଦଳ ଠେଲି ନେଉଥାଏ ଆଉ ଗୋଟାଏ ଦଳକୁ ଓଥାଡ଼ାଏ ବାଟ ଓ ପୁଣି ସେ ଦଳ ଆର ଦଳକୁ ଘଉଡ଼ାଇ ଦେଉଥାଏ ।

ଆଉ ଦେଖନ୍ତୁ ଆଜ୍ଞା; ଏ ହେଉଛନ୍ତି ଭଉରେଇ । ଏଙ୍କର ମାନ୍ତି ନ ହେଲେ ଘର ଚଳେ ନାହିଁ; କଣ୍ଟି ନ ହେଲେ ଶୁଖୁଆ ଟିକିଏ ଦରକାର । ଇଏ ଗାଁ ଗାଁ ବୁଲନ୍ତି ନଈତ ଗଡ଼ରେ, ଆଉ ଦୂର କରନ୍ତି । ଇଏ ହେଉଛନ୍ତି, ଦର୍ଶନଦେଈ ବୁଢ଼ୀ ମା । ସବା ବଡ଼ ଭଉଣୀ ଏ । ତାଙ୍କ ଆସ୍ଥାନ ଦେଖନ୍ତୁ ସବା ଶେଷରେ । ଏ ଆସ୍ଥାନ ସେ ଜଗି ରହିଥାଆନ୍ତି । ତାଙ୍କ ପାଖରେ ଦେଖନ୍ତୁ ଖୁଣ୍ଟ ପୋତା ହୋଇ ରହିଛି । ଏ ଅନ୍ୟ ଦେବୀ କେହି ଆସିଲେ ବୁଢ଼ୀମା ସେ ଖୁଣ୍ଟ ପାର କରି ଦିଅନ୍ତି ନାହିଁ । ବାଟ ଓଗାଳନ୍ତି । "କିଏ ତୁମେ ? କାହିଁକି ଆସିଛ ?" ପଚାରି ତାଙ୍କ ହାଲ୍ ଚାଲ୍ ବୁଝି ବିଦା କରି ଦିଅନ୍ତି ।

କାହିଁକି ? ପଚାରିଲି ।

ଆଜ୍ଞା, କେତେ ରକମର ଦେବ ଦେବୀ ବୁଲୁଛନ୍ତି ଚାରିଆଡ଼େ । କିଏ ତା ଭିତରେ ଭଲ; କିଏ ବା ଓଲଟା, ଝାଡ଼ାବାନ୍ତି କରନ୍ତି, କିଏ ବା ଗାଁରେ ପଶି ଜର ଲଗାଇ ଦିଅନ୍ତି । ବୁଢ଼ୀମା ସେ ସଭିଙ୍କି ଛାଡ଼ନ୍ତି ନାହିଁ ଗାଁ ଭିତରକୁ । ଯଦି ବନ୍ଧୁଆ କେହି ଆସନ୍ତି ତେବେ ବୁଢ଼ୀମା ତାଙ୍କୁ ଭୋଗରାଗ ଦେଇ ବୁଝାଇ ଶୁଝାଇ ବିଦା କରି ଦିଅନ୍ତି । କୌଣସି ବିପଦ ଗାଁକୁ ଆସିବାରେ ୮/୧୦ ଦିନ ଆଗରୁ

Digitized by srujanika@gmail.com

ଏ ଗାଁ ଗାଁ ବୁଲି କୁହାଟନ୍ତି "ଏ ଘରବାଲା ହୁସିଆର ରହ"। ଖାଲି ଏତିକି କହନ୍ତି ।

ତୁମେ ଶୁଣିଛ ? ପଚାରିଲି ।

ହଁ ଆଜ୍ଞା, ତେବେ ଆଜିକାଲି ଅନେକ ସେ ଡାକ ଶୁଣିପାରୁ ନାହାନ୍ତି । ଲୋକମାନଙ୍କ ଭିତରେ ହିଂସା, ଲୋଭ ବଢ଼ି ଚାଲିଛି ନା, ଆଉ ସେ ଡ଼ାକ ଶୁଣିପାରୁ ନାହାନ୍ତି ।

ତୁମ ବୟସ କେତେ ? ପଚାରିଲି ।

ପାଞ୍ଚକୋଡ଼ି ।

ତୁମେ ଏଠି କଅଣ କର ?

ମୋ ଘର ଏଇଠି ଆଜ୍ଞା, ମୁଁ ମା'ମାନଙ୍କର ଅସ୍ଥାନ ମ୍ରାଜନା (ମାର୍ଜନା) କରେ ।

ଚାରିଆଡ଼ ସେତେବେଳକୁ ଅନ୍ଧାର ହୋଇଗଲାଣି । ଶୀତଦିନ; କୁହୁଡ଼ି, ଧୂଆଁ ଗଛଉପରେ ଜମିଗଲାଣି । ବନ୍ଧଉପରେ କୋଳାହଳ ଥମିନାହିଁ । ସେମାନେ ସମସ୍ତେ ମୋ ଆଡ଼କୁ ଆସୁଛନ୍ତି ।

ମୁଁ ସେମାନଙ୍କୁ କହିଲି, ଆଜି କିଛି ହେବ ନାହିଁ । କାଲି ସକାଳୁ ଦେଖାଯିବ । ସମସ୍ତେ ଚାଲିଗଲେ । ମୋର ରହିବା ବନ୍ଦୋବସ୍ତ ସେଇ ବୁଢ଼ା ଘରେ ହେଲା ।

ଖାଇସାରି ମୁଁ ଶୋଇବାକୁ ଗଲି । ରାତି ପ୍ରାୟ ଅଧ ହେଲାଣି । ନିଦ ମାଡ଼ୁ ନ ଥାଏ । ଭାବୁଥାଏ, କି ଅଦ୍ଭୁତ ଏମାନଙ୍କ ବିଶ୍ୱାସ ।

ବୁଢା ପିଣ୍ଡାରେ ଶୋଇଥାଏ ।

ଡାକି ପଚାରିଲି, ହଇହୋ, ବର୍ତ୍ତମାନ ତ ଦେଖୁଛ ଗାଁ ଭିତରେ ଏତେ କଳି, ଏତେ ଅନ୍ୟାୟ ଚାଲିଛି । କାହିଁ ତୁମ ଦର୍ଶନଦେଈ ବୁଢ଼ୀ ବା ଅନ୍ୟ କେହି ତ କୁହାଟ ଛାଡ଼ୁ ନାହାନ୍ତି ।

Digitized by srujanika@gmail.com

କଏ କହନ୍ତି ଆଜ୍ଞା, ସେ କଥା । ମା'ମାନେ ଡାକୁଛନ୍ତି, କେହି ଶୁଣିପାରୁ ନାହାନ୍ତି । ସତକୁ ସମ୍ବନ୍ଧ ଫଳେ । (କଥାଟାର ଅର୍ଥ ମୁଁ ଏପର୍ଯ୍ୟନ୍ତ ବୁଝିପାରି ନାହିଁ) ତଳେ ଯେତେବେଳେ ଅନ୍ୟାୟ ଏକଦମ୍ ବଢ଼ିଯିବ ସେତେବେଳେ ସବୁ ଶେଷ । ପୁଣି ଆରମ୍ଭ ।

ତା'ପରେ ବୁଢା ହଠାତ୍ ଚମକ ପଡ଼ି ମୁହଁରେ ଆଙ୍ଗୁଳିଦେଇ କହିଲା, ଚୁପ୍, ଚୁପ୍ ହୋଇ ଶୁଣନ୍ତୁ, ମା ପଶ୍ଚିମା କୁହାଟୁଛନ୍ତି । ବୁଢା ସାଷ୍ଟାଙ୍ଗ ପ୍ରଣିପାତ କରି ପଡ଼ି ରହିଲା । କହିଲା, ରକ୍ଷା କର ମା ଏ ଗାଁକୁ······ରକ୍ଷା କର ମା ।

ମୁଁ କିନ୍ତୁ କିଛି ଶୁଣି ପାରିଲି ନାହିଁ । ଛନ ମହାନ୍ତି ପିଣ୍ଡା ଆର ପଟେ ଶୋଇଥିଲେ, ପାଟି କରିଲେ, କାହିଁକି ଗୋଟେ ମିଛରେ ବକର ବକର ହେଉଚୁ ? ସାହାବଙ୍କୁ ଶୋଇଦେଉ ନାହୁଁ । ଠାକୁରାଣୀଙ୍କ କୁହାଟ ଶୁଣୁଛି ଇସ୍ସ୍······ହ୍ୟାପ ।

ମୁଁ କିନ୍ତୁ ଭାବୁଥାଏ, "The fear of God is the beginning of knowledge" କଥାର ତାତ୍ପର୍ଯ୍ୟ ।



Digitized by srujanika@gmail.com

# ଧ୍ୟାନ

ମଣିଷର ବୋଧହୁଏ ଦୁଇଟି ମନ ଅଛି । ଗୋଟିଏ ଦେହଜମନ ଓ ଅନ୍ୟଟି ଦେହାଶ୍ରିତ ମନ । ଦେହଜମନ ଦେହକୁ ନେଇ ମାତିଥାଏ; ଧନ, ଜନ, ମାନ, ପ୍ରତିପତ୍ତି, ସୁଖ, ସମ୍ଭୋଗ ପଛରେ ଦୌଡ଼ିଥାଏ ଓ ସେଥିପାଇଁ କେତେ ଲୋଭ, ହିଂସା, ଛଳନା, ଜାଲ୍ ଜୁଆଚୋରିର ଆଶ୍ରୟ ନିଏ । ସେତେବେଳେ ତା'ର ଦେହାଶ୍ରିତ ମନ ସେସବୁ ଭିତରେ କେଉଁଠି ଲୁଚିଯାଏ ସତ ତଥାପି ମଝିରେ ମଝିରେ ଏ ଦେହ ଗୁହା ଭେଦ କରି ସର୍ବତ୍ର ପରିବ୍ୟାପ୍ତ, ସର୍ବତ୍ର ଯାହାର ଆଖି ବିଦ୍ୟମାନ ସେହି ମହାନ୍ ଶକ୍ତି ଆଡ଼କୁ ଟାଣି ନିଏ । ସେତେବେଳେ ମଣିଷ ନିଜର ଇନ୍ଦ୍ରିୟପରିବେଷ୍ଟିତ କ୍ଷୁଦ୍ର ସଙ୍କୀର୍ଣ୍ଣ ଗଣ୍ଡି ଛାଡି ବାହାରକୁ ଦୃଷ୍ଟି ପକାଏ, ସବୁ ତାକୁ ସୁନ୍ଦର ଦିଶେ, ଯାହାସବୁ ଅଛି ସେ ଅପୂର୍ବ ସୃଷ୍ଟି ବୋଲି ମନେ ହୁଏ । ପରମ ବୈଷ୍ଣବ ଅତିବଡ଼ ଜଗନ୍ନାଥ ଦାସ ତେଣୁ ଲେଖିଲେ—"ଉଦ୍ଧବ କେତେ ଭୁ ପ୍ରବନ୍ଧ, ତୋହର ମନ ତୋତେ ଗୁରୁ; ପୁଣି—ମନର ମୂଳେ ଏ ଜଗତ, ମନରୁ ନାହିଁ ଅନ୍ୟ ପଥ" । ଉପନିଷଦର କବି ଲେଖିଲେ— "ସର୍ବଦା ସଂଯୁକ୍ତ ତୁଲ୍ୟନାମବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷକୁ

Digitized by srujanika@gmail.com

ଆଶ୍ରୟ କରି ଅଛନ୍ତି, ସେମାନଙ୍କ ମଧ୍ୟରୁ ଗୋଟିଏ ବିଶେଷ ଆସ୍ୱାଦ-ଯୁକ୍ତ ଫଳ ଭକ୍ଷଣ କରେ ଅପରଟି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଦେହାଶ୍ରିତ ମନ ଯାହାର ଅଧିକ ପ୍ରବଳ ସେ ହୋଇନ୍ତି ପ୍ରକୃତ 'ନେତା' ଯେପରି ଗାନ୍ଧି, ଆଇନ୍‌ଷ୍ଟାଇନ୍, ଯୀଶୁଖ୍ରୀଷ୍ଟ, ବ୍ୟାସ-ଦେବ, ଚୈତନ୍ୟ, ରବୀନ୍ଦ୍ରନାଥ, ଫକୀରମୋହନ, ମିଃ ଦାସ, ଉତ୍କଳମଣି, ରାମକୃଷ୍ଣ ଇତ୍ୟାଦି । ଯାହାର ଦେହଜ ସଂକୀର୍ଣ୍ଣ ମନ ଅଧିକ ପ୍ରବଳ ସେ ହୁଏତ ନାନା ଛଳନା ବା କୂଟନୀତି (ଯାହାକୁ ଅଜ୍ଞମାନେ ରାଜନୀତି ବୋଲି ପ୍ରଶଂସା କରନ୍ତି) ଦ୍ୱାରା ନେତା ବା ସାହିତ୍ୟିକ ବା ବୈଜ୍ଞାନିକ ହୁଏ; କିନ୍ତୁ ସେ ଦେଶର ବାୟୁମଣ୍ଡଳ ଦୂଷିତ କରି ପକାଏ ଓ ଦେଶକୁ ଧ୍ୱଂସଆଡ଼କୁ ଟାଣି ନିଏ । ଯେ କୌଣସି ନେତା କେବଳ ନିଛକ ରାଜନୈତିକ ଚେତନା ଦ୍ୱାରା ଦେଶକୁ ମହାନ୍ କରିପାରେ ନାହିଁ, ଆଧ୍ୟାତ୍ମିକ ଚେତନା ନ ଥିଲେ ସେ ପ୍ରକୃତ ନେତା ନୁହେଁ ।

ଏ କଅଣ କୌଣସି ଗଳ୍ପର ବିଷୟବସ୍ତୁ ହୋଇପାରେ ? ନ ହେବ ବା କାହିଁକି ? ସାହିତ୍ୟ କଅଣ କେବଳ ଦେହଜ-ମନର ତୃପ୍ତି ଆଣିବା ପାଇଁ ? ଅଥବା କେବଳ ଦେହଜ-ମନର ତୃପ୍ତି ଯେଉଁ ସାହିତ୍ୟ ଦିଏ ସେ କଅଣ 'ସାହିତ୍ୟ' ? ଆଜି ସକାଳୁ ଭଗବାନ୍ ବାବୁଙ୍କ ମନରେ ଯେଉଁସବୁ ଭାବ ଉପୁଜିଲା ସେ କଅଣ ସାହିତ୍ୟ-ଦୃଷ୍ଟିରୁ ଗୋଟିଏ କ୍ଷୁଦ୍ର ଗଳ୍ପ ନୁହେଁ ?

ଶୀତଦିନର ଗୋଟିଏ ରମଣୀୟ ପ୍ରଭାତ । ଭଗବାନ୍ ବାବୁ ଘରର ଖଣ୍ଡେ ଯୋଡ଼ ହୋଇ ପଦାକୁ ବାହାରିଲେ । ମନଟା ତାଙ୍କର ହଠାତ୍ ଉଦାସ ହୋଇଗଲା । ପାତଳା ସୂର୍ଯ୍ୟକିରଣ ବିଛୁଡ଼ି ପଡ଼ିଛି । ସବୁଜ ଘାସ ଉପରେ ଶିଶିରବିନ୍ଦୁଗୁଡ଼ିକରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ସେଗୁଡ଼ିକୁ ଏକ ଅପୂର୍ବ ବସ୍ତୁରେ ପରିଣତ କରିଛି । କାଉ-ଗୁଡ଼ିକ କା କା ରାବ ଦେଇ ଉଡ଼ି ଯାଉଛନ୍ତି । ଦୂରରେ ଗୋଟିଏ

Digitized by srujanika@gmail.com

ଚଢ଼େଇ ଅନବରତ କହି ଚାଲିଛି କୃଷ୍ଣ କାହିଁ ଗୋ···କୃଷ୍ଣ କାହିଁ ଗୋ···ଅତି ବ୍ୟାକୁଳ ଭାବରେ । ପରବାବାଜିମାନେ ତର ତର ହୋଇ ଧାଉଁଛନ୍ତି ଡାକ ଡ଼ାକ, ଆଜ୍ଞ ଆଜ୍ଞ । ମ୍ୟୁନିସିପାଲିଟି ମଇଳା-ବୁହା ଗାଡ଼ିଟା ଚାଲିଛି କେତେ ପ୍ରକାର ଶବ୍ଦ କରି—ଘଟର ଘଡ ଘଡ କେଁ ଏଁ ଏଁ ଧଡ଼—ଘଟର ଘଡ଼ ଘଡ଼ କେଁ ଏଁ ଏଁ ଧଡ଼ । ଗୋଟିଏ ଗେଣ୍ଡା ଧୀରେ ଧୀରେ ଚାଲିଛି, କୁଆଡ଼େ କେଜାଣି ।

ଭଗବାନ୍ ବାବୁଙ୍କ ମନ ଆଉ ଘର ଭିତରେ ରହିଲା ନାହିଁ । ନିଜର ଅଜାଣତରେ ଗୋଡ ତାଙ୍କର ଆଗେଇଗଲା । ମନ ତାଙ୍କର ଟାଣୁଥାଏ ସବୁ ଦେଖିବାକୁ, ସବୁ ଶୁଣିବାକୁ । କେତେଥର ଏସବୁ ଦେଖିଛନ୍ତି, ଶୁଣିଛନ୍ତି । ଆଜି; କିନ୍ତୁ ଆଉ ଥରେ ନୂଆ କରି ଦେଖିବାକୁ ଶୁଣିବାକୁ ଇଚ୍ଛା ହେଲା ।

ବୁଲି ବୁଲି ସେ ଆସି ପହଞ୍ଚିଗଲେ କଙ୍କର ବାବୁଙ୍କ ଘର ସାମନାରେ କୌଣସି ଉଦ୍ଦେଶ୍ୟରେ ନୁହଁ, ଯଦୃଚ୍ଛାକ୍ରମେ । କଙ୍କର ବାବୁ ତାଙ୍କର ବାଲ୍ୟବନ୍ଧୁ । ଅନେକ ଦିନ ହେବ ତାଙ୍କ ସହିତ ଦେଖା ହୋଇ ନାହିଁ । ନାନା ସାଂସାରିକ ଜଞ୍ଜାଳ ଭିତରେ ପଡ଼ି କଙ୍କର ବାବୁ ଘାଣ୍ଟି ହେଉଛନ୍ତି, ଘରରୁ କଚେରି, କଚେରିରୁ ବଜାର ଦେଇ ଘର, ସେଇ ଗୁଳାରେ ତାଙ୍କର ମନ ଓ ଦେହ ଚାଲିଛି ତ ଚାଲିଛି । କିଛିଦିନ ତଳେ ତାଙ୍କର ଗୋଟିଏ ପୁଅ ମରି ଯାଇଛି, ସେ ଶୋକରୁ ସେ ଏ ପର୍ଯ୍ୟନ୍ତ ମୁକ୍ତ ହୋଇପାରି ନାହାନ୍ତି । ଭଗବାନ୍ ବାବୁ ତାଙ୍କର ଖବର ନେବା ପାଇଁ ତାଙ୍କ ଦୁଆର ମୁହଁରେ ଛିଡ଼ା ହେଲେ । କଙ୍କର ବାବୁଙ୍କ ଘର ଭିତରେ ଓ ବାହାରେ 'ଓସେଚେ-ଷ୍ଟେଲେ ନାନା ପ୍ରକାର କୋଳାହଳ । ଭଗବାନ୍ ବାବୁ ପ୍ରତ୍ୟେକ ଶବ୍ଦଟିକୁ ଅଲଗା ଭାବରେ ଶୁଣିବାକୁ ଲାଗିଲେ ।

Digitized by srujanika@gmail.com

ଘର ଭିତରେ ଶଙ୍କର ବାବୁଙ୍କ ସ୍ତ୍ରୀ ମୃତ ପୁଅର ଗୁଣ ବାଖ୍ୟାଣି କାନ୍ଦୁଛନ୍ତି—"ମୋତେ ଛାଡ଼ି ତୁ କୁଆଡେ ଗଲୁରେ ମୋ ଗୁଣମଣି, ତୋତେ ଛାଡ଼ି ମୁଁ କେମିତି ଥିବିରେ···" ହଠାତ୍ କାନ୍ଦଣା ବନ୍ଦକରି ସେ ପାଟି କରି ଚାକରାଣୀକୁ ଗାଳି ଦେବାକୁ ଲାଗିଲେ, ହୋଇଲୋ ହେମ, ତୋତେ କେତେଥର କହୁଛି ଯେ ବାସନକୁ ମାଜିବା ପରେ ଭଲ ପାଣିରେ ଧୋଇ ରଖିବୁ ? ଆଉ କଅଣ ତୋ ଗୋଡ଼ତଳେ ଘଞ୍ଚ କହୁବ ?

ହେମ ମଧ୍ୟ ପାଟି କରି କହିଲା, ରଖୁଛି ମା ରଖୁଛି, ପାଟିଖା କରୁଛ କାହିଁକି ?

ତା'ପରେ ଦୁଇଜଣ ଏକାସାଙ୍ଗରେ କଳହଦ୍ୱାରା ପରସ୍ପରକୁ ବୁଝାଇବାକୁ ଚେଷ୍ଟା କଲେ ।

ଶଙ୍କର ବାବୁଙ୍କ ବଡ ଝିଅଟି ୭ମ ଶ୍ରେଣୀ ଛାତ୍ରୀ । ସେ ଚିତ୍କାର କରି ପଢ଼ା ମୁଖସ୍ଥ କରୁଛି, ଗ୍ରୀନ୍‌ଲେଣ୍ଡର ଅଧିବାସୀମାନଙ୍କୁ ଏସ୍କିମୋ, ଏସ୍କିମୋ, ଏସ୍କିମୋ, ଏକ୍‌ସିମ୍ୱୋ, ଏକ୍‌ସିମ୍ୱୋ କହନ୍ତି, ହୁଁ···ହୁଁ···ହୁଁ ସେମାନଙ୍କୁ ବର୍ଷଯାକ ଶୀତ ସହିବାକୁ ପଡ଼େ···ବୋଉ ଦେଖିଲୁ ଭୁନାକୁ, ଚୁପ୍ କର୍ ବଦମାସ୍ ।

ଶଙ୍କର ବାବୁଙ୍କ ତିନବର୍ଷର ପୁଅଟି ମୁଣ୍ଡ ତଳକୁ କରି କାନ୍ଥ ଉପରକୁ ଗୋଡ଼ ଟେକି ଦେଇ ସମସ୍ତଙ୍କ ଦୃଷ୍ଟି ତାହା ଆଡକୁ ଆକୃଷ୍ଟ କରିବା ପାଇଁ ଚିତ୍କାର କରୁଛି ଚର୍କଚ୍ ଦେଖ ଚର୍କଚ୍ ଦେଖ···

ଦାଣ୍ଡ ଦୁଆର ମୂହଁରେ ଗୋଟିଏ ଗଞ୍ଜା କୁକୁଡ଼ା ଓ ଦୁଇଟି ମାଈ କୁକୁଡ଼ା ମଇଳାଗଦାରୁ ଖୁମ୍ପି ଖୁମ୍ପି ଆହାର ଖୋଜୁଛନ୍ତି । ମଝିରେ ମଝିରେ ଗଞ୍ଜାଟା ବେକ ଟେକି ଡ଼ାକ ଦେଉଛି, ଚକ୍ରଧର ···ଅ···ଅ ରକ୍ଷାକର । ତା'ର ଡାକରେ ଆକାଶ ଯେପରି ଫାଟି ହୋଇ ଯାଉଛି ।

Digitized by srujanika@gmail.com

ଗୋଟିଏ ମାଈ କୁକୁର ପଛରେ ପ୍ରାୟ ୪।୫ଟା ଅଣ୍ଡିରା କୁକୁର ଗୋଡ଼ାଇଛନ୍ତି । ମଝିରେ ମଝିରେ କୁଶଟି ଲଙ୍ଗୁଡ଼ ଯାକି ଦେଇ ପଛକୁ ଫେରିକରି ପଡ଼ି ସମସ୍ତଙ୍କୁ ଖେଙ୍କ ହୋଇ ଭୁକୁଚି ଓ ସାଙ୍ଗେ ସାଙ୍ଗେ ଅଣ୍ଡିରା କୁକୁରମାନଙ୍କ ଭିତରେ ଲାଗି ଯାଉଛି ଭୁମୂଳ ଯୁଦ୍ଧ। ପରସ୍ପର ଭିତରେ କାମୁଡା କାମୁଡ଼ି କରି ଭୁମୂଳ ଶବ୍ଦ ସୃଷ୍ଟି କରୁଛନ୍ତି ସେମାନେ । ଇତିମଧ୍ୟରେ କୁଶଟା ପଳାଇଛି । ଅଣ୍ଡିରା-ଗୁଡ଼ାକ ନିଜ ଭିତରେ ଝଗଡ଼ା ବନ୍ଦକରି ପୁଣି ଗୋଡ଼ାଇଛନ୍ତି ତା ପଛରେ ।

ଭଗବାନ୍ ଠାକୁରଙ୍କ ବୋଲି ଦୁଆଟି ଭାଙ୍ଗ ଭାଙ୍ଗ ଧରିଁ ସଭିଁ ହୋଇ ପଡ଼ିଲଣି ।

ଗୋଟିଏ ଭିକାରୀ ଏତେ ସକାଳୁ ଆସି ଜୁଟିଗଲଣି । ସେ ପାଟି କରି ଡ଼ାକୁଛି ମା...ଆ...ଧର୍ମ କର, ଗଣ୍ଡେ ଭିକ ଦିଅ, ଦଣ ଦୁଆର ଯିବ ଏକୋ ଦେବ କଲେ ଚଳିବ...

ଗୋଟିଏ ଜେଲେବିବାଲା ଡାକ ଡ଼ାକି ଚାଲିଗଲା, ଗରମ ସିଙ୍ଗଡ଼ା ଆଳୁଚପ୍ ପକୁଡ଼ି ରସଗୋଲା ଛେନାଗଜା...

ଦୁଇଜଣ ମାଇଲଡକାର ଛୁଟିଛନ୍ତି ଓକିଲଘରକୁ । ଜଣେ ହାତ ହଲାଇ ଅନ୍ୟ ଜଣକୁ କହୁଛି, ସର୍ବନାଶ କରିଦେବି ତାହାର, ଘର ଦୁହଁ ଭଗାରି ।

ଦୂରରେ ଗୋଟିଏ ରେଲଗାଡ଼ି ପୋଲ ପାର ହେବା ପୂର୍ବରୁ ଗିଁ ଗିଁ ଗର୍ଜନ କରି ଉଠିଲା ।

ପାଖ ଘରର ବୈଠକଖାନାରୁ ତର୍କ ଶୁଭୁଚି...ଦୁର୍ଗନ୍ଧ ପାଣି ଯୁଉପର । ତାହା ତଳୁ ଉପରକୁ ଯାଏ ନାହିଁ, ଉପରୁ ତଳକୁ ବହେ । ତପସ୍ୱୀ ସ୍ୱରଣା ଦୁଷ୍ଟ ନେଲି ବୋଲି ହାକମ ଦୁଷ୍ଟ ନଏ ନାହିଁ ଯେ ହାକମ ଶହେଟଙ୍କା ଘୁଷ୍ ନେବାରୁ ତପସ୍ୱୀ ସ୍ୱରଣା ନଏ ।

Digitized by srujanika@gmail.com

ଚପରାସୀ ଘୁଷ୍ ନେବାର ଅର୍ଥନୈତିକ କାରଣ ଥାଇପାରେ; କିନ୍ତୁ ହଜାର ହଜାର ଟଙ୍କା ପାଇ ସୁଦ୍ଧା ଯେଉଁମାନେ ଦୁର୍ନୀତିପରାୟଣ ସେମାନେ କେବଳ ଅପରାଧୀ ମନୋବୃତ୍ତି ପାଇଁ ।

...ମୁଁ କହେ,

କିଏ କିଏ ବାବୁଙ୍କ ପାଟି ଶୁଭୁଛି । ସେ ଗୀତା ପଢ଼ୁଛନ୍ତି—

...ପଶ୍ୟାମି ଦେବାଂସ୍ତବ ଦେବ ଦେହେ,
ସର୍ବାଂସ୍ତଥା ଭୂତବିଶେଷସଂଘାନ୍;
ବ୍ରହ୍ମାଣମୀଶଂ କମଳାସନସ୍ଥମ୍
ଋଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ ।
ଅନେକବାହୂଦରବକ୍ତ୍ରନେତ୍ରଂ
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍;
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ
ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପମ୍...

ଦୂରରୁ ଶୁଭୁଛି, ଆଲ୍ଲାହ୍ ଇଲାହା ଇଲ୍ଆଲ୍ଲାହ୍ ।

ଭଗବାନ୍ ବାବୁ ପ୍ରତ୍ୟେକ ଧ୍ୱନିକୁ ଶୁଣିବାକୁ ଲାଗିଲେ । ତାଙ୍କର ମନରେ ପ୍ରଶ୍ନ ଜାଗିଲା, ଏ ପ୍ରତ୍ୟେକ ଧ୍ୱନିର ଉତ୍ସ କଅଣ ଭିନ୍ନ ଭିନ୍ନ? ଉତ୍ସର ସନ୍ଧାନ କରୁ କରୁ ସେ ଏପରି ଏକ ସ୍ତରରେ ପହଞ୍ଚିଲେ ଯେଉଁଠି ମନେ ହେଲା ପ୍ରତ୍ୟେକ ଧ୍ୱନିର ଉତ୍ସ ସେଇଠି । ପ୍ରତ୍ୟେକ ଧ୍ୱନିର ଆଉ ପ୍ରତ୍ୟେକତ୍ୱ ରହିଲା ନାହିଁ, ସବୁ ଗୋଟିଏ ମିଶିଯାଇ ଏକ ଅପୂର୍ବ ସଙ୍ଗୀତ ଝଙ୍କୃତ ହେବାକୁ ଲାଗିଲା ।

ଭଗବାନ୍ ବାବୁ ମସ୍ତକ ଟେକି ଶୂନ୍ୟକୁ ଚାହିଁ ନମସ୍କାର କରି ପୁଣି ଚାଲିବାକୁ ଆରମ୍ଭ କଲେ ।

ଏ କଅଣ ଗୋଟିଏ ଗଳ୍ପ ହେଲା ?

---

Digitized by srujanika@gmail.com

# ଦୁଇଜଣ
# ତ୍ୟାଗୀଙ୍କ ଉପାଖ୍ୟାନ

**ତ୍ୟାଗ କଅଣ ?**

ଗୋଟିଏ ଗଳ୍ପ କହିବା ପାଇଁ ଆମ୍ଭମାନଙ୍କର ବହୁ ଅନୁରୋଧ ପରେ ଗୋବର୍ଦ୍ଧନ ବାବୁ ପ୍ରଶ୍ନଟି ଆମ ଉପରକୁ ଫୋପାଡ଼ ଦେଲେ ।

ଆମେ ସମସ୍ତେ ଆଶା ତ୍ୟାଗ କରି ଦୀର୍ଘ ନିଃଶ୍ୱାସ ପକାଇ ହତାଶ ଭାବରେ ଆରାମ-ଚୌକିରେ ଦେହକୁ ଲମ୍ବାଇ ଦେଇ କଡ଼ ଆଡ଼େ ବୁଲିଁ ଦାର୍ଶନିକ ନିରାସକ୍ତ ଦୃଷ୍ଟି ତାଙ୍କ ଆଡ଼େ ନିକ୍ଷେପ କଲୁ ।

ଗୋବର୍ଦ୍ଧନ ବାବୁ ଆଶ୍ୱାସନା ଦେଇ କହିଲେ, ଆରେ ନା, ନା, ଘାବଡ଼ାଅ ନାହିଁ । ନେତାମାନଙ୍କ ଭଳି ମୁଁ ତ୍ୟାଗ ବିଷୟରେ ସୁଦୀର୍ଘଗମ୍ଭୀର ବକ୍ତୃତା ଦେବାକୁ ଯାଉ ନାହିଁ କିମ୍ବା ଗବେଷଣା-ମୂଳକ ପ୍ରବନ୍ଧ ଲେଖିବାକୁ ଯାଉ ନାହିଁ । ମୁଁ ଜାଣେ ଶ୍ରେଣୀଗତ ଲୋକେ ନୈତିକତା, ଦେଶପ୍ରେମ, ସ୍ୱାର୍ଥତ୍ୟାଗ ଆଦି ବିଷୟରେ ନେତାମାନଙ୍କ ଠାରୁ ବକ୍ତୃତା ଶୁଣିଲେ ପ୍ରମାଦ ଗଣନ୍ତି । ପରନ୍ତୁ ସେ ନେତାମାନେ ହିଁ ଧୂଆଁଳି, ଦେଇରେ ବଡ ବଡ କଥା କହି ଆମକୁ ଠକେଇ ନିଜ ପାଇଁ ଯଶ, ମାନ, ପ୍ରତିପତ୍ତି, ସମ୍ଭୋଗ ବା ଅର୍ଥ କିଛି ଗୋଟାଏ ଆଦାୟ

Digitized by srujanika@gmail.com

କହିବାକୁ ଆସିଛି, ପଳା, ପଳା !! ଲୋକେ ଅବଶ୍ୟ ସବୁ ପଳାନ୍ତି ନାହିଁ, ବକ୍ତୃତା ଶୁଣନ୍ତି; କିନ୍ତୁ ଏସବୁ ନେତାମାନଙ୍କ ବିଷୟରେ ଅନ୍ତରାଳରେ କଅଣ କଥାବାର୍ତ୍ତା ହୁଅନ୍ତି ତା ତ ମୁଁ ଶୁଣିଛି । ନେତୃତ୍ୱର ମୋହ ନେତାଙ୍କୁ ଏତେ ଘାରିଥାଏ ଯେ ନିଜେ ବ୍ୟଭିଚାରୀ, ଠକ, ଜୁଆଖେଳାଳି ହେଲେ ବି ଭାଷଣରେ ନୈତିକତା, ସ୍ୱାର୍ଥତ୍ୟାଗ ଆଦି ବିଷୟରେ ତାଙ୍କ ବକ୍ତୃତା ଶୁଣି ଜନସାଧାରଣ ତାଙ୍କ ପ୍ରତି ବୋଧେ ଆକୃଷ୍ଟ ହେଲେଣି, ଏଥର ତାଙ୍କୁ ହିଁ ଭୋଟ ଦେବେ । ଜନସାଧାରଣଙ୍କ ପ୍ରକୃତ ମତ ଶୁଣି ମଧ୍ୟ ସେ ଶୁଣନ୍ତି ନାହିଁ ବା ତାଙ୍କର କେତେକ ସ୍ତାବକ ବା ତାଙ୍କଦ୍ୱାରା ପୁଷ୍ଟ କେତେକ ସ୍ୱାର୍ଥାନ୍ୱେଷୀଙ୍କ ଅଭିସନ୍ଧିମୂଳକ ପ୍ରଶଂସା ଶୁଣି ଭାବନ୍ତି ତାହାହିଁ ତାଙ୍କ ବିଷୟରେ ଜନସାଧାରଣଙ୍କ ଧାରଣା । ମୁଁ ତ୍ୟାଗ ବିଷୟରେ ବକ୍ତୃତା ଦେବାକୁ ଯାଉନାହିଁ । ମୁଁ ଜଣେ ସତ୍ୟାନ୍ୱେଷୀ ମାତ୍ର । ଜଣେ ଅଦା ବେପାରୀ । ମୁଁ ଗୋଟିଏ ନିଚ୍ଛକ ପ୍ରେମ ଗଳ୍ପ କହିବାକୁ ଯାଉଛି । କିପରି ଦୁଇଜଣ ପ୍ରେମିକ-ପ୍ରେମିକା ପରସ୍ପର ପାଇଁ ତ୍ୟାଗ ସ୍ୱୀକାର କଲେ ସେଇ କରୁଣ କାହାଣୀ କହିବି । କିନ୍ତୁ ଗଳ୍ପଟି କହିବା ପୂର୍ବରୁ କେତେଗୁଡ଼ିଏ ମୌଳିକ ପ୍ରଶ୍ନର ସମାଧାନ ନ ହେଲେ ବି ଆଲୋଚନା ଆବଶ୍ୟକ ମନେ କରେ । ପ୍ରେମରୁ ତ୍ୟାଗ ନା ତ୍ୟାଗରୁ ପ୍ରେମ ?

ଗୋବର୍ଦ୍ଧନ ବାବୁଙ୍କୁ ଆପଣମାନେ ଜାଣନ୍ତି । ଗୁଇନ୍ଦା ଭାବରେ ବିଖ୍ୟାତ; କିନ୍ତୁ ସେ ତାର୍କିକ । ଘଟଣାର ଙ୍ଖାତରୁ ସେ ସତ୍ୟର ଅନୁସନ୍ଧାନ କରନ୍ତି । ଅତି ଉପାଦେୟ ଗଳ୍ପ କହିବାରେ ଓ ଆଲୋଚନା କରିବାରେ ସେ ପଟୁ । ହେଲେ ଭାରି ଧୀରେ ଧୀରେ ଅଗ୍ରସର ହୁଅନ୍ତି । ଅନେକ ସମୟରେ ଆମେ ଧୈର୍ଯ୍ୟ ହରାଇ ତାଙ୍କୁ ଗାଳି ମଧ୍ୟ ଦେଉଁ ସେଥିପାଇଁ ।

Digitized by srujanika@gmail.com

ବାସ୍ତବ-ବାଗ୍ମ ନଈଲିଙ୍ଗପ୍ପା କହିଲେ, ଓହୋଃ, ଚୈତାଧାର ପାଇ ନା ଗାଙ୍ଗାଧାର ଟେଲ । ସେ କଥା ଆଲୋଚନା ନ କରି କରୁଣ କାହାଣୀଟି କହନ୍ତୁ । ଭଣିତା ସେତିକି ଥାଉ ।

ଗୋବର୍ଦ୍ଧନ ଧୀରେ ପାନ ଡିବାବରୁ ଗୋଟିଏ ପାନ ଉଠାଇ ସେଥି ଖୋଲି ଆସ୍ତେ ଆସ୍ତେ ଓ ଅତି ସତର୍କତା ସହିତ ଗୁଆଗୁଣ୍ଡି ଚିକ ଝାଡି ଧୀରେ ମୋଡ଼ି ମୁଖ ଗହ୍ୱରରେ ନିକ୍ଷେପ କରି ପାକୁଳି କରିବାକୁ ଲାଗିଲେ ।

ଆମେ ସମସ୍ତେ ଉତ୍କଣ୍ଠିତ ଭାବରେ ଅପେକ୍ଷା କରି ରହିଲୁ । ନଈଲିଙ୍ଗପ୍ପା କେବଳ ମଝିରେ ମଝିରେ ମୁଣ୍ଡ ହଲାଇବାକୁ ଲାଗିଲେ । ନିର୍ବିକାର ଭାବରେ ପାନ ରୋମନ୍ଥନ ଚାଲିଛି ।

ମୁଁ ଅନୁରୋଧ କରି କହିଲି, ସବୁ ପରିପାକ ନ ସୁଦ୍ଧା କାହାଣୀ ଯାଚିବାକୁ ପାରିବେ ? ନେପଥ୍ୟରୁ ହିଁ କଥା କହିବା ଉଚିତ ନୁହେଁ କି ?

କେତେଗୁଡିଏ କମଁମ ପାକୁଳି ପରେ ସେ କହିଲେ କଥାଟାକୁ ଏପରି ଏଡ଼ାଇ ଦେଲେ ଚଳିବ ନାହିଁ । ନଈଲିଙ୍ଗପ୍ପାର ମନ୍ତବ୍ୟ ଆଉ ଗୋଟିଏ ସମସ୍ୟା ଯୋଗ କଲା; କିନ୍ତୁ ମୁଁ ସିଦ୍ଧାନ୍ତେ ଯାଉ ନାହିଁ...

ଆପଣ ସିଆଡ଼େ ଯାଇ ନାହାନ୍ତି କଥଣ ମୁଁ ସିଦ୍ଧାନ୍ତେ ଯାଉ ? ଦୁର୍ଯୋଧନ ହାତ ହଲାଇ ଉତ୍କ୍ଷିପ୍ତ ଭାବରେ କହିଲା ।

ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ ଦୁର୍ଯୋଧନର ହଠାତ୍ ଆକ୍ରମଣରେ; କିନ୍ତୁ ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ସେ ସେମିତି ମଝିରେ ମଝିରେ ହଠାତ୍ ଘାଟି ଉଠେ । ଦୁର୍ଯୋଧନ ଗୋବର୍ଦ୍ଧନ ବାବୁଙ୍କ ଘରକୁ ପ୍ରାୟ ଆସନ୍ତି; କିନ୍ତୁ ତାଙ୍କ ପ୍ରତି ଆମର କାହାର

Digitized by srujanika@gmail.com

ଭଲଗଣିବ ନାହିଁ; କିନ୍ତୁ ଗୋବର୍ଦ୍ଧନ ବାବୁ ତାଙ୍କୁ ଆଦରରେ ଗ୍ରହଣ କରିଥାନ୍ତି ।

ଶାନ୍ତ ସ୍ୱରରେ କହିଲେ, ଏ ପୁଣି ଆଉ ଗୋଟିଏ ସମସ୍ୟା । ଏପରି ନାନା ସମସ୍ୟା ଯୋଗ କରିବା ଦ୍ୱାରା ମୂଳ ସମସ୍ୟାଟି ଉପେକ୍ଷିତ ହୋଇ ଯାଉଛି । ପ୍ରେମରୁ ତ୍ୟାଗ, ନା ତ୍ୟାଗରୁ ପ୍ରେମ ? ସମସ୍ୟାଟିର ଗୁରୁତ୍ୱ ବୁଝାଇବାକୁ ତା'ର ବ୍ୟାପକତ୍ୱ ବଢ଼ାଇ ଦେବାକୁ ହେବ । କେତେକ କୁହନ୍ତି ସମସ୍ତଙ୍କୁ ସନ୍ତୁଷ୍ଟ କଲେ ଭଗବାନ ସନ୍ତୁଷ୍ଟ ହୁଅନ୍ତି, ପୁଣି କେତେକ କୁହନ୍ତି ଭଗବାନଙ୍କୁ ସନ୍ତୁଷ୍ଟ କଲେ ସମସ୍ତେ ସନ୍ତୁଷ୍ଟ ହେବେ । ଏ ଦୁଇଟି ମତରୁ କେଉଁଟି ସତ୍ୟ ? ଦ୍ରୌପଦୀ ଏକା ଶ୍ରୀକୃଷ୍ଣଙ୍କୁ ସନ୍ତୁଷ୍ଟ କରି ଦୁର୍ବାସା ଓ ତାଙ୍କର ଦଶ ସହସ୍ର ଶିଷ୍ୟଙ୍କୁ ସନ୍ତୁଷ୍ଟ କରି ପାରିଥିଲେ । ଯୁଧିଷ୍ଠିର ଦୁର୍ବାସା ଓ ତାଙ୍କର ଦଶ ସହସ୍ର ଶିଷ୍ୟଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ମହା-ସଙ୍କଟରେ ପଡ଼ିଥିଲେ । କବୀର, ଚଣ୍ଡୀଦାସ, ତେଣୁ କହିଲେ, ହେ ସୁନ୍ଦର ! ମନ ଭିତରେ ତୁମ୍ଭକୁ ମନ୍ଦିରରେ ପ୍ରତିଷ୍ଠା କରିଲି ନାହିଁ, ତେଣୁ ବାହାରେ ତୁମକୁ ଖୋଜୁଛି ।

ସମସ୍ତଙ୍କୁ ସନ୍ତୁଷ୍ଟ କରିବା କଥା ତ ବୁଝାଗଲା, ମାନେ ସମସ୍ତଙ୍କ ମନ ଜାଣି ସମସ୍ତଙ୍କ ମଙ୍ଗଳ ପାଇଁ କାମ କରିବା; କିନ୍ତୁ ଭଗବାନଙ୍କୁ ସନ୍ତୁଷ୍ଟ କରିବ କିପରି ? ତାଙ୍କର ମନ ବା କେଉଁଠି ଯେ ତାକୁ ଜାଣି କାମ କରିବ ? ମୁଁ ପଚାରିଲି ।

—ଏ ପ୍ରଶ୍ନର ମାନେ, ଭଗବାନଙ୍କ ଅସ୍ତିତ୍ୱ ଅଛି କି ନା । ସେ ବିଷୟରେ ମୁଁ କିଛି କହି ପାରିବି ନାହିଁ କିମ୍ବା ମୁଁ 'ହଁ ଅଛନ୍ତି' କହିଦେଲେ ବି ତୋର ବା କାହାର ସେଥିରେ ବିଶ୍ୱାସ ହେବ ନାହିଁ । ପ୍ରତ୍ୟେକ ନିଜେ ତାଙ୍କର ଅସ୍ତିତ୍ୱ ନିଜ ଉପାୟରେ ହୃଦୟଙ୍ଗମ ନ କଲେ, ଅନ୍ୟ କେହି କହିଦେଲେ ଚଳିବ ନାହିଁ,

Digitized by srujanika@gmail.com

ସେ ତ ଆଉ ଇତିହାସ କି ଭୂଗୋଳ ପଢ଼ା ନୁହଁ ଯେ ପଢ଼ି ଦେଲେ ଚଳିଯିବ । ଯଦି ଥାଆନ୍ତି ଛେଟେକ ଏଥିରେ ଆଉ ଯେତେକ କଅଣ ଯେ ସମସ୍ତଙ୍କର ପ୍ରତ୍ୟେକ ମନ ଓ ସମୁହ ମନ ତାଙ୍କର ମନ । ସେ ଯାହା ହେଉ, ଭଗବାନଙ୍କୁ ସନ୍ତୁଷ୍ଟ କରିବା ମାନେ ହେଉଛି, ସମସ୍ତ ପରିବ୍ୟାପ୍ତ ଧୂଳିକଣା ବା ଜଳକଣ ରୋଗର ଜୀବାଣୁଠାରୁ ଆରମ୍ଭ କରି ଗ୍ରହ ସୂର୍ଯ୍ୟ ତାରା ବା ପ୍ରତ୍ୟେକ ଜୀବ ପର୍ଯ୍ୟନ୍ତ ସମସ୍ତଙ୍କ ଭିତରେ ଯେଉଁ ଶକ୍ତି ନିହିତ, ଯେଉଁ ଶକ୍ତିରୁ ହିଁ ପ୍ରତ୍ୟେକ ବସ୍ତୁ ବା ଜୀବ – ଜୀବ ଓ ବସ୍ତୁ ମଧ୍ୟରେ ତଫାତ୍‌କୁ ଅନେକେ ଆପେକ୍ଷିକ ବୁଝନ୍ତି—ସେଇ ଶକ୍ତିକୁ ହୃଦୟଙ୍ଗମ କରିବା । ସେପରି ହୃଦୟଙ୍ଗମ ହେଲାପରେ କୌଣସି ଲୋକ ଅନ୍ୟଙ୍କୁ ଭୟ ବା ଘୃଣା କରେ ନାହିଁ । ତେଣୁ ସମସ୍ତେ ତା ପ୍ରତି ସନ୍ତୁଷ୍ଟ ହୁଅନ୍ତି । କିନ୍ତୁ ଯିଏ ସେପରି ଉପଲବ୍ଧ ନ କରି ମଧ୍ୟ, ଅର୍ଥାତ୍ ସତ୍ୟର ସନ୍ଧାନ ନ ପାଇ ମଧ୍ୟ, ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରେ ତଦ୍ଦ୍ୱାରା ତାହାର ନିଜର ପ୍ରତିପତ୍ତି ବଢ଼ାଇବାର ପ୍ରବୃତ୍ତି କେବଳ ବଢ଼େ । ସବୁ କଥାରେ ସେ ନିଜର ଗରିମା ଦେଖାଇବାକୁ ଯାଏ । ସେ ଖୋଜିଥାଏ ଜନମତକୁ । ଜନମତ ତାକୁ ଛଳନା କରେ, ଭୁଆ ବୁଲାଏ । ସିଏ ମଧ୍ୟ ଜନମତକୁ ତା' ସପକ୍ଷରେ ସର୍ବଦା ରଖିବାକୁ ନାନା ମିଥ୍ୟାର ଆଶ୍ରୟ ନିଏ; କିନ୍ତୁ ଯିଏ ସତ୍ୟର ସନ୍ଧାନ ପାଇଛି ସିଏ ଜନମତକୁ ଚଳାଏ, ଜନ ଜାଗରଣ ଆଣେ । ଏଇଠି ଗାନ୍ଧି ଓ ଅନ୍ୟମାନଙ୍କ ମଧ୍ୟରେ ତଫାତ୍ । ଅନେକେ କହିଛନ୍ତି ଏବଂ କହୁଛନ୍ତି ଗାନ୍ଧିଙ୍କର ରାଜନୈତିକ ବୁଦ୍ଧି ନ ଥିଲା; କିନ୍ତୁ ରାଜନୀତିକୁ ସେ ଯେଉଁ ସତ୍ୟ ଦୃଷ୍ଟିରୁ ଦେଖିଛନ୍ତି ସେ ଦୃଷ୍ଟି ଅନ୍ୟ କାହାରି ନାହିଁ ବୋଲି ମତ ପ୍ରକାଶ ପାଉଛି । ମିଥ୍ୟା ଦ୍ୱାରା କ୍ଷଣିକ ସୁବିଧା ହାସଲ କରିବାର ରାଜନୀତିକୁ ତେଣୁ ସେ ତ୍ୟାଗ କରିଥିଲେ, କାରଣ ମହାନ୍ ସତ୍ୟର ପରିଚୟ ସେ ପାଇଥିଲେ । ଚୈତନ୍ୟ, ଯୀଶୁଖ୍ରୀଷ୍ଟ ଆଦି ମଧ୍ୟ ସେମିତି ।

Digitized by srujanika@gmail.com

କିନ୍ତୁ ଏହା ସହିତ ତୁମର ମୂଳ ସମସ୍ୟାଟିର ସମ୍ବନ୍ଧ କେଉଁଠି ଅଛି ? ମୁଁ ପଚାରିଲି ।

—ବାଃ । ତ୍ୟାଗ ଯିଏ କରିଛି ଯିଏ କଅଣ ପ୍ରେମ ନିଶ୍ଚୟ ପାଇଛି ? ହୁଏତ ସେ ତ୍ୟାଗ କରିଛି ନିଜର ପ୍ରତିଷ୍ଠା ପାଇଁ । ସେ କହି ବୁଲୁଛି ମୁଁ ଏମିତି ଏମିତି ତ୍ୟାଗ କରିଛି ମୋତେ ପ୍ରତିଷ୍ଠା ଦିଅ, ମୋତେ ସୁଖ ଦିଅ । ସେତିକ ନ ପାଇଲେ ସେ ରାଗୁଛି, ଅନ୍ୟମାନଙ୍କୁ ଗାଳି ଦେଉଛି, ନିର୍ବୋଧ ବୋଲି ଭାବୁଛି କିମ୍ବା ହୁଏତ ସେ ଯେତେବେଳେ ତ୍ୟାଗ କରିଥିଲା ସେତେବେଳେ କ୍ଷଣିକ ଉତ୍ତେଜନା ବଶତଃ କରିଥିଲା ବା ପ୍ରେମରୁ କି କରିଥିଲା । ହୁଏତ ସେହି କ୍ଷଣିକ ଉତ୍ତେଜନାକୁ ଭୁଲ୍‌ରେ ସେ ପ୍ରେମ ବୋଲି ଧରି ନେଇଥିଲା । ଧରି ନିଆଯାଉ ସେ ପ୍ରେମରୁ କି କରିଥିଲା; କିନ୍ତୁ ସେ ତ୍ୟାଗକୁ ସେ ଯେତେବେଳେ ଦୁଃଖ ମନୋଭାବର ଦାବୀର କାରଣରୂପେ ନେଥାଇଲା, ସେଇ ତ୍ୟାଗ ପ୍ରେମର କାରଣ ନ ହୋଇ ହେଲା କ୍ରୋଧ ଓ ଘୃଣାର କାରଣ । ସମସ୍ତେ ଜାଣନ୍ତି ଯେ ଘରଟିଏ ଠିଆ କରିବାକୁ ଗଲେ ମୂଳଦୁଆ ଶକ୍ତ କରି ଗଢ଼ିବାକୁ ହେବ । ଏହା ଗୋଟାଏ ସତ୍ୟ; କିନ୍ତୁ ଇଏ ଠୁଁ ଆଜି ଗୋଟାଏ ବଡ଼ ସତ୍ୟ ହେଉଛି ଯେ ଭୂମିକମ୍ପ ହେଲେ ସେ ଘର ବି ରହିବ ନାହିଁ କି ମୂଳଦୁଆ ବି ରହିବ ନାହିଁ । ସେ ସତ୍ୟ କଠୋର ହେଲେ ବି ତାକୁ ଉପଲବ୍ଧି କଲେ ଶାନ୍ତି ଆସିବ; କିନ୍ତୁ କ୍ଷୁଦ୍ର ସତ୍ୟଟି ଦେବ ଭୟ, ଦୁଃଖ ଓ ଜଟିଳତା । ସେ ବଡ଼ ସତ୍ୟଟି ଦେବ ନିରାସକ୍ତତା, କ୍ଷୁଦ୍ର ସତ୍ୟଟି ନିଜକୁ ଆଉ ଆବଦ୍ଧ କରି ରଖିବ ନାହିଁ ।

ନିଜଲିଙ୍ଗପ୍ପା କହିଲେ, ଆମେ ଏବେ ଆଲୋଚନା ଶୁଣିବାକୁ ବା କରିବାକୁ ପ୍ରସ୍ତୁତ ନୋହୁଁ । କାହାଣୀଟି କହିବାକୁ ଆରମ୍ଭ କରନ୍ତୁ ।

Digitized by srujanika@gmail.com

ଗୋବର୍ଦ୍ଧନ କହିଲେ, ଓଃ ହୋ, ଗୋଟିଏ କରୁଣ କାହାଣୀ ଶୁଣି ଆଖିରୁ ଦୁଇବୁନ୍ଦା ଲୁହ ଗଡ଼ାଇ ଦୀର୍ଘ ନିଶ୍ୱାସ ପକାଇ ପାରିଲେ ନିଜକୁ ଖୁବ୍ ଦୟାଳୁ, ପରଦୁଃଖ କାତର ଜାଣି ତୃପ୍ତି ଲାଭ କରିବାକୁ ଚାହଁ ? ସତ୍ୟର ସନ୍ଧାନ କରିବାକୁ ଚାହଁନା ? ଦେଖୁଚି ତୁମେମାନେ ସାହିତ୍ୟକୁ ସେଣ୍ଟିକରେ ସୀମିତ କରିବାକୁ ଚାହଁ । ହଉ ତେବେ ଶୁଣ । ଆଚ୍ଛା, ରମକାନ୍ତକୁ ତୁମେମାନେ ଜାଣ ବୋଧହୁଏ । ଶୁଣ—

ଆରେ ରାମ୍ ରାମ୍ ! ଆମେ ସମସ୍ତେ ହତାଶ ଭାବରେ କହି ଉଠିଲୁ, ସେତ ଦରବୁଢ଼ା, ପୁଣି ବିବାହିତ ଓ ତା ସାଙ୍ଗକୁ ପାଞ୍ଚ-ଗୋଟି ପୁଅଝିଅର ବାପ ! ଆପଣ ତାଙ୍କର ପ୍ରେମ ବିଷୟରେ କହିବେ ! ଏତେ ଭଣିତା ପରେ ଶେଷରେ ଏଇୟା !!

ତା ମାନେ, ତୁମେମାନେ ଦରବୁଢ଼ା ବା ବୁଢ଼ାମାନଙ୍କର ବାତ୍ସଲ୍ୟପ୍ରେମ, ଈଶ୍ୱରପ୍ରେମ, ଦେଶପ୍ରେମ ଆଦି ପ୍ରେମକଥା ଶୁଣିବାକୁ ରାଜି; କିନ୍ତୁ ସେମାନଙ୍କର ନାରୀପ୍ରେମ କଥା ଶୁଣିବା ମାତ୍ରେ ଘୃଣାରେ ନାକ ଟେକିବ । କାହିଁକି ନା ସେଥିରେ ମାଦକତା ନାହିଁ, କାହିଁକି ନା ତା କାମଜ ନୁହେଁ !

ହେଲା ତ କଅଣ ହେଲା ? ଦୁର୍ଯ୍ୟୋଧନ ଉତ୍‌କ୍ଷିପ୍ତ ଭାବରେ କହିଲା ।

ନା ହବ ଆଉ କଅଣ ! ମୁଁ ତ ସେଇଥିପାଇଁ କହୁଥିଲି ଯେ ତ୍ୟାଗ ଯେ କେବଳ ନିର୍ମଳ ପ୍ରେମରୁ ଜାତ ତା ନୁହେଁ, ଅନେକ ସମୟରେ ତାହା କାମଜ ମଧ୍ୟ । ସେପରି ତ୍ୟାଗ ସମାଜ ପକ୍ଷରେ ଅମଙ୍ଗଳଜନକ । ଯାଉ ସେ କଥା । ମୁଁ ତାଙ୍କର କଥା କହିବାକୁ ଯାଉଛି ।

ହଉଣ୍ଟିଲୁ । ପ୍ରେମ କଥା ହେଲେ ହେଲା । ଆମେ ଅଗତ୍ୟା ସମର୍ଥନ ଜଣାଇଲୁ ।

Digitized by srujanika@gmail.com

ସମବାବୁଙ୍କୁ ତ ଜାଣ, ଗୋବର୍ଦ୍ଧନ ବାବୁ ଆରମ୍ଭ କଲେ ପୁଣି—ସାଧାରଣ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକ । ଆସ୍ଥର ଲୁହା ବେଡ଼ିରେ ଆଶା ତାଙ୍କର ବନ୍ଧା । ରକ୍ତ ମାଂସର ଦେହ ବହି, ଆଶା ଆକାଂକ୍ଷା କାର ନାହିଁ ! ଅତ ସାମାଜିକ ଜୀବ ସେ । ସାଧାରଣ ନୈତିକ ଜ୍ଞାନ, ନିନ୍ଦାର ଭୟ ଓ ଦଣ୍ଡର ଭୟ ଆଦି ଥିବାରୁ ଆଶା-ଗୁଡ଼ିକୁ ଫଳବତୀ କରାଇବାର ସାହସ. ବା ଦୁଃସାହସ କହିପାର, ତାଙ୍କର ନାହିଁ, ଏବଂ କାର୍ଯ୍ୟକାରିତା ଅଭାବରୁ କେତେ ଆଶା ତାଙ୍କର କ୍ଷୀଣରୁ କ୍ଷୀଣତର ହୋଇ, ମନ୍ତ୍ରରେ ଝରଣା ମଧ୍ୟହସ ହେଲାଭଳି, ମିଳାଇ ଯାଇଛନ୍ତି ।

ଦୁର୍ଯ୍ୟୋଧନ କ୍ଷମତାସୀନ ନେତାଙ୍କ ଭଳି କହିଲା, ଆଗେ ଯୋଗ୍ୟ ହୁଅ ତା ପରେ ଇଚ୍ଛା କରିବା ପାଇଁ ଡ଼ିଜର୍ଭ ଦେନ୍···

ଡ଼ିଜାପ୍ୟାର, ଗୋବର୍ଦ୍ଧନ ବାବୁ ବାଧାଦେଇ କହିଲେ, ଆରେ ବାବୁ ! ସେ ଯୋଗ୍ୟତା କେଉଁଠି ପାଇଛି କି ନା ସେ ବିଷୟର ଯାହା ହାତରେ ସେ ତ ନିଜେ ସ୍ୱାର୍ଥାନ୍ଧ ! ତା ବିଷୟର ଉପରେ ତେଣୁ ଲୋକଙ୍କର ଆସ୍ଥା ରହୁନାହିଁ । ବିଖ୍ୟାତ ଅର୍ଥନୀତିଜ୍ଞ ଡାଲଟନ୍ ସାହେବଙ୍କ ମତରେ, ଲୋକେ ସ୍ୱତନ୍ତ୍ରତ ଆର୍ଥିକ ଅସମତାକୁ ନାପସନ୍ଦ କରନ୍ତ ନାହିଁ; କିନ୍ତୁ ଯେଉଁଠି ସେ ଅସମତା ଅସାଧୁ ଉପାୟ ଉପରେ ପ୍ରତିଷ୍ଠିତ ଏବଂ ସେ ଅସାଧୁ ଉପାୟକୁ ସରକାର ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ପ୍ରଶ୍ରୟ ଦିଅନ୍ତି ସେଇଠି ଲୋକେ ସରକାର ଉପରେ ଆସ୍ଥା ହରାନ୍ତି ଏବଂ ଫଳରେ ବିଦ୍ରୋହ ଭାବ ଲୁହଲେ ।

ଦୁର୍ଯ୍ୟୋଧନ ଅଧିକ ଉତ୍‌କ୍ଷିପ୍ତ ହୋଇ ଛିଡ଼ା ହୋଇ କହିଲା, ନା ସେ ସବୁ ମୁଁ ମାନିବାକୁ ଚାହେଁନା । ଅ.ମର ଆଇନ ଆହୁରି କଠୋର ହେବା ଦରକାର ! ସାମାନ୍ୟ ବିଦ୍ରୋହରେ ଗୁଳି କରିବା ଦରକାର···

Digitized by srujanika@gmail.com

ଗୋବର୍ଦ୍ଧନ ବାବୁ ଶାନ୍ତ ଭାବରେ କହିଲେ, ଆଇନ କଥା ଯଦି କହିଲ ତେବେ ମୋତେ ସେ ବିଷୟରେ କିଛି କହିବାକୁ ପଡ଼ୁଛି । ଆଇନର ଆବଶ୍ୟକତା କେଉଁଠି ଏବଂ ଆଇନର ସୃଷ୍ଟି କିପରି ହେଲା···

ଥାଉନା ସେ କଥା, ରାମଚନ୍ଦ୍ରଙ୍କ ପ୍ରେମ କଥା ଚାଲୁ, ମୁଁ ବାଧା ଦେଇ କହିଲି ।

ଏତେ ବ୍ୟସ୍ତ କାହିଁକି ? ଗଳ୍ପ ଚାଲୁଥିବ, ମଝିରେ ମଝିରେ ଟିକିଏ ଆଲୋଚନା ଚାଲୁଥିବ, ତେବେ ନା ଉପଭୋଗ୍ୟ ହେବ । ଭାଗବତରେ କହୁଛି, ଭାଗବତକୁ ସୁସ୍ୱାଦୁ ଫଳ ଜ୍ଞାନ କରି ତାକୁ ଅଳ୍ପ ଅଳ୍ପ କାମୁଡ଼ି ଖାଉଥିବ । ଅର୍ଥାତ୍ ଟିକିଏ କାମୁଡ଼ିଲ, ପାଟିରେ ପୂରାଇ ଚୋବାଇ ଚୋବାଇ ରସଗ୍ରହଣ କଲ, ତା ପରେ ଆଉ ଟିକିଏ କାମୁଡ଼ିଲ । ତେବେ ଯାଇ ତାହା ଶରୀର ଓ ମନ ପକ୍ଷରେ ସ୍ୱାସ୍ଥ୍ୟକର । ଆଉ, ସୁସ୍ୱାଦୁ ଫଳ ବୋଲି ଟାଉ ଟାଉ କରି ଗିଳି ପକାଇଲେ ଲାଭ ନାହିଁ । ହଁ, କହୁଥିଲି ଆଇନ କଥା । ପ୍ରତ୍ୟେକ ଜୀବ ଚାହେଁ ବଞ୍ଚି ରହିବାକୁ, ଯେତେଦିନ ଟାଣି ଓଟାରି ପାରିବ ସେତେଦିନ ନିରାପଦରେ ବଞ୍ଚିବାକୁ । ଏଇଟା ହେଲା ମୌଳିକ ପ୍ରବୃତ୍ତି । ଜୀବନର ରକ୍ଷା ସହିତ ନିଜସ୍ୱ ସମ୍ପତ୍ତିର ଅଭିବୃଦ୍ଧି ଓ ରକ୍ଷଣାବେକ୍ଷଣ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, କାରଣ ବଞ୍ଚିବାକୁ ହେଲେ ଖାଇବାକୁ ହେବ, ଘରେ ରହିବାକୁ ହେବ ଇତ୍ୟାଦି । ତେଣୁ ସମ୍ପତ୍ତିର ବୃଦ୍ଧି ଓ ନିରାପତ୍ତା ଉପରେ ଜୀବନର ବିକାଶ ଓ ନିରାପତ୍ତା ନିର୍ଭରଶୀଳ । ଏଇ ମୌଳିକ ପ୍ରବୃତ୍ତି ହିଁ ଆଇନର ଭିତ୍ତି । ବର୍ତ୍ତମାନ ମନେକର, ଗୋଟିଏ ଗ୍ରାମରେ ପ୍ରତ୍ୟେକଙ୍କର ଆୟ ମାସକୁ ଶହେ । କିଛିଦିନ ପରେ ଦେଖାଗଲା ତା ଭିତରୁ ଜଣେ ହଠାତ୍ କୌଣସି ଉପାୟରେ ତା'ର ଆୟ ବୃଦ୍ଧି କରିବାରେ ଲାଗିଛି—

Digitized by srujanika@gmail.com

ଦୁର୍ଯ୍ୟୋଧନ ରଗିଯାଇ କହିଲା, କାହାର କଅଣ ଗଲା ସେଥିରେ ? ତା'ର ବୁଦ୍ଧି ଅଛି, ବୁଦ୍ଧି ବଳରେ ସେ ତା'ର ଆୟୁ ବଢାଇଲା; ନିଜର ଅଧିକ ନିରାପତ୍ତା ହାସଲ କଲା, ଅନ୍ୟ ଲୋକ କାହିଁକି ହିଂସା କରିବ ?

ଆରେ ! କାହାର ଅଭିଶାପରୁ ହେଉ ବା କୃପାରୁ ହେଉ ବା ସୁଚିନ୍ତିତ ଯୋଜନାରୁ ହେଉ ଜୀବ ବଞ୍ଚିବାର ଯେଉଁ ମୌଳିକ ପ୍ରବୃତ୍ତିଟି ପାଇଛି ସେଇଥିରୁ ଜାତ ହୋଇଛି ହିଂସା । ହିଂସା ତେଣୁ ସେଇ ଶକ୍ତି ଦେଉ ଏବଂ ତା'କୁ ସୃଷ୍ଟିକାରି ତା'କୁ ଦମନ କରିବା ଇଚ୍ଛା ମଧ୍ୟ ତାଙ୍କର ଦେଉ । ତୁ ପଚାରୁଛୁ, ଗୋଟିଏ ଲୋକ ନିଜ ବୁଦ୍ଧି ବଳରେ ଆୟୁବୃଦ୍ଧି କରି ଚାଲିଲେ ବା ନିଜର ପ୍ରତିପତ୍ତି (ଯାହାକି ନିରାପତ୍ତାର ଆଉ ଏକ ରୂପ) ବଢ଼ାଇ ଚାଲିଲେ ଅନ୍ୟମାନେ ତାକୁ ହିଂସା କରିବେ କାହିଁକି ! ହିଂସା କରେ କାରଣ ନିଜର ନିରାପତ୍ତା ଉପରେ ଆଞ୍ଚ ଆସେ ବୋଲି । ଜଣକର ଏକକ ଚେଷ୍ଟାରେ ନିରାପତ୍ତା ବୃଦ୍ଧି ଅନ୍ୟମାନଙ୍କର ବିପଦର କାରଣ ହୁଏ ବୋଲି ବା କାରଣର ସମ୍ଭାବନା ଆଣିଦିଏ ବୋଲି !

ଏଇଟା ଗୋଟାଏ ବାଜେ କଥା ! ଆମେ ହସିଲୁ ।

ଦଯ୍ୟୁ'ଜର କଥାଟାକୁ ହସି ଉଡ଼ାଇ ଦବାର ଚେଷ୍ଟା କର ନାହିଁ, ସେଥିରେ ନିଜେ ଧରାପଡ଼ିବ ! କୌଣସି ସମାଜର ଗୋଟିଏ ଲୋକ ନିଜ ବୁଦ୍ଧି ବଳରେ ଅସ୍ୱାଭାବିକ ଭାବରେ ତା'ର ନିରାପତ୍ତା ବୃଦ୍ଧି କରିବାକୁ ଲାଗିଲେ ଅନ୍ୟ ଲୋକେ ସନ୍ଦେହ, ବାଧ୍ୟବାଧକ ମଧ୍ୟ, ଯେ ସେ ଲୋକଟି ସବୁ ସୁବିଧା ଟାଣି ନେବ ଏବଂ ସେମାନେ ଅସୁବିଧାରେ ପଡ଼ିବେ । ପରିସ୍ଥିତିରେ ଏପରି ଭୟ ଜାତ ହେବା ସ୍ୱାଭାବିକ ଯେ ନିଜର ନିରାପତ୍ତା ବୃଦ୍ଧି କରୁଥିବା ଲୋକଟି ଅନ୍ୟର

Digitized by srujanika@gmail.com

ନିରପତ୍ତାକୁ ଉପେକ୍ଷା କଲେ ଗ୍ରାହ୍ୟ କରିବ ନାହିଁ । ଏହି ରୂପରୁ ଜାତ ହିଂସା । ଇଂଲଣ୍ଡର ମିଷ୍ଟର ଜନ୍ ନିଜର ଆୟ ବୃଦ୍ଧି କରିବାକୁ ଲାଗିଲେ ଆମ ଗାଁର ଅଗାଧୁ ସେଠି ଧ୍ୱଂସ କରିବ ନାହିଁ, କିନ୍ତୁ ଅଗାଧୁ ସେଠି ଯଦି ଦେଖେ ନିଜ ସମାଜର କେହି ଅସ୍ୱାଭାବିକ ଭାବରେ ନିଜର ଧନ ବୃଦ୍ଧି କରିବାରେ ଲାଗିଛି ତେବେ ସେ ନିଜକୁ ବିପଦଗ୍ରସ୍ତ ମନେ କରିବ । ଅବଶ୍ୟ ମନୁଷ୍ୟ ସମାଜ ଆଜିକାଲି ଆଉ କୌଣସି ଦେଶର କୃତ୍ରିମ ଭୌଗୋଳିକ ସୀମା ମଧ୍ୟରେ ଆବଦ୍ଧ ହୋଇ ରହିନାହିଁ । ମନୁଷ୍ୟର ଜ୍ଞାନର ପରିସର ବୃଦ୍ଧି ସଙ୍ଗେ ସଙ୍ଗେ ମନୁଷ୍ୟସମାଜର ଆୟତନ ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି, ତା ସହିତ ହିଂସା ମଧ୍ୟ ବ୍ୟାପକ ହେଉଛି ଏବଂ ସେଥିରୁ ଜାତ ହେଉଛି ବିଶ୍ୱପ୍ରେମ, ବିଶ୍ୱଶାନ୍ତି ବିଶ୍ୱସାମ୍ୟ ଆଦି ଚିନ୍ତା ଓ ଚିନ୍ତାକୁ କାର୍ଯ୍ୟକାରୀ କରିବାର ମହାନ୍ ଚେଷ୍ଟା ! ସେ ଯାହାହେଉ, ସେତେବେଳେ ଲୋକେ ଦେଖନ୍ତି ଯେ ସେମାନଙ୍କ ମଧ୍ୟରୁ ଜଣକର ଅଧିକ ବୃଦ୍ଧି ସହିତ ତା'ର ସ୍ୱାର୍ଥ ଜଡ଼ିତ ଏବଂ ସେ ଲୋକ ତା'ର ଅଧିକ ବୁଦ୍ଧି ବଳରେ ନିଜର ଆର୍ଥିକ ବା ପ୍ରାତିପତ୍ତିକ ଅଭିବୃଦ୍ଧି ଦ୍ୱାରା ନିରାପତ୍ତା ବୃଦ୍ଧି କରିବାରେ ଲାଗିଛି ସେତେବେଳେ ସେ ଲୋକକୁ ସମସ୍ତେ ବିପଜ୍ଜନକ ବୋଲି ମନେ କରନ୍ତି । ଅନ୍ୟଦିଗରୁ ଦେଖିଲେ, ଯେଉଁ ଲୋକର ଅଧିକ ବୁଦ୍ଧି ତାର ସ୍ୱାର୍ଥ ସହିତ ଜଡ଼ିତ ନୁହେଁ ସେହିପରି ଲୋକକୁ ସମସ୍ତେ ମଙ୍ଗଳଜନକ ବୋଲି ଭାବନ୍ତି, ନେତା ବୋଲି ମାନି ନିଅନ୍ତି । ମୁଁ ବ୍ୟକ୍ତିବିଶେଷ ବିଷୟରେ କହିଲେ ହେଁ ଏହା ଦେଶ, ଜାତି, ଧର୍ମ, ଆଦର୍ଶ, ମତ ଆଦି ବିଷୟରେ ମଧ୍ୟ ପ୍ରଯୁଜ୍ୟ । ସ୍ୱାର୍ଥ ସହିତ ବୁଦ୍ଧି ଜଡ଼ିତ ହେଲେ ତାହା ସମାଜ ପକ୍ଷରେ ବିପଜ୍ଜନକ କାରଣ ସେ ଯେକୌଣସି ଉପାୟରେ ନିଜର ସମ୍ପତ୍ତି ବୃଦ୍ଧି ଏବଂ ତଦ୍ୱାରା ନିଜର ନିରାପତ୍ତା ବୃଦ୍ଧିର ଚେଷ୍ଟାକୁ

Digitized by srujanika@gmail.com

ଦଣ୍ଡମାପୂ ବୋଲି କହିବା କଥା ସମାଜ ଚିନ୍ତା କଲା । କିନ୍ତୁ ଗୋଟିଏ ସମସ୍ୟା ଏଥିରୁ ଉପୁଜିଲା । ଯଦି ତା'ଙ୍କୁ ରୋକି ଦିଆଯାଏ ତେବେ ନାନା ଦିଗରେ ବ୍ୟକ୍ତିର ବିକାଶର ଧାରାକୁ ରୋକି ଦିଆଯିବ । ଏ ସମସ୍ୟା ସମାଧାନ କରିବା ପାଇଁ ମନୁଷ୍ୟ ନାନା ପ୍ରକାର ଚେଷ୍ଟା କରିଛି ଏବଂ କରୁଛି । ନାନା ଆଧ୍ୟାତ୍ମିକ ଓ ରାଜନୈତିକ ମତବାଦ ସୃଷ୍ଟି ହୋଇଛି; କିନ୍ତୁ ଆଇନ କେବଳ ଏତିକି ମାତ୍ର ପ୍ରତି ଦୃଷ୍ଟି ଦେଲା ଯେ, କେହି ଯେପରି ଅନ୍ୟର ଧର୍ମ୍ମ ନଷ୍ଟ କରି ନିଜର ସମ୍ପତ୍ତି ନ ବଢ଼ାଏ, ଅନ୍ୟର ସମ୍ମାନ ହାନିକରି କେହି ଯେପରି ନିଜର ସମ୍ମାନ ନ ବଢ଼ାଏ, ଅନ୍ୟର ନିରାପତ୍ତାକୁ ସଙ୍କଟମୟ କରି କେହି ଯେପରି ନିଜର ନିରାପତ୍ତା ନ ବଢ଼ାଏ । ଆଇନର ପରିସର ତେଣୁ ଅତି ସଙ୍କୀର୍ଣ୍ଣ । ସେ କେବଳ ବାହାରଟା ନେଇ ବ୍ୟସ୍ତ । ଭିତରେ ଯାହା ରହିଲା ତାହା ଆଇନର ପରିସର ବାହାରେ । ତେଣୁ ସାମୂହିକ ନିରାପତ୍ତା ନିର୍ଭର କରେ ନିଜର ନୈତିକ ଜ୍ଞାନ ଉପରେ, ଆଧ୍ୟାତ୍ମିକଜ୍ଞାନ ଉପରେ, ଯାହା ଆଣିବା ପାଇଁ ଦରକାର ପ୍ରକୃତ ଶିକ୍ଷା; ଅର୍ଥକାରୀ ଶିକ୍ଷା ନୁହଁ ।

ଦୁର୍ଯ୍ୟୋଧନ ବ୍ୟଗ୍ର ଭାବରେ ପଚାରିଲେ, ତେବେ ନୈତିକତା ବୃଦ୍ଧି ପାଇଁ ଆଇନଦ୍ୱାରା ବାଧ୍ୟ କରାଯାଉ ନାହିଁ କାହିଁକି ?

ତା' ହେଲେ ତ ଶୀଘ୍ର ଅତି ସୁନ୍ଦର ସମାଜ ଗଢ଼ି ହୁଅନ୍ତା, ମୁଁ ସମର୍ଥନ କରି କହିଲି ।

ହଁ, ଅନେକେ ସେପରି ଭାବୁଛନ୍ତି । ପ୍ରକୃତରେ କହିବାକୁ ଗଲେ, ମୁଁ ଭାବେ, ଆଇନ ଦ୍ୱାରା ନୈତିକତା ବୃଦ୍ଧି କରିବାର ଚେଷ୍ଟା କେବଳ ଗୋଟାଏ ପାପ ଲୁଚା ଲୋକ ଦେଖାଣିଆ କାମ । ଗୋଟାଏ ଶସ୍ତା ଉପାୟ । ଦାୟିତ୍ୱହୀନ ଉପାୟ । କେହି ମିଛ

Digitized by srujanika@gmail.com

କରିବେ ନାହିଁ ବୋଲି ଆଇନ କରିଦିଅ, ଆଉ କେହି ଯଦି ମିଛ କହିଲା ତେବେ ମୁଣ୍ଡ କାଟି ଦିଅ ବା ଜେଲରେ ଭର୍ତ୍ତିଦିଅ । ବାମ ସଇଲ !! ଜଣକୁ ରୋଗମୁକ୍ତ କରିବାକୁ ହେଲେ ତାହାର ରୋଗକୁ ବାହାରୁ ଓ ଭିତରୁ ଦୁଇ ଦିଗରୁ ଆକ୍ରମଣ କରିବାକୁ ହେବ । କେବଳ ବାହାରୁ ଆକ୍ରମଣ କଲେ ରୋଗ ଭିତରେ ଭିତରେ ରହି ଶକ୍ତି ବଢାଇ ଚାଲିବ । ଭିତରୁ ନୈତିକତା ଆଣିବାକୁ ହେଲେ ଦରକାର ଶିକ୍ଷାର ପ୍ରସାର, ଆଦର୍ଶର ସୃଷ୍ଟି, ତ୍ୟାଗ ଇତ୍ୟାଦି । ସେ ସବୁ କରୁଛି କିଏ? ତେଣୁ ଅନେକେ ଭାବନ୍ତି ଯେ ଯେଉଁ ସରକାର ଆଇନଦ୍ୱାରା ଆଧ୍ୟାତ୍ମିକତା ଆଣିବାକୁ ଚାହେଁ ସେ ସରକାର ଏକଛତ୍ରବାଦୀ । ଆଇନର ଉତ୍ସ ଦୁଇଟି । ଉପରୁ ଜଣେ ବା କେତେକ ନିଜର ଆଦର୍ଶକୁ ସାଧାରଣ ଲୋକ ଉପରେ ଲଦି ଦିଅନ୍ତି ବା ବହୁସଂଖ୍ୟାରେ ଲୋକେ ଯାହାକୁ ଆଦର୍ଶ ମାନି ନେଇଛନ୍ତି ସେମାନଙ୍କ ବାହାରେ ଯେଉଁ ଅଳ୍ପ କେତେକ ରହିଗଲେ ସେମାନଙ୍କ ଉପରେ ସେ ଆଦର୍ଶ ଲଦି ଦିଅନ୍ତି । ଯେଉଁ ଆଇନ ଉପରୁ ଲଦା ହୁଏ ବା ଅଧିକାଂଶ ଲୋକେ ଯଦି ସେ ଆଇନର ଆଦର୍ଶର ବାହାରେ ରହିଲେ ତେବେ ସେ ଆଇନରେ ଲାଭ ତ ନାହିଁ, କେବଳ କ୍ଷତି । ସେପରି ଆଇନକୁ କେହି ମାନିବେ ନାହିଁ, ଠକିବେ, ଲୁଚିବେ ଏବଂ ବ୍ୟଭିଚାର ବହୁତ ବଢ଼ି ଚାଲିବ । ଧର ଦୁର୍ନୀତି ବିରୋଧ ଆଇନ । ଅଧିକାଂଶ ଲୋକ ଯଦି ଦୁର୍ନୀତିପରାୟଣ ହୁଅନ୍ତି ତେବେ ପ୍ରତ୍ୟେକେ ସେ ଆଇନକୁ ଠକିବାକୁ ଚେଷ୍ଟା କରିବେ । କାରଣ ମନୁଷ୍ୟର ବୁଦ୍ଧି ଥିବାରୁ ସେ ତା'ର ଇଚ୍ଛାକୁ ଯେକୌଣସି ଉପାୟରେ କାର୍ଯ୍ୟକାରୀ କରିବାକୁ ଚାହେଁ ଏବଂ ବାଧା ଅତିକ୍ରମ କରିବାକୁ ବୁଦ୍ଧି ବାହାର କରେ । ଆଇନ ଓ ବୁଦ୍ଧିର ସଂଘର୍ଷ ଯଦି ଏଇପରି ଚାଲି ରହିଲେ ତେବେ ଆଇନ ଜଟିଳରୁ ଜଟିଳତର ହେଉଥିବ ଏବଂ ବୁଦ୍ଧି

Digitized by srujanika@gmail.com

ମଧ୍ୟ ବକ୍ରୁଡରୁ ବକ୍ରୁତତର ହେଉଥିବ ! ଶେଷରେ—ଧ୍ୱଂସ !! ଅତଏବ ଆଇନ ବା ଏକଚ୍ଛତ୍ର ଶାସନ ଦ୍ୱାରା ନୈତିକତା ବୃଦ୍ଧି ହୋଇ ନ ପାରେ । ଯେକୌଣସି ସମାଜରେ ଯଦି ଅସାଧୁତା ବୃଦ୍ଧି ପାଏ ତେବେ ସରକାରର ଅଧିକାଂଶ ଧନ, ଜନ ଓ ସମୟ ବ୍ୟୟିତ ହେବ ଅସାଧୁତା ଧରିବା ପାଇଁ । ଶହେଟି ଟଙ୍କା ଖରଚ ହେଲେ ସେଥିରେ ଆହୁରି ଶହେଟି ଟଙ୍କା ଖରଚ କରିବାକୁ ପଡ଼ିବ ହିସାବ ତନଖି ଦେଖିବା ପାଇଁ । ଯେଉଁମାନେ ବା ଅସାଧୁ ଧରିବା ପାଇଁ ରହିବେ ସେମାନେ ମଧ୍ୟ ସେହି ଅସାଧୁ ସମାଜର ଲୋକେ ହୋଇ ଥିବାରୁ ସଙ୍ଗୋଟ ଉଧ୍ୱାଇପାରିବେ ନାହିଁ । ଏପରି ଅବସ୍ଥାରେ ଦେଶ ଜନମଙ୍ଗଳ ରାଷ୍ଟ୍ର ନ ହୋଇ ଡାହାଣୀ ମାରଣ ରାଷ୍ଟ୍ର ହେବ । ସମସ୍ତେ, ଏପରିକି ପ୍ରକୃତ ସାଧୁ ମଧ୍ୟ ଉପୁଡ଼ିତ ହୋଇ କାମ କରିବ, ବାଧ୍ୟବାଧକତା କାମ କରିବ । ସମସ୍ତେ ନିଜ ନିଜ ନିଶ୍ଚିନ୍ତପାଇଁ କେବଳ ଚେଷ୍ଟିତ ହେବେ, ଜନମଙ୍ଗଳ କଥା ସୁଆଡ଼େ ଯାଉ ପଛକେ ଭାରି ଭୟଙ୍କର ଅବସ୍ଥା ଉପୁଜେ !

ଗୋବର୍ଦ୍ଧନ ବାବୁ କିଛିକ୍ଷଣ ନୀରବ ରହିଲେ । ଆମେ ସମସ୍ତେ ତାଙ୍କୁ ବଲ୍‌ବଲ୍ କରି ଚାହିଁଲୁ । ସମସ୍ତେ ପ୍ରତ୍ୟେକଙ୍କୁ ଅସହାୟ ମଣି ନାର୍ଦ୍ଧ ନିଶ୍ୱାସ ପକାଇଲୁ ଆଗ୍ରହ ଲାଗିଲା । ମୁଁ କହିଲି, ଛାଡ଼ ସେ କଥା । ଆମ ରାମ ବାବୁଙ୍କ ପ୍ରେମ କେତେଦୂର ଗଲା କହ ।

ଆଚ୍ଛା ଥାଉ । ଗୋବର୍ଦ୍ଧନ ବାବୁ ଆରମ୍ଭ କଲେ । ଆମ ରାମ ବାବୁ—ବର୍ତ୍ତମାନ ସେ 'ଆମରାମବାବୁ'—ଅତି ସାଧାରଣ ଲୋକ । ଦୁର୍ବଳ ପ୍ରକୃତିର ଲୋକ । ତା'ର କାରଣ, କୌଣସି ବିଷୟରେ ସେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରନ୍ତି ନାହିଁ । ସବୁବେଳେ ଡ଼ର କାଳେ କିଛି ଭୁଲକରି ପକାଇବେ, କାଳେ ଲୋକେ ତାଙ୍କୁ ଖରାପ ଭାବିବେ । ନିଜେ ଖୁବ୍ ସାଧୁ ପ୍ରକୃତିର ହେଲେହେଁ ଲୋକ ମୁଖରୁ

Digitized by srujanika@gmail.com

ନିଜର ସାଧୁତାର ପ୍ରଶଂସା ପାଇବାର ବିଶେଷ ଆଗ୍ରହ ଥିବାରୁ ସେ ସବୁବେଳେ ବ୍ୟସ୍ତ । ବେଳେ ବେଳେ ନିଜେ ନିଜକୁହିଁ ସନ୍ଦେହ କରନ୍ତି କାଳେ ଅସାଧୁ ହୋଇଯିବେ ବୋଲି ବା ଅଜାଣତରେ ସେପରି କିଛି କରି ପକାଇଛନ୍ତି ବୋଲି । ଏପରି ଲୋକ ପର ଉପରେ ନିର୍ଭରଶୀଳ ହୋଇ ପାରନ୍ତି । ସମସ୍ତଙ୍କୁ ଖୁସି କରନ୍ତି ଏବଂ ତେଣୁ ସମସ୍ତଙ୍କ ସହିତ ବାହାରେ ଭଦ୍ର ବ୍ୟବହାର କଲେ ମଧ୍ୟ ସମସ୍ତଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧା ନ ଥାଏ । ମୁଁ କହୁନାହିଁ ଯେ ଏପରି ଲୋକମାନେ ବା ରାମ ବାବୁ ପ୍ରକୃତରେ ଖରାପ ଲୋକ । ବରଂ ଏମାନେ ଅତ୍ୟନ୍ତ ନିର୍ବିବାଦ ଲୋକ । ସମସ୍ତଙ୍କ ସହିତ ଏମାନେ ଭଦ୍ର ବ୍ୟବହାର କରନ୍ତି କିନ୍ତୁ କାହାରି ସହିତ ଘନିଷ୍ଠ ସମ୍ପର୍କ ରଖିବାକୁ ଏମାନେ ଅନିଚ୍ଛୁକ । ତେଣୁ ଏମାନେ ସମାଜର ହାନି ବି କରନ୍ତି ନାହିଁ କି ଭଲ ବି କରନ୍ତି ନାହିଁ । ପ୍ରକାରରେ ପୋକ ଅଛନ୍ତି ଗଛ ପତ୍ର ଆଦି ସହିତ ଏମିତି ମିଶି ଥିବେ ଯେ କେହି ତାହାର ଅସ୍ତିତ୍ୱ ଜାଣି ପାରିବେ ନାହିଁ, ଅଥଚ ତା କାମ ସେ କରି ଚାଲିଥିବ । ମଣିଷମାନଙ୍କ ଭିତରେ ରାମ ବାବୁ ସେମିତି ଗୋଟିଏ ପୋକ । ଅନ୍ୟର ଅସାଧୁତାକୁ ସେ ଆକ୍ରମଣ କରିଏ ଆଉ ନିଜର ସାଧୁତା ବିଷୟରେ ସେ ଜନମତ ସୃଷ୍ଟି କରିପାରିଲେ ଖୁସି । ନିର୍ବିବାଦରେ ସେ ବଞ୍ଚିରହିବାକୁ ଚାହେଁ । ନିଜର ସାଧୁତାର ପ୍ରଶଂସା ଶୁଣିଲେ ବି ତାଙ୍କୁ ଡରମାଡେ, କାଳେ କିଏ ଈର୍ଷାନ୍ୱିତ ହୋଇ ତାଙ୍କର ବିରୁଦ୍ଧାଚରଣ କରିବ !

ହଠାତ୍ ଦୁର୍ଯୋଧନ ପ୍ରଶ୍ନ କଲା, ଆଚ୍ଛା, ତେବେ, ଭଗବାନ କିଏ ଅଛନ୍ତି ?

ଆମେ ସମସ୍ତେ ଏପରି ଅବାନ୍ତର ଅଥଚ ବ୍ୟାକୁଳ ପ୍ରଶ୍ନରେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲୁ ତା ଆଡ଼େ ।

Digitized by srujanika@gmail.com

ମୁଁ ପ୍ରକାଶ୍ୟ ଭାବରେ ମନ୍ତବ୍ୟ କଲି, କିଏ ଯା ଅଛି କେଉଁ ମତେ, ତାହା ମୁଁ ଜାଣିବ କେମନ୍ତେ !

ଗୋବର୍ଦ୍ଧନ ବାବୁ କହିଲେ, ଭଗବାନ ଅଛନ୍ତି କି ନାହିଁ ସେ କଥା ମୁଁ କହି ପାରିବ ନାହିଁ, ମୁଁ ନିଜେ ତାଙ୍କ ଅସ୍ତିତ୍ୱ ଉପଲବ୍ଧି ଏପର୍ଯ୍ୟନ୍ତ କରି ନାହିଁ । ଯେଉଁମାନେ ଉପଲବ୍ଧି କରିଛନ୍ତି ବୋଲି କହୁଛନ୍ତି ସେମାନେ କୁହନ୍ତି ସେ ଅଛନ୍ତି । ଆପ୍ତବାକ୍ୟକୁ ମଧ ନିର୍ଭରଯୋଗ୍ୟ ପ୍ରମାଣ ବୋଲି ଧରାଯାଏ ତେବେ ମାନିବାକୁ ହେବ ଭଗବାନ ଅଛନ୍ତି । କିନ୍ତୁ ସେ ଜ୍ଞାନକୁ ମୁଁ କାର୍ଯ୍ୟକାରୀ ଜ୍ଞାନ ବୋଲି କହିବ ନାହିଁ । ବସ୍ତୁତଃ ଅନ୍ୟପକ୍ଷେ ତାହା ଜ୍ଞାନ ପର୍ଯ୍ୟାୟରେ ପଡ଼ି ନ ପାରେ । ସମ୍ବାଦ ମାତ୍ର । କିନ୍ତୁ ସେ କଥା ଥାଉ ।······ରାମ ବାବୁଙ୍କ ସ୍ତ୍ରୀ ରମାସୁନ୍ଦରୀ କିନ୍ତୁ ଜଣେ ବ୍ୟକ୍ତିତ୍ୱପୂର୍ଣ୍ଣ ମହିଳା । ସହଜରେ ତାଙ୍କ ପାଖରୁ କେହି ପାର ପାଇ ଆସି ପାରିବ ନାହିଁ । ରାମ ବାବୁ ମଧ ସ୍ତ୍ରୀଙ୍କୁ ଭୟ, ନା ଠିକ୍ ଭୟ ନୁହେଁ, ସମ୍ମାନ କରନ୍ତି । ସେ ବୁଝିଛନ୍ତି ଅର୍ଥ ଉପାର୍ଜନ କରିବା ସହଜ, କିନ୍ତୁ ତାକୁ ଠିକ୍ ରୂପେ ଖର୍ଚ୍ଚ କରିବା ଭାରି କଠିଣ । ତା ପାଇଁ ଦରକାର ବୁଦ୍ଧି, ଦୃଢ଼ତା, ଏବଂ ଦୂରଦୃଷ୍ଟି । ଟିକିଏ ସଙ୍କୀର୍ଣ୍ଣତା ମଧ ଦରକାର । ସେ ଦାୟିତ୍ୱ ନେବାର ରାମ ବାବୁଙ୍କ ସାହସ ନାହିଁ । ତେଣୁ 'କୃପଣ' ଆଦି ବଦନାମ ରମାସୁନ୍ଦରୀ ପାଉଛନ୍ତି, ରାମ ବାବୁ ନୁହେଁ । ମାସକର ରୋଜଗାରଟି ଆଣି ସେ ରମାସୁନ୍ଦରୀଙ୍କୁ ଧରାଇ ଦେଇ ନିଶ୍ଚିନ୍ତ । ରମାସୁନ୍ଦରୀଙ୍କ ଖରଚ କରିବା ନିୟମର ବାହାରେ ଯିବାର କାହାର କ୍ଷମତା ନାହିଁ । ରମାସୁନ୍ଦରୀ ହେଉଛନ୍ତି ଅର୍ଥବିଭାଗ ଓ ରାମ ବାବୁ ହେଉଛନ୍ତି ରାଜସ୍ୱ ବିଭାଗ । ବେଶୀ ଅର୍ଥର ପ୍ରୟୋଜନ ହେଲେ ଅର୍ଥ ବିଭାଗ ରାଜସ୍ୱ ବିଭାଗକୁ ନିର୍ଦ୍ଦେଶ ଦିଅନ୍ତି । ତା'ପରେ ରାମ ବାବୁ ପିଲାପଢ଼ାଇ ହେଉ ବା କଲକା ସମୟରେ ଅନ୍ୟ କେଉଁଠି ଚାକିରି

Digitized by srujanika@gmail.com

କରି ହେଉ ଅଧିକା ଆୟ କରିବାକୁ ବାଧ୍ୟ । ବସ୍ତୁତଃ ରାମ ବାବୁ ସକାଳ ଓଳିଟା ପିଲା ପଢାଇ ଏବଂ ଉପର ଓଳିଟା ମାର୍ଚ୍ଚେଣ୍ଟ ଦୋକାନରେ ହିସାବ ଖାତା ଓ ଚିଠି ପତ୍ର ଲେଖି ପ୍ରତ୍ୟେକ ମାସରେ ଅନ୍ତତଃ ଶହେ ଟଙ୍କା ଅଧିକା ଆଣନ୍ତି । କିନ୍ତୁ ଘରର ରୋଷେଇ କାମଠୁଁ ଆରମ୍ଭ କରି ଘରର ବାହାର କାମ ପର୍ଯ୍ୟନ୍ତ ସବୁ ବୁଝନ୍ତି ନିଜେ ରମାସୁନ୍ଦରୀ । ନିଜର ବ୍ୟକ୍ତିଗତ ଖରଚ ପାଇଁ ଦରକାର ପଡିଲେ ରାମ ବାବୁ ସ୍ତ୍ରୀଙ୍କ ପାଖରେ ଦରଖାସ୍ତ କରନ୍ତି । ମଞ୍ଜୁର ହେଲେ ପାଆନ୍ତି, ନ ହେଲେ ମନମାରି ରହନ୍ତି । ରାମ ବାବୁଙ୍କ ଗୋଟିଏ ଦୋଷ ଅଛି । ସେ ମଝିରେ ମଝିରେ ମୋଦକ ଖାଆନ୍ତି । ରମାସୁନ୍ଦରୀ ଏଥିରେ ଭାରି ବିରକ୍ତ ହୁଅନ୍ତି । ରାମ ବାବୁ ନୀରବରେ ସହ୍ୟ କରନ୍ତି ସତ, କିନ୍ତୁ ସେ ଅଭ୍ୟାସଟି ଛାଡ଼ି ପାରନ୍ତି ନାହିଁ ।

ଦୁର୍ଯ୍ୟୋଧନ ଦୀର୍ଘ ନିଶ୍ୱାସ ପକାଇ ପଚାରିଲେ—ମଣିଷ ଭିତରେ ଯେଉଁସବୁ ଅମଙ୍ଗଳକର ପ୍ରବୃତ୍ତି ଅଛି ଯିବ କିପରି ?

ଆମେ ଦୁର୍ଯ୍ୟୋଧନର ଏପରି ସବୁ ପ୍ରଶ୍ନ ଶୁଣି ଆଶ୍ଚର୍ଯ୍ୟ ହୋଇ ଯାଉଛୁ । ଗୋବର୍ଦ୍ଧନ ବାବୁ କହିଲେ, ତା ପାଇଁ ଦରକାର ସାଧନା । ଅନେକେ କହନ୍ତି ଭଗବତ କୃପା । ତା ପାଇଁ ମଧ୍ୟ ସାଧନା ଦରକାର । ସେ ଯାହା ହେଉ, ରାମ ବାବୁ ମଧ୍ୟ ଏମିତି ବ୍ୟସ୍ତ ହୁଅନ୍ତି । ସେ କହନ୍ତି ତାଙ୍କ ମନରେ କ୍ରୋଧ, ଈର୍ଷା ଆଦି ସବୁ ଚାଲିଯାଇ ସମସ୍ତଙ୍କ ପ୍ରତି ପ୍ରେମ ଜାତ ହେଉ । ତା ହୁଏନା, ତେବେ ଏ କଥା ଠିକ୍ ଇନ୍ଦ୍ରିୟ ସୁଖ ଯିଏ ଯେତେ ଖୋଜେ ସେ ସେତେ ସ୍ୱାର୍ଥାନ୍ଧ । ସ୍ୱାର୍ଥାନ୍ଧ ମଣିଷ ପ୍ରକୃତରେ ଦୁର୍ବଳଚେତା, ତାର ଯେତେ ଧନ ବା କ୍ଷମତା ଥାଉନା କାହିଁକି । ଯେଉଁ ସମାଜର ଅଧିକାଂଶ ଏପରି ସ୍ୱାର୍ଥାନ୍ଧ ସେ ସମାଜ ଦୁର୍ବଳ । ସେ ସମାଜ ସ୍ୱାଧୀନତା ଖୋଜେନା, ସ୍ୱାଧୀନତା ପାଇଲେ ବି ସମ୍ଭାଳି ପାରେନା କାରଣ

Digitized by srujanika@gmail.com

ସ୍ୱାର୍ଥପାଇଁ ନିଜ ନିଜ ଭିତରେ ଝଗଡ଼ା ବାଡ଼ଆ ବାଡ଼େଇ । ଯେଉଁ ଦେଶ ଏପରି ଦୁର୍ବଳ ତାର ବୈଦେଶିକ ନୀତି ମଧ୍ୟ ଦୁର୍ବଳ ହୋଇ-ଯାଏ, ସେ ଯେତେ ଆସ୍ଫାଳନ କରୁ ନା କାହିଁକି ! ମୋ ମତରେ ବୈଦେଶିକ ନୀତି ସ୍ୱରାଷ୍ଟ୍ର ନୀତିର ଅନ୍ୟତମ କେବଳ, ଟଙ୍କାର ଏ ପାଖ ସେ ପାଖ, ସେ କଥା ଗୁଡ଼ । ଦିନେ କଅଣ ହୋଇଛି ନା ଛୁଟି ଥିଲେ ବି ରାମ ବାବୁ କଚେରୀରୁ ବହୁତ ଜରୁରୀ କାମ ଘରେ କରି-ବାକୁ ଆଣିଥାନ୍ତି । ତାଙ୍କର ଗ୍ରନ୍ଥମାନଙ୍କର ବି ପରୀକ୍ଷା ଚାଲିଥାଏ, ତେଣୁ ପଢ଼ାଇବା ବନ୍ଦ କରି ପାରିଲେ ନାହିଁ । ଦିନ ଦଶଟା ବେଳକୁ ପଢ଼ାଇବା ସାରି ଚଞ୍ଚଳ ଗାଧୋଇବା ଖାଇବା କାମ ସାରିଦେଇ ଘର କଣରେ ବସିଗଲେ କଚେରି କାମ କରିବାକୁ ।

—ରମାସୁନ୍ଦରୀ ମଧ୍ୟ ଘର କାମରେ ବ୍ୟସ୍ତ । ଦିନ ଦୁଇଟା ବେଳକୁ ଦେଖିଲେ ସ୍ୱାମୀ ଘର୍ମାକ୍ତ କଳେବରରେ କାମରେ ଲାଗିଛନ୍ତି । ମନରୁ ତାଙ୍କର କୋହ ଉଠିଲା । ସେ ଭାବିଲେ, ନାରୀ ଜାତିଟା ସ୍ୱାର୍ଥାନ୍ଧ, ପୁରୁଷମାନଙ୍କୁ ନାକରେ ଦଉଡ଼ି ଦେଇ ଖଟାନ୍ତି ନିଜ ସ୍ୱାର୍ଥପାଇଁ । ପିଲାଗୁଡ଼ାକ ପାଟି ତୁଣ୍ଡ କରୁ ଥାଆନ୍ତି । ସନ୍ତାନଙ୍କୁ ନିର୍ଘାତ ଚେଙ୍କୁ ଦେଇ ଗାଳି ଦେଲେ, ଏଗୁଡ଼ାକଙ୍କ ଟିକିଏ ଦୟାମାୟା ନାହିଁ, ବାପା ଖଟୁଛନ୍ତି, ଟିକିଏ ଶାନ୍ତିରେ ଖଟିବାକୁ ଦେବେ ନାହିଁ ଏଗୁଡ଼ାକ, ମରି ଯାଆନ୍ତେ କି ! କିନ୍ତୁ ସେ ନିଜେ କାନ୍ଦ ପକାଇଲେ । ଦୁଇଦିନ ହେବ ତାଙ୍କର ନିଜ ଦେହ ବି ଖରାପ ଥାଏ, ସାମାନ୍ୟ ଜର ହେଉଥାଏ । ଦୁଇ ତିନ ଥର ସ୍ୱାମୀଙ୍କ ପାଖରେ ବୁଲି ସେ ସେଇଠି ଶୋଇ ପଡିଲେ । ରାମ ବାବୁଙ୍କ ସେଥିପ୍ରତି ଭ୍ରୂକ୍ଷେପ ନ ଥାଏ, ସେ କାମ କରି ଚାଲି ଥାଆନ୍ତି ।

—କାମ ଯେତେବେଳେ ମାତ୍ର ଅଧେ ସରିଛି ସେତେବେଳକୁ ସନ୍ଧ୍ୟା ଗଡ଼ି ଗଲାଣି । ରାମ ବାବୁ କାମ ଥୋଇ ଉଠିଲେ ଟିକିଏ ବୁଲି

Digitized by srujanika@gmail.com

ଆସିବାକୁ । ମୁହଁ ତାଙ୍କର ଧଳାପଡ଼ିଥିଲା । ଢୁଲୁ ଢୁଲୁ ତାଙ୍କର ଆଖିପତା ମଦେନ ପଡ଼ିଗଲା । ଗୋଟିଏ ମୋଦକ ଖାଇଦେଇ ସେ ଫେରିଲେ । ରମାସୁନ୍ଦରୀ ସେଇପରି ଶୋଇ ଥାଆନ୍ତି । ଦୁଇଦିନ ହେବ ସେ ପ୍ରାୟ ଖାଇ ନାହାନ୍ତି କହିଲେ ଚଳେ । ଶରୀର ଦୁର୍ବଳ ଲାଗୁଥାଏ । ରାମ ବାବୁ ତାଙ୍କ ଦେହରେ ଟିକିଏ ହାତ ମାରି ପୁଣି କାମରେ ମନ ଦେଲେ । ନାନା ଭାବନା ଠୁଳ ହୋଇ ଗୋଟିଏ ଦୀର୍ଘ ନିଶ୍ୱାସ ରୂପେ ବାହାରିଲା ମାତ୍ର ।

—କାମ ସାରୁ ସାରୁ ବାଜିଲା ରାତି ଦଶଟା । ରମାସୁନ୍ଦରୀ ଅଳସ ଦେହଟାକୁ ଘୋଷାରି କାମ କରୁଥାଆନ୍ତି । କାଗଜପତ୍ର ବାନ୍ଧି ଉଠି ପଡ଼ିଲାବେଳକୁ ତାଙ୍କର ମୁଣ୍ଡଟା ବୁଲାଇ ଦେଲା । ଚାରିଆଡ଼ ଅନ୍ଧାର ଦିଶିଲା ତାଙ୍କୁ । ପଡ଼ି ଯାଉ ଯାଉ ସେ ଧରି ଅଟକି ଗଲେ । ସ୍ତ୍ରୀଙ୍କୁ ପାଟିକରି ଡାକ କହିଲେ ମୁଣ୍ଡ ବୁଲାଇବା କଥା ।

—ରମାସୁନ୍ଦରୀ କାନ୍ଦ ପକାଇ କହିଲେ, ଏତେ ଖଟିଲେ ଚଳିବ ? ଟିକିଏ ଦୁଧ ତ ଖାଇବ ନାହିଁ । ତୁମ ଦେହ ଖରାପ ହେଲେ ଲାଭ କଅଣ ହେବ । ଆଜ ଟିକିଏ ଦୁଧ ଖାଅ ।

—ରାମ ବାବୁ ଦୁଧ ଖାଆନ୍ତି ନାହିଁ, କାରଣ ପିଲାଙ୍କୁ ନ ଦେଇ ନିଜେ ଖାଇବାକୁ ତାଙ୍କୁ ଲାଜମାଡ଼େ । ସେ ଆପତ୍ତି କରି କହିଲେ, ନା, ନା ତୁମେ ଖାଅ । ତୁମେ ଦୁଇଦିନ ହେଲା କିଛି ଖାଇନ । ତୁମେ ବିଛଣା ଧରିଲେ ସବୁ ତ ଅଚଳ ହୋଇଯିବ ।

—ରମାସୁନ୍ଦରୀ କହିଲେ ମୁଁ ଖାଆନ୍ତି ଯେ, କାହାର କଥାକୁ ଶୁଣନ୍ତି ନାହିଁ । କିନ୍ତୁ କବିରାଜ ପରା ମନା କରିଛି ଖାଇବାକୁ । ଦୁଧ ଖାଇଲେ କୁଆଡ଼େ ବାୟୁବୃଦ୍ଧି ହେଉଛି ।

—ରାମ ବାବୁ ବୁଝିଲେ, ସ୍ତ୍ରୀ ମିଛ କହୁଛନ୍ତି । ମନରେ ତାଙ୍କର ତୃପ୍ତି ଆସିଲା, ଦୁଃଖ ମଧ୍ୟ ହେଲା । ମୁଣ୍ଡ ବୁଲାଇବା କଥା ସ୍ତ୍ରୀଙ୍କୁ

Digitized by srujanika@gmail.com

କହି ପକାଇ ଥିବାରୁ ଅନୁତପ୍ତ ହେଲେ । ଆଉ ଦ୍ୱିଧା ନ କରି, ସ୍ତ୍ରୀଙ୍କ ପାଖରୁ ଭର୍ତ୍ସନାର ଭୟ ଫିଙ୍ଗିଦେଇ ସେ କହିଲେ, ନା ମ, ଖଟିଥିବା ଯୋଗୁଁ ମୋ ମୁଣ୍ଡ ବୁଲୁଇ ନାହିଁ ଯେ, ସତ କହୁଛି, ରାଗିବ ନାହିଁ, ଗୋଟାଏ ମୋଦକ ଖାଇ ଦେଇଛି ଆଜି ।

—ରମାସୁନ୍ଦରୀ ହସି ପକାଇଲେ । ଦୁହେଁ ହିଁ ତୃପ୍ତ ହେଲେ ଦୁହିଁଙ୍କ ତ୍ୟାଗ ଦେଖି । ଆଖି ସେମାନଙ୍କର ଛଳ ଛଳ ହୋଇଗଲା । ନିଜର ଅଜାଣତରେ ଦୁହେଁ ପାଖକୁ ପାଖ ଲାଗିଗଲେ । ଦୁହିଁଙ୍କ ଆଖି ପ୍ରେମରେ ଛଳ ଛଳ ହୋଇଗଲା ।

ନିକଳଙ୍କପ୍ରଭା ମୁଣ୍ଡ ହଲାଇ କହିଲେ, ନା ଭଲ ପ୍ରେମ କଥାଟାଏ ଏକା ! ପ୍ରେମ ପାଇଁ ତ୍ୟାଗ !!

—ହଁ, ଗୋବର୍ଦ୍ଧନ ବାବୁ କହିଲେ; କିନ୍ତୁ ନିଜେ ବଞ୍ଚିବାର ମୌଳିକ ପ୍ରବୃତ୍ତି ବିକୃତ ହୋଇ ହୁଏ ନିଜର ଗରିମା ପ୍ରଚାର କରିବାର ଇଚ୍ଛା । ମଣିଷ ସବୁ କଥାରେ କେବଳ ନିଜର ଗରିମା ପ୍ରଚାର କରିବାକୁ ଚାହେଁ, ନିଜର ମତ ଯଦି କେହି ଗ୍ରହଣ ନ କରେ ସେ ନିର୍ମମ ହୋଇ ଉଠେ । ସେ ଭୁଲିଯାଏ ଯେ ସେ ଅତି କ୍ଷୁଦ୍ର, ଭୁଲିଯାଏ ଯେ କୋଟି କୋଟି ଗ୍ରହତାରା ଯାହାର ଶକ୍ତିର କାଣିଚାଏ ପ୍ରକାଶ କରୁଛି ସେ ଶକ୍ତି ପାଖରେ ସେ ତୁଚ୍ଛ । ଏଇ କ୍ଷୁଦ୍ରତା ଉପଲବ୍ଧିରେ ହିଁ ମହତ୍ତ୍ୱ ବୃଦ୍ଧି ପାଏ । ଏ କ୍ଷୁଦ୍ରତା ଯିଏ ଯେତେ ଉପଲବ୍ଧି କରି ପାରନ୍ତି ତାହାର ପ୍ରେମ ସେତେ ବ୍ୟାପକ ଓ ଆନନ୍ଦମୟ, ଯେତେ [illegible] ମଧ୍ୟ [illegible] ମହାନ୍ ସେ କ୍ଷୁଦ୍ରତା ଯିଏ ଉପଲବ୍ଧି ନ କରିଛି ତାହାର ପ୍ରେମ, ଜ୍ଞାନ, ଧନ, ମାନ, ପ୍ରତିପତ୍ତି, ବୁଦ୍ଧି କେବଳ ଅନ୍ୟକୁ ବଞ୍ଚିତ କରି ନିଜର ସ୍ୱାର୍ଥ ସିଦ୍ଧି କରିବାରେ ଲାଗେ । କେବଳ ନିଜର ମୋହ ବୃଦ୍ଧି କରେ । ସେ ଲୋକ ନିଷ୍ଠୁର ହୁଏ । ଦେଖନା କଅଣ ହେଲା !

Digitized by srujanika@gmail.com

କଅଣ ହେଲା ? ଆମେ ପଚାରିଲୁ ।

—ରାମ ବାବୁ ଓ ରମାସୁନ୍ଦରୀ ଦୁହେଁ ଦୁହିଁଙ୍କୁ ଦୁଧ ପିଇବାକୁ ବାରମ୍ବାର ଅନୁରୋଧ କଲେ । ତା ପରେ ଦୁହେଁ କଳି କଲେ । ପିଲାମାନେ ଏ ସବୁ ଦେଖି ତାଟକା । ପ୍ରତ୍ୟେକେ ବୁଝିଲେ ନିଜର ତ୍ୟାଗଟା କାଏମ ରହୁ ଶେଷରେ ରଗାରଗି ହୋଇ ଦୁହେଁ ଶୋଇଲେ କିଛି ନ ଖାଇ ନ ପିଇ । ରାତି ଶେଷ ଆଡକୁ ଦୁହେଁନ୍ନି ଚକ୍ ଚକ୍ ଶାଗୁଣି ଆଡ଼ି ଦେଖାନ୍ତୁ ତ ଖବର ଦୁଃଖକୁ ପିଇଯାଉଥିଲାଣି । ଦୁହିଁଙ୍କର ରାଗ ଆହୁରି ବଢ଼ିଗଲା । ରାମ ବାବୁ କହୁରି ଧରି ଧାଇଁଲେ ବିରାଡ଼ିକୁ ହାଣିବାକୁ । ବିରାଡ଼ି ପାଚେରି ଡେଇଁ ପାର ! ପାଚେରିରେ ମୁଣ୍ଡ ବାଡ଼େଇ ରାମ ବାବୁ ଇନ୍ତାକ୍ । ଏଣେ ରମାସୁନ୍ଦରୀ ରାଗରେ ଛାଟିଆଟି କଚାଡ଼ି ଦେଲେ । ଝନ୍ ଝନ୍ ହୋଇ ଛାଟିଆ ଚୁରମାର

ଦୁର୍ଯ୍ୟୋଧନ ବ୍ୟଥିତ ଭାବରେ ପଚାରିଲା, ଆଚ୍ଛା, ମୋତେ ମାତ୍ର ଏତିକି କହନ୍ତୁ ଭଗବାନ ଅଛନ୍ତି କି ନାହିଁ ।

ଗୋବର୍ଦ୍ଧନ ବାବୁ ହସି କହିଲେ, ମହାଭାରତ !! ଦୁର୍ଯ୍ୟୋଧନ ଏହିପରି ନିଜକୁ ଅସହାୟ ମଣି କହିଥିଲେ, ହେ ପ୍ରଭୁ, ଧର୍ମ ଜାଣେ; କିନ୍ତୁ ସେଥିରେ ମୋର ପ୍ରବୃତ୍ତି ନାହିଁ, ଅଧର୍ମ ଜାଣେ; କିନ୍ତୁ ସେଥିରୁ ନିବୃତ୍ତି ନାହିଁ । ଯାହା କରୁଛ କର । ତୋର ସେମିତି ନିଜ ବୁଦ୍ଧି ଉପରେ ଆଉ ଆସ୍ଥା ନାହିଁ । ତୁ ବୁଢ଼ୀକୁ କୌଣସି ବିରାଟ ବୁଦ୍ଧି ପାଖରେ ନିଜକୁ ସମର୍ପି ଦେବାକୁ, କାରଣ ତୁ ଅନୁଭବ କରୁଛୁ ତୋ'ର ନିଜସ୍ୱ ବୁଦ୍ଧି ତୋତେ ବିପଦରେ ପକାଇବ । ନୁହଁ କି ? ତେବେ, ମୁଁ କେବଳ ଗୀତାର କଥା ମନେ ପକାଇ ଦେଇପାରେ, ଜୀବମାନଙ୍କର ଉତ୍ପତ୍ତି ଓ କ୍ରମ ବିକାଶ ପାଇଁ ଯେଉଁ ତ୍ୟାଗ ତାହାହିଁ କେବଳ କର୍ମ ନାମରେ କଥିତ, ଆଉ, ଆଇନଷ୍ଟାଇନ୍‌ଙ୍କ ଭଳି ଦାର୍ଶନିକ-ବୈଜ୍ଞାନିକମାନେ ହୁଏତ ହସନେ ଅଙ୍କ କଷି ଦେଖାଇ

Digitized by srujanika@gmail.com

ଦେବେ, ଯେଉଁ ମୂଳ ଶକ୍ତିରୁ ଏ ସବୁ ଉଦ୍ଭବ ତା ପଶ୍ଚାତ୍ତରେ ତାହା ହେଉଛି ଆନନ୍ଦମୟ ପ୍ରେମ !! ହେ ବୀରଗଣ ! ହେ ଅମୃତର ପୁତ୍ରମାନେ ! ବୁକୁରେ ସାହସ ବାନ୍ଧ, କାମ କ୍ରୋଧ ଲୋଭ ହିଂସାର ଯେଉଁ ଉତ୍ତାଳ ତରଙ୍ଗ ଦୁର୍ଲଙ୍ଘ୍ୟ ପ୍ରାଚୀର ଭଳି ସମ୍ମୁଖରେ ଛିଡ଼ା ହୋଇଛି ସେ ଭାଙ୍ଗି ପଡ଼ିବ ଏବଂ ଆମକୁ ଆନନ୍ଦର କୂଳରେ ପହଞ୍ଚାଇ ଦେବ !!

ଆମେ ସମସ୍ତେ ନୀରବ ରହିଲୁ ।



Digitized by srujanika@gmail.com

# ଝଞ୍ଜାଙ୍କିକା

ନରବାବୁଙ୍କ ଘରର ଭିତର ବାରନ୍ଦା । ବାରନ୍ଦାଟି ପ୍ରଶସ୍ତ । ବେଶ୍ ଲମ୍ବା ଚଉଡ଼ା, ଦୁଇଟି ବଖରାର ଦୁଆର ଓ ଝରକା କବାଟ ବାରନ୍ଦାକୁ ଫିଟୁଛି । ଦକ୍ଷିଣପଟ ବଖରାର କବାଟ ଆଉଜା ହୋଇଛି । ଉତ୍ତର ପଟ ବଖରାର କବାଟ ଆଉଜା ହୋଇଛି । ଝରକାରେ ପରଦା ଲାଗିଛି । ବାରନ୍ଦା ଡାଡ଼କୁ ଦୁଇଟି କାଠ ଖୁଣ୍ଟ ଛାତକୁ ଧରିଛି । ଦକ୍ଷିଣ ସୀମାରେ ପୂର୍ବତରଫକୁ ରୋଷେଇଶାଳ । ରୋଷେଇଶାଳରୁ ଧୂଆଁ ମଝିରେ ମଝିରେ ବାରନ୍ଦାକୁ ବାହାରି ଆସୁଛି । ରୋଷେଇଶାଳ ଭିତରୁ ତରକାରି ସନ୍ତୁଳିବାର ଗନ୍ଧ ଓ ଶବ୍ଦ ଭାସି ଆସୁଛି । ନରବାବୁଙ୍କ ସ୍ତ୍ରୀ ରୋଷେଇଶାଳରେ କାର୍ଯ୍ୟବ୍ୟସ୍ତ । ନରବାବୁ ଉତ୍ତରପଟ ବଖରାରେ ବସି ସାହିତ୍ୟ ସୃଷ୍ଟିରେ ବ୍ୟସ୍ତ । ଦୁଇଜଣଯାକ କେହି ଦିଶୁନାହାନ୍ତି । ବାରନ୍ଦାଟା ଶୂନ୍‌ଶାନ୍ ।

ବାରନ୍ଦାଟିରେ ଅନେକ ଜଞ୍ଜାଳ ଥୁଆ ହୋଇଛି । କେତେଗୁଡ଼ାଏ ବଡ଼ ବଡ଼ ଡାବଲ ଉତ୍ତର ସୀମାରେ ରହିଛି । ନାନା ପ୍ରକାର ଛିଣ୍ଡା କନା ଓ ଭଙ୍ଗାଭଙ୍ଗି ଜଞ୍ଜାଳ ମଝିରେ ମଝିରେ କୁଡ଼ କୁଡ଼ ହୋଇ ପଡ଼ିଛି ।

Digitized by srujanika@gmail.com

ନରବାବୁଙ୍କ ଦଶମାସର ପୁଅ ଗୋଟିଏ ୨।୩ ହାତ ଦଉଡ଼ିରେ ଖୁଣ୍ଟରେ ବନ୍ଧା ହୋଇଛି। ସେ ଟାଣି ହୋଇ ବାହାର ଯିବାର ଚେଷ୍ଟା କରୁଛି ଓ ମଝିରେ ମଝିରେ ବାଞ୍ଛା ହୋଇଥିବା ମୁଢିରୁ ଗୋଟିଏ ଗୋଟିଏ ପାଟିରେ ପକାଇ ପାଟି ପାକୁଳଉଛି; କିନ୍ତୁ ସେ କାମ ତାକୁ ବେଶୀକ୍ଷଣ ଭଲ ଲାଗିଲା ନାହିଁ। କିଛି ଗୋଟାଏ ଜିନିଷ ଧରି ତାକୁ ବାଡେଇବା ପାଇଁ ତାର ଭାରି ଇଚ୍ଛା ହେଲା। ମୁଣ୍ଡ ବୁଲାଇ ସେ ଏଣେ ତେଣେ ଚାହିଁଲା; କିନ୍ତୁ ତା'ର ସୀମା ଭିତରେ ସେ କିଛି ପାଇଲା ନାହିଁ! ପୁଅଟି ଭାରି ସୁନ୍ଦର ଓ କୌତୁକିଆ ଦେଖିବାକୁ। ଖୁବ୍ କମ୍ କାନ୍ଦେ; କିନ୍ତୁ ସବୁବେଳେ ଜିନିଷ ପତ୍ର ଭାଙ୍ଗି ମା'କୁ ହଇରାଣ କରୁଥିବାରୁ ପ୍ରୀତି ସେମିତିବେଳରେ ତାକୁ ଖୁଣ୍ଟରେ ବାନ୍ଧିଦେଇ କାମ କରେ।

କିଛିକ୍ଷଣ ଏଣେତେଣେ ଚାହିଁବା ପରେ ପୁଅର ଦୃଷ୍ଟି ସ୍ଥିର ଭାବରେ ଗୋଟାଏ ଆଡ଼େ ଚାହିଁଲା ଓ ମୁହଁରେ ତା'ର ହସ ଖେଳିଗଲା। ବାରମ୍ବାର ସେ ଉଦ୍ଧର୍ଗ ଆଗକୁ ଯିବାକୁ ଚେଷ୍ଟାକଲା ଆନନ୍ଦରେ। ପୁଅର ଦୃଷ୍ଟି ତାବଲ ଆଡ଼େ।...

ତାବଲ ତଳୁ ଗୋଟିଏ ବଡ଼ ବଙ୍କଡ଼ାବିଛା ବାହାରି ପୁଅ ଆଡ଼କୁ ଅଗ୍ରସର ହେଉଛି ଧୀରେ ଧୀରେ। ପିଙ୍ଗଳ ବର୍ଣ୍ଣ ନାହୁଡ଼ଟି ଭୟଙ୍କର ଭାବରେ ଉପରକୁ ଟେକାହୋଇଛି। ତା'ର ବୁଢା ଗୋଡ଼ ଦୁଇଟିର ଧାରୁଆ ଶଣ୍ଢ ଆସି ଦୁଇଟିକୁ ସେ ଯଥାସାଧ୍ୟ ଫାଙ୍କ କରି ଚାଲିଛି। କଦାକାର ବୀଭତ୍ସ ଏକ ଜୀବ।

ପୁଅ ତାକୁ ଦେଖି ଆନନ୍ଦରେ ଖିଲ ଖିଲ ହୋଇ ହସି ଉଠିଲା। ଏତେବେଳେ ସେ ଗୋଟିଏ ଖେଳସାଥୀ ପାଇଛି! ପ୍ରୀତି ତାକୁ ଚାନ୍ଦମାମୁଁକୁ ଡାକିବା ଶିଖାଇଛି। ସେ ସୁନ୍ଦର ଫୁଲ ଫୁଲ ହାତଟି ଉଠାଇ ବଙ୍କଡ଼ା ବିଛାକୁ ଡାକୁଛି। ବିଛାଟି ଧୀରେ ଧୀରେ ଅନାଇ

Digitized by srujanika@gmail.com

ବୁଲୁଛି ପୂଅ ଆଡ଼େ । ପୂଅ ଆନନ୍ଦର ଆତିଶଯ୍ୟରେ ଖିଲି ଖିଲି ହସୁଛି ଓ ହାତଗୋଡ଼ ଛୁଣ୍ଡାଇ ସେ ଆଡ଼କୁ ନିବାକୁ ବ୍ୟତିବ୍ୟସ୍ତ ହେଉଛି ।

ବଗୁଲିଟି ପୂଅ ପାଖକୁ ଗଲା, କିନ୍ତୁ ତା'ର ହାତର ସୀମା ବାହାରେ ଯାଇ ଉଭିଲା ଓ ନାଙ୍ଗୁଡ଼ଟିକୁ ହଲାଇବାକୁ ଲାଗିଲା । ପୂଅ ପୁଣି ଆନନ୍ଦରେ ଖିଲି ଖିଲି ହୋଇ ହସିବାକୁ ଲାଗିଲା । ବଗୁଲି ଆଉ ଟିକିଏ ଆଗେଇଗଲା । ପୂଅ ଯେମିତି ତା' ପାଖକୁ ମାଡ଼ ଆସିଲା ସେ ପୁଣି ପଛକୁ ବୁଲିଗଲା । ପୂଅ ପୁଣି ପଛକୁ ହାମୁଡ଼େଇ ଘୁଞ୍ଚିଗଲା । ବଗୁଲିଟି ତା' ଆଡ଼କୁ ପୁଣି ଆଗେଇଗଲା । ପୂଅ ପୁଣି ଯେମିତି ତା' ଆଡ଼କୁ ମାଡ଼ ଆସିଲା ବଗୁଲିଟି ପୁଣି ପଛେଇ ପଛେଇ କିଛି ବାଟ ଫେରିଗଲା ଓ ନାଙ୍ଗୁଡ଼ ହଲାଇବାକୁ ଲାଗିଲା । ପୂଅ ଏଥର ଅତି ଆନନ୍ଦରେ ହସିବାକୁ ଲାଗିଲା ଖିଲି ଖିଲି ହୋଇ । ବଗୁଲିର ନାଙ୍ଗୁଡ଼ ଜୋରରେ ହଲିବାକୁ ଲାଗିଲା ।

ପ୍ରୀତି—(ରୋଷେଇଶାଳ ଭିତରୁ ଗେଲ୍ହେଇ ହୋଇ) ଇରେ ! ମୋ ପୂଅ କାହିଁକି ହସୁଛି କି ! କି ଖେଳ ଖେଳୁଛି କି ! ଖେଳ୍ ଖେଳ୍ ।

(ବଗୁଲିଟି ସେଠି ଘୂରିବାକୁ ଲାଗିଲା ନାଙ୍ଗୁଡ଼ ହଲାଇ ! ପୂଅ ଆନନ୍ଦରେ ଗଦଗଦ ହୋଇ ହସିବାକୁ ଲାଗିଲା । ଏଣେ ତେଣେ ଚାହିଁଲା, ସତେ ଯେପରି ଅନ୍ୟମାନଙ୍କୁ ଡ଼ାକିଲା ତା ଖେଳ ଦେଖିବାକୁ ! ବଗୁଲିଟି ନାଙ୍ଗୁଡ଼ ହଲାଇ ପୂଅ ପାଖକୁ ଦୌଡ଼ି ଆସିଲା । ପୂଅ ପୁଣି ଖିଲି ଖିଲି ହୋଇ ହସିଉଠିଲା ।)

ପ୍ରୀତି—ଇରେ ! ଏତେ ହସ କାହିଁକି ମୋ ପୂଅର ! (ଗେଲ୍ହେଇ ହୋଇ କହି ସେ ରୋଷେଇଶାଳରୁ ବାହାରି ଆସିଲା ଦେଖି-ବାକୁ । ବାହାରି ଆସି ସେ ଦେଖି ଭଳିର ଆତିଶଯ୍ୟରେ

Digitized by srujanika@gmail.com

ଆଖି ବଡ଼ ବଡ଼ କରି ନୂଡ୍ଡା ହୋଇଗଲା ନିର୍ବାକ୍ ହୋଇ କେବଳ ମୁହଁରୁ ଗୋଟିଏ ଭୟାର୍ତ୍ତ ଚିତ୍କାର ବାହାରିଲା । ସେ ଅଦ୍ଭୁତ ଚିତ୍କାର ଶୁଣି ନରବାବୁ ଘରୁ ବାହାରି ଆସିଲେ । ହାତରେ ତାଙ୍କର କଲମ । ପ୍ରୀତି କିଛି କହି ପାରିଲା ନାହିଁ । କେବଳ ହାତ ଠାରି କଙ୍କଡ଼ା ବଗୁଲୁ ଦେଖେଇବାକୁ ଲାଗିଲା । ନରବାବୁ ଦେଖି ଭୟରେ ନିର୍ବାକ୍ ହୋଇଗଲେ । ପୁଅ ଆନନ୍ଦରେ ବାପା ଓ ବୋଉଙ୍କ ଆଡ଼େ ଚାହିଁ ନିଜର ବାହାଦୁରୀ ଦେଖାଇବାକୁ ଲାଗିଲା ଓ ବଗୁ ଆଡ଼େ ଯିବାକୁ ଲାଗିଲା । ବଗୁଟି ତା ଆଡ଼େ ଯିବାକୁ ଲାଗିଲା ।)

ପ୍ରୀତି—(କିଛିକ୍ଷଣ ପରେ ଚିତ୍କାର କରି ଭର୍ତ୍ସନା ସ୍ୱର) ଦେଖୁଛ କଅଣ ମାଇଚିଆଙ୍କ ଭଳି ! ମାର ତାକୁ ! (ନରବାବୁ ଏଣେ ତେଣେ ଚାହିଁଲେ କିଛି ଗୋଟାଏ ମାରଣାସ୍ତ୍ର ପାଇଁ । ବଗୁଟି ସେତେବେଳକୁ ପୁଅ ପାଖକୁ ଲାଗି ଆସିଲାଣି । ନରବାବୁ କିଛି ନ ପାଇ କଲମରେ ବଗୁ ପିଠିକୁ ଚୁପି ଧରିଲେ । ବଗୁ ଛଟପଟ ହୋଇ କଲମରେ ନାହୁଡ଼ି ପିଟିବାକୁ ଲାଗିଲା । ପ୍ରୀତି ଇତିମଧ୍ୟରେ ପୁଅକୁ କୋଡ଼କୁ ଉଠାଇ ନେଇ ଯାକି ଧରିଲା । ପୁଅ କିନ୍ତୁ ତଳକୁ ଓହ୍ଲାଇବାକୁ ବ୍ୟସ୍ତ ହେଲା ।)

ନର—ମୁଁ ତାକୁ ଚୁପି ଧରିଛି । ତୁମେ ଗୋଟିଏ କିଛି ଆଣ ମାରିବାକୁ ।

ପ୍ରୀତି—(ପାଟି କରି) ଇଲୋ ବୋଉ ଲୋ ! ମାରିଥିଲେ ମୋ ପୁଅ କଅଣ ଆଉ ବଞ୍ଚିଥାଆନ୍ତା ! କାଲି ରାତିରେ ମୁଁ ପୁଅକୁ ସେଇ ତାକିଲ ପାଖରେ ଶୁଆଇଥିଲି । ରାତି ଅଧରେ ତାକିଲଟାକୁ କିଏ କାଡ଼େଇବା ଭଳି ଶବ୍ଦ ହେଲା । ମୁଁ ଉଠି ଦେଖିଲି କେହି ନାହିଁ । ଭାବିଲି ମୂଷା ହୋଇଥିବ ପରା । ଏଇ ତ

Digitized by srujanika@gmail.com

ତା' ନାଡ଼ୁଡ଼ି ବାଡ଼େଇଥିଲା । ସବୁଟିୟେ ମାର ନାହିଁ । ମାରି-
ଥିଲେ ଆଜି କଅଣ ବଞ୍ଚି ଥାଆନ୍ତା ମୋ ପୁଅ । ଏଇକ୍ଷୁଣିକା
ଆଜି ଅଟିକଏ ଗଲେ ତ ମାରିଥାନ୍ତା ଲେ ! ହେ ଭଗବାନ୍ !!

ବଗୁ—(ଛଟପଟ ହେବାକୁ ଲଗିଲା । ବୁଢ଼ା ଗୋଡ଼ ଦିଓଟି ସେ ଯୋଡ଼ ନରବାବୁ ଆଡ଼େ ମୁହଁ କରି ସେ ଠିଆ ହୋଇ ରହିଲା)

ନର—(ଅତ୍ୟାଚାରୀ ରାଜା କୌଣସି ଲୋକ ଉପରେ ଅତ୍ୟାଚାର କରୁ କରୁ ମଝିରେ ମଝିରେ ଯେପରି ପରିହାସ କରୁଥାଏ ସେହିପରି ପରିହାସ କରି) କରେ, ଛାଡ଼ ଦେବାକୁ କହୁଛୁ ? ସଲାମ କରୁଛୁ ?

(ନରବାବୁଙ୍କର ମନେ ହେଲା ବଗୁ କଅଣ କହୁଛି)

ବଗୁ—ମୋତେ ଛାଡ଼ିଦିଅ, ଛାଡ଼ିଦିଅ ।

ନର—ତୁ ମୋ ପୁଅକୁ ମାରି ଦେଇ ଥାଆନ୍ତୁ ଆଜି ଟିକଏ ଗଲେ । ତୋତେ ଛାଡ଼ ଦେବି ! ଜାଣୁ, ମୋ ପୁଅ ଅଗଷ୍ଟ ପନ୍ଦର ତାରିଖ ଦିନ ଜନ୍ମ ! ସେ ଦିନ ଦୁଣି ଜନ୍ମୋତ୍ସବ ଥିଲା !! ସେ ଅଷ୍ଟମ ଗର୍ଭର ସନ୍ତାନ !!! ଶ୍ରୀକୃଷ୍ଣ ଭଳି !!!! ମାହେନ୍ଦ୍ର ଯୋଗରେ ତା'ର ଜନ୍ମ !!!!! ମୋ ପୁଅ ପୃଥିବୀ ପ୍ରସିଦ୍ଧ ହେବ !!!!!! ଆଜି ତୁ ତାକୁ ମାରିଦେଇ ଥାଆନ୍ତୁ ! ତୋତେ ଛାଡ଼ ଦେବି ?

ବଗୁ—ନା, ନା, ମୁଁ ତା' ସାଙ୍ଗରେ ଖେଳୁଥିଲି, ମାରିବାକୁ ମନ ନ ଥିଲା ! ତୁମକୁ ନେହୁରା ହେଉଚି ମୋତେ ଛାଡ଼ି ଦିଅ । ମୋ ପିଲାମାନେ ମୋତେ ଖୋଜୁଥିବେ !

ନର—ତୋର ମୁଣ୍ଡ ମିଳିକରିବ, ତାଙ୍କ ପାଇଁ ମୁଣ୍ଡ ତୋର ମନ ବ୍ୟସ୍ତ ! ହାଟେଷ୍ଟିଲୁ ମୋତେ ! କଦାପାପ ଶୀଘ୍ର ନୃଶଂସ

Digitized by srujanika@gmail.com

ଯାବ ତୁ ! କାହିଁକ ତୋତେ ଭଗବାନ୍ ସୃଷ୍ଟି କରିଥିଲେ କେଜାଣି ! କ କାମରେ ଲଗୁଛ ତୁମେମାନେ ତାଙ୍କର !

ବଗ୍ଲ—ମୁଁ ସେ କଥା କେମିତି କହିବି । ଆପଣ ସିନା କହୁଛନ୍ତି ମୁଁ କଦାକାର, ମୋ ସ୍ତ୍ରୀ କହେ ମୁଁ ଖୁବ ସୁନ୍ଦର ! ଆମେ ତ ମଣିଷମାନଙ୍କୁ କହୁଁ ନୃଶଂସ, କଦାକାର ଜୀବ ! ପୁଣି ମୂର୍ଖ ବି !

ନର—କଅଣ ହେଲା ! ଆମେ ମୂର୍ଖ ? ଆମର ଦୟା ପ୍ରେମ ନାହିଁ । ଖୁବ ବଡ଼ କଥା କହୁଛୁ ତ !

ବଗ୍ଲ—ଦେଖନ୍ତୁ ଆପଣଙ୍କ ବାଡ଼ ଦୁଆର ଆଡ଼େ (ନରବାବୁ ଅନାଇଲେ । ଜଣେ ଲୋକ ବାଁ ହାତରେ ଗୋଟିଏ ସେର ତରାଜୁ ଓ ଡାହାଣ ହାତରେ ବନ୍ଧା ହୋଇଥିବା ଗୋଟିଏ ଛେଳି ଧରିଛି । ଛେଳିଟି ଛୁଆ ହୋଇ ଏଣେ ତେଣେ ଚାହୁଁଛି, ଭେଁ ଭେଁ ଡ଼ାକୁଛି ଓ ମଝିରେ ମଝିରେ ଘାସ ଖାଉଛି ।)

ଲୋକ—ଆଜ୍ଞା, ଆଜ ଭଲ ଖାସି ଆଣିଛି, ଦେଖନ୍ତୁ । (କହି ଛେଳିର ପେଟ ଚିପିବାକୁ ଲାଗିଲା । ଛେଳି ଆନନ୍ଦରେ ଡେଇଁ କୌତୁକରେ ଲୋକଟିର ଗୋଡ ମୁଣ୍ଡରେ ଠେଲିବାକୁ ଲାଗିଲା) ଆଜ କେତେ ଦେବି ? ଆଜ ଦୁଇଟା ଫଡ଼ିଆ ନଅନ୍ତୁ ଆପଣ ! ଆଉ କଲିଜା ଅଧସେର ।

ବଗ୍ଲ—ଦେଖିଲେ ! ଶୁଣିଲେ !

ନର—(ପ୍ରଥମରେ ଟିକିଏ ଅପ୍ରସ୍ତୁତ ହେଲେ; କିନ୍ତୁ ମଣିଷ ଜାତିର ଟେକ ରଖି) ବାଃ, ଛେଳି ତ ଭଗବାନ୍ ସୃଷ୍ଟି କରିଛନ୍ତି ମଣିଷର ଆହାର ପାଇଁ, ଆମେ ତୁମ୍ଭମାନଙ୍କ ପରି ନୃଶଂସ ନୋହୁଁ । ଆମର ଆଦର୍ଶ ଅଛି, ପ୍ରେମ ଅଛି, ଭଗବାନଙ୍କୁ

Digitized by srujanika@gmail.com

ଜାଣିବାର ଚେଷ୍ଟା ଅଛି । ଆମେ ଭଗବାନଙ୍କ ଆଦର୍ଶ ସୃଷ୍ଟି । ତୁମ ଭଳଆ ଆମେ ବିଷ ନେଇ ସୃଷ୍ଟ ହୋଇ ନାହୁଁ ।

ବଲ୍ଟୁ—(ହସିଲା) ଆଜ୍ଞା, ଆମର ବିଷ ଆମର ଦେହରେ, ମନରେ ନାହିଁ । ଦେହର ବିଷ ଆତ୍ମରକ୍ଷା ପାଇଁ; କିନ୍ତୁ ମଣିଷର ବିଷ ତା'ର ମନରେ, ତାହା ଅନ୍ୟକୁ ଗ୍ରାସ କରିବା ପାଇଁ । ଦେହରେ ଯେଉଁ ବିଷ ଆମେ ପାଇଛୁ ତା'ର କ୍ଷତି କରିବାର ଶକ୍ତି ସୀମିତ; କିନ୍ତୁ ମନର ବିଷର କ୍ଷତି କରିବାର ଶକ୍ତି ଅସୀମ । ଏହି ମନର ବିଷ ଯୋଗୁଁ ତ ଆପଣମାନେ ପରସ୍ପରକୁ ଧ୍ୱଂସ କରିବା ପାଇଁ ପରମାଣୁ ବୋମା, ଉଦ୍‌ଜାନ ବୋମା ଓ ଆହୁରି କେତେ କେତେ ଅଦ୍ଭୁତ ଶକ୍ତିଶାଳୀ ମାରଣାସ୍ତ୍ର ତିଆରି କରି ସାରିଲେଣି ଓ ଆହୁରି କରିବାକୁ ସବୁଦା ଚିନ୍ତା କରୁଛନ୍ତି । ଆମର ସେ ଚିନ୍ତା ନାହିଁ ।

ପ୍ରୀତି—ଆରେ ଦେଖୁଛ କଅଣ ବା । ତାକୁ ଗୀତା ଭାଗବତ ବୁଝାଉଛ ! ଧନ୍ୟ ତୁମେ ! ତମର ଟିକିଏ ଦୟା ମାୟା ନାହିଁ । ପୁଅକୁ ସେ ମାରି ପକେଇ ଥାଆନ୍ତା, ଆଉ ତୁମେ ତାକୁ ଧରି ମଜା ଦେଖୁଛ !! ମୁଁ ଯାଏ ଡାକି ଆଣେ (ପୁଅ ତଳକୁ ଓହ୍ଲାଇବାକୁ ବ୍ୟସ୍ତ ହୋଇ କାନ୍ଦିବାକୁ ଲାଗିଲା) ନା, ନା, ଡ଼ଅର ନା, ତୋର କିଚ୍ଛି କରି ପାରିବ ନାହିଁ ସେ । (ନରବାବୁ ବଲ୍ଟୁକୁ ମାରୁ ନାହାନ୍ତି ଦେଖି ପ୍ରୀତି ସାଇ ମନ୍ତ୍ରଣା ଡାକିବାକୁ ଚାଲିଗଲା ।)

ନର—(କଲମରେ ଜୋରରେ ଚିପି ଦେଇ) ଚୁପ୍ କର ବଦମାସ୍ ।

ବଲ୍ଟୁ—ଆଃ, କାଟୁଛି, ଛାଡ଼, ଛାଡ ।

ନର—ଛାଡ଼ିବି ତୋତେ ନା । ତୁ କଅଣ ବୁଝିବୁ ମଣିଷ ମନ କଥା । ଆମେ ବିଜ୍ଞାନ ଦିଗରେ କେତେ ଉନ୍ନତି କରିଛୁ ଜାଣୁ ।

Digitized by srujanika@gmail.com

ବର୍ତ୍ତମାନ ଆମେ ଚନ୍ଦ୍ରଲୋକ, ଶୁକ୍ର, ମଙ୍ଗଳ ଗ୍ରହମାନଙ୍କୁ ଯିବାକୁ ଲାଗିଲୁଣି । ଆମର ବୁଦ୍ଧି କଥା ତୁ ଜାଣିବୁ କୁଆଡ଼ୁ! ଅଧମ ଜୀବ ତୁ ।

ବାହାରେ ଶବ୍ଦ—ନରବାବୁ ଅଛନ୍ତି ।

ବସ୍ତୁ—ଶୁଣନ୍ତୁ ମୋତେ, ଯାଆନ୍ତୁ, ବଳଭଦ୍ର ବାବୁ ଡାକୁଛନ୍ତି । କାଲି ଆପଣ ତାଙ୍କ ସାଙ୍ଗରେ ବସି ଯେଉଁ ସବୁ କଥାବାର୍ତ୍ତା ହେଉ ଥିଲେ ମୁଁ ତାକିଆ ତଳେ ଥାଇ ସବୁ ଶୁଣିଛି । ଯାଆନ୍ତୁ ଟଙ୍କା ଆଣିଛନ୍ତି ସେ, ପାଞ୍ଚ ଶହ ଟଙ୍କା, ଆପଣ ପଷ୍ଟ ଧର୍ମାବତାର ! ଘୁଷ୍ ନେଇ ବିଚାର କରିବେ ଆପଣ, ନା ।

ନର—ବାଃ ମୁଁ କଅଣ କରିବ, ସେ ଏଠାକାର ନେତା, ସେ ଓ ସରକାର ଗୃହାନ୍ତି ସେ ମୁଦାଲା ଦଣ୍ଡ ପାଉ, ମୁଁ ନ ଦେଲେ ମୋ ଗୃହର ଯିବ, ଅତଏବ ପଦ ଦବାକୁ ପଡ଼ିବ ତେବେ କାହିଁକି ମୁଁ ଟଙ୍କା ନ ନେବି, ଟଙ୍କା ବି ନେବି, ଚାକିରି ବି ବଢ଼ିବ, ପଦ ଦଣ୍ଡ ହେଏ !

ବସ୍ତୁ—ନେତା ! ହାଃ, ହାଃ, ହାଃ, ଜାଣନ୍ତି ତାଙ୍କ ଚରିତ୍ର । କେତେ ନାରୀ ଧର୍ଷଣ କରିଛନ୍ତି ସେ ? କେତେ କଳାପୋତେଇ କରିଛନ୍ତି ସେ ? ଜଣେ ମହିଳା ତାଙ୍କ ପାଇଁ ଆତ୍ମହତ୍ୟା କରିଛି ।

ନର—(ପରନିନ୍ଦା ଶୁଣିବାକୁ ଆଗ୍ରହୀ ହୋଇ) କଅଣ ହୋଇଛି କହ, କହ ।

ବସ୍ତୁ—କହୁଛି । ଟିକିଏ କୋହଳ କର ।

ନର – ନା, ତା ହେଲେ ତୁ ମୋତେ କାମୁଡ଼ିବୁ ।

ବସ୍ତୁ – (ହସି) ଏତିକି ବିଶ୍ୱାସ ନାହିଁ, ଆଉ ତୁମେ ଧର୍ମବାନ କଥା କହୁଛ ? ହଉ, ଟିକିଏ ଉଶ୍ୱାସ କରି ଧର । ଜଣେ ମହିଳା

Digitized by srujanika@gmail.com

ସହିତ ଏ ପ୍ରେମ କଲେ । ପ୍ରେମ ! ପ୍ରେମ !! ଯେଉଁ ପ୍ରେମ ପାଇଁ ଆପଣ ଗର୍ବ କରୁଥିଲେ ! ମହିଳାଟି ଖୁବ୍ ଧନୀ ଲୋକର ଏକମାତ୍ର ସନ୍ତାନ, ଏ ଲୋକଟି ତାକୁ 'ପ୍ରେମ'ରେ ଏପରି କବଳିତ କଲା ଯେ ସେ ମହିଳା ଏଙ୍କର କଥାରେ ଉଠ୍ ବସ ହେଲା । ଧନେ ଏଙ୍କର ଅନୁରୋଧରେ ସେ ମହିଳା ତାଙ୍କର ସ୍ତନ ଯୁଗଳରେ ଓ ଦୁଇ ଜଙ୍ଘରେ ପ୍ରେମିକର ନା'ଟି ଚିତା କୁଟାଇ ରଖିଲେ । ପରେ ଗର୍ଭବତୀ ମଧ୍ୟ ହେଲେ; କିନ୍ତୁ ଏ ତାକୁ ବିବାହ କରିବା ପାଇଁ ଟାଳଟୁଲ କରି ଶେଷରେ କହିଲେ ଯେ ତିରିଶ ହଜାର ଟଙ୍କା ଦେଲେ ବିବାହ କରିବେ । ଉଦ୍ର ମହିଳାଙ୍କ ଆଉ ଉପାୟ ନାହିଁ, ଅନ୍ୟ କାହାକୁ ସେ ବିବାହ କରି ପାରିବେ ନାହିଁ, କାରଣ ପରପୁରୁଷର ନାମ ତାଙ୍କ ସ୍ତନରେ ଲିପିବଦ୍ଧ । ଅଗତ୍ୟା ସେ ବାପାଙ୍କ ପାଖରୁ ୩୦ ହଜାର ଟଙ୍କା ଆଣି ଦେଲେ । ସେଥିକରେ ମଧ୍ୟ ସନ୍ତୁଷ୍ଟ ନ ହୋଇ ସେ ଆହୁରି ମାଗିଲେ । ଶେଷରେ ସେ ମହିଳାଟି ଆତ୍ମହତ୍ୟା କଲା । ଏ ବର୍ତ୍ତମାନ ନେତା, ଆମ ଭିତରେ ଏମିତି ପାଇବେ ନାହିଁ । ମଣିଷ କଅଣ ହେବେ ଆମଠୁଁ ବି ଅଧମ ନୁହଁ ?

ପ୍ରୀତ—(ପଡ଼ଶାମାନଙ୍କ ସଙ୍ଗେ ଆସି) ଭଲେ ବୋଉ ! ତମେ ଏ ପର୍ଯ୍ୟନ୍ତ ତାକୁ ମାରି ନା ? ତୁମେ କଅଣ ପାଗଳ ହେଲଣି ନା କଅଣ !

(ପୁଅ କଙ୍କଡ଼ା ବସ୍ତୁକୁ ଦେଖି ବୋଉ କୋଳରୁ ଡେଇଁ ପଡ଼ି ତା ପାଖକୁ ଯିବାକୁ ବ୍ୟସ୍ତ ହେଇ ଓ ପ୍ରୀତ ନ ଛାଡ଼ିବାରୁ କାନ୍ଦିବାକୁ ଲଗିଲା)

Digitized by srujanika@gmail.com

ନା, ନା, ଆଉ ତୋର ସେ କଷ୍ଟ କରି ପାରିବ ନାହିଁ, ତୁ ଡ଼ରନା, ଦେଖ ଦେଖ ପୁଅ ମୋ ଡରି କଳାକାଠ ପଡ଼ିଗଲାଣି ।

(ବନ୍ଧୁ ଛଟପଟ ହେବାକୁ ଲାଗିଲା ବାହାରି ଯିବାକୁ ନରି ବାବୁଙ୍କ ହାତ ଖସି ଯିବାରୁ ସେ ମୁକ୍ତ ପାଇ ଦୌଡ଼ିଲା ପୁଅ ଆଡ଼େ)

ପଡ଼ୋଶୀମାନେ—(ତଉଡ଼ ପକାଇ ଯାଉଁ ଯାଉଁ) ଆରେ ଏଟାକୁ ମାର, ମାର ।

ପ୍ରୀତି—(ରାଗରେ ଚିତ୍କାର କରି) ମାର, ମାର ତାକୁ ତମେ । ଏପର୍ଯ୍ୟନ୍ତ ସେ ପୁଅ ଉପରେ ରାଗ ରଖିଛି ।

ବନ୍ଧୁ—ନା, ନା, ମୁଁ ତା ସାଙ୍ଗରେ ଖେଳିବି ସେ ମୋ ସାଙ୍ଗରେ ଖେଳିବା ପାଇଁ ବ୍ୟସ୍ତ ହେଉଛି, ତୁମେମାନେ କେହି ବୁଝିପାରୁ ନା ।

ନରି—ଚୁପ୍ ବଦମାସ୍ । ଭଗବାନ୍ ତୋତେ ମିଛରେ ସୃଷ୍ଟି କରିଛନ୍ତି । ନା ଭଗବାନ୍ ତୋତେ ସୃଷ୍ଟି କରି ନାହାନ୍ତି । ତୁ ସଇତାନର ସୃଷ୍ଟି ।

ବନ୍ଧୁ—ମୋତେ ଯାହା କହୁଛ କହ । ତୁମେ ଭଗବାନଙ୍କ ବିଷୟରେ ସେପରି କହନା । ଅନ୍ୟ ଶାସ୍ତ୍ରରେ ଯାହା ଥାଉ, ତୁମ ହିନ୍ଦୁ ଶାସ୍ତ୍ରରେ ତ ଅଛି ସଇତାନ ବୋଲି କେହି ନାହିଁ । ସବୁ ଭଗବାନଙ୍କ ସୃଷ୍ଟି, ସବୁ ଭଗବାନଙ୍କ ପ୍ରେମରୁ ସୃଷ୍ଟି ! ତୁମେ କେବଳ ମୁହଁରେ 'ଭଗବାନ୍ ଭଗବାନ୍' କହୁଛ ସିନା, ଭଗବାନଙ୍କ ପ୍ରତି ତୁମ ବିଶ୍ୱାସ ନାହିଁ । ସ୍ୱାର୍ଥାନ୍ୱେଷୀ ନେତାମାନେ ଯେମିତି ବଡ଼ ବଡ଼ ଆଦର୍ଶ କଥା କହି ଲୋକମାନଙ୍କୁ ଭୁଲେଇ ନିଜ କାମ ହାସଲ କରନ୍ତି ତୁମେ ସେମିତି । ମୋତେ ଛାଡ଼, ମୁଁ ଘରକୁ ଯାଏଁ ।

Digitized by srujanika@gmail.com

ନର — ତୁ କଅଣ ଜାଣୁ ଆମ ବିଷୟରେ ? ଆମର ଶିକ୍ଷାନୁଷ୍ଠାନ, ଶିଳ୍ପାନୁଷ୍ଠାନ, ଜଳସେଚନ ଯୋଜନା ସବୁ ଦେଖିଲେ ତୁ ଏପରି କହନ୍ତୁ ନାହିଁ ।

ବିଛୁ — (ହସି) ମୁଁ ଫେର୍ କେଉଁଠିକି ନ ଯାଇଛି ! ସବୁ ଦେଖିଛି । ସେ ସବୁ ଯେତେ ବଢ଼ୁଛି ନୈତିକ ଅବନତି ମଧ୍ୟ ସେତିକି ହେଉଛି । ମୁଁ କହୁ ନାହିଁ ସେ ସବୁର ଦରକାର ନାହିଁ; କିନ୍ତୁ ଯେତେ ଚନ୍ଦ୍ରଲୋକକୁ ଯାଅ ବା ବଡ଼ ବଡ଼ ଶିଳ୍ପାନୁଷ୍ଠାନ ଗଢ଼, ଭଗବତ୍ ବିଶ୍ୱାସ ନ ଥିଲେ ସବୁ ବୃଥା, ସେ ସବୁ ଧ୍ୱଂସର କାରଣ ହେବ ଦିନେ । କାମନା ବାସନା ସ୍ୱାର୍ଥ ଥାଇ ଭଗବତ୍ ବିଶ୍ୱାସ ବା ପ୍ରେମ ଜାତ ହୁଏ ନା । ସବୁଥିରେ କେବଳ ସନ୍ଦେହ, ଭୟ ଓ ଘୃଣା ଜାତ ହୁଏ । ବିଷ ତ ମଣିଷ ମନରେ । ଆମର ଖାଲି ନାହୁଡ଼ ଅଗରେ ଟିକଏ ଅଛି, ତା ମଧ୍ୟ କଦାଚ ଦରକାର ନ ପଡ଼ିଲେ ବ୍ୟବହାର କରିବାର ପ୍ରବୃତ୍ତି ଆମର ନାହିଁ; କିନ୍ତୁ ମଣିଷମାନେ ସମସ୍ତଙ୍କୁ ମାରିବାକୁ ତିଆର ସଦାବେଳେ । ସମସ୍ତଙ୍କ ପ୍ରତି ସେମାନଙ୍କର ହିଂସା କ୍ରୋଧ, ଏମିତି କି ପରସ୍ପରକୁ ମଧ୍ୟ ମାରିବାକୁ ଗୁପ୍ତ ଚକ୍ରାନ୍ତ କରନ୍ତି ସଦାବେଳେ ।

ନର — ବଦମାସ୍ ତୁ ନରକର କୀଟ !

ବିଛୁ — କେ ଜାଣି ? ମୁଁ ସେ କଥା ଜାଣେନା । ଯିଏ ମୋତେ ସୃଷ୍ଟି କରିଛନ୍ତି ସେଇ ଜାଣନ୍ତି କଅଣ ତାଙ୍କ ଉଦ୍ଦେଶ୍ୟ, ଆଉ କଅଣ ମୁଁ !!

ନର — ହେଁଃ, ହେଁଃ, ହ୍ୟାପ୍ ପୁଣି ଭଗବାନଙ୍କ କଥା କହୁଛୁ !! ତୁମେମାନେ ଜୀବଜନ୍ତୁମାନେ କଅଣ ଜାଣ ତାଙ୍କ କଥା ! ଆମେ ଜାଣୁ, ଆମର ଦର୍ଶନ ସବୁଠାରୁ ବଡ଼......

Digitized by srujanika@gmail.com

ବଗ୍ଲୁ—କେହି ଜାଣନ୍ତି ନାହିଁ ତାଙ୍କ କଥା । କେହି ଜାଣି ମଧ୍ୟ ପାରିବେ ନାହିଁ । ଯଦି ବା କେହି ଜାଣିଯାଏ ଜାଣିଥିବେ ତେବେ ସେ ହେଉଛି ଗଛ ।

ପ୍ରୀତ—ମାଙ୍ଗ୍, ମାର । (କପି ପଡ଼ିଲା ମାରିବାକୁ ଗୋଟାଏ କାଠ-ଫାଳିଆ ଆଣି)

ପଡ଼ୋଶୀମାନେ—ମାର୍, ମାର ।

ବଗ୍ଲୁ---ମାରନା, ମାରନା । ଏ ଅଧମ ତୁମେମାନେ !

ନର---ଆମେ ଅଧମ ? ହ୍ୟାପ୍ ଆମେ ଅଧମ ? ହ୍ୟାପ୍ ଆମ ଦର୍ଶନ, ଆମ ଶିଳ୍ପ, ଆମ କୃଷି, ଆମ ସଭ୍ୟତା, ଆମ ଭାଷା, ଆମ ବୁଦ୍ଧି, ଆମ ସାହିତ୍ୟ, ଆମ ପ୍ରେମ···

ବଗ୍ଲୁ---ସବୁ ତ ହିଂସା, ଦନ୍ଦ, ଯୁଦ୍ଧ, କଳାପୋତେଇ, ଜାଲ୍, ଜୁଆଚୋରୀ କରିବା ଶିଖୁଛି । ମଣିଷର ମନରେ ବିଷ ଥିବାରୁ ସେ ସବୁ ବିଷାକ୍ତ ହୋଇ ଉଠୁଛି ।

ପ୍ରୀତ---ମାର୍, ମାର ତାକୁ ।

ବଗ୍ଲୁ---(ହସି) ହଉ ତେବେ ମାର । (ପୂଅ ଆଡ଼କୁ ବୁଢ଼ା ଗୋଡ଼ ଉଠେଇ ଦୋଡ଼ି) ପୂଅରେ ଖୁଲିଲା । (ପୂଅ ଦୌଡ଼ି ଗଲା ତା ଆଡ଼େ) ।

ସମସ୍ତେ---ମାର୍, ମାର୍ ।

[ଦୁମ୍ ଦୁମ୍ ଶବ୍ଦ ଶୁଭିଲା । କିଛିକ୍ଷଣ ପରେ ସମସ୍ତେ ଖୁଲି-ଗଲେ । ବଗ୍ଲୁଟି ଛଟପଟ ହେଉଥାଏ । ନରବାବୁ ତା ପାଖରେ ବସିଥାନ୍ତି ମୁଣ୍ଡରେ ହାତ ଦେଇ ।]

ନର---ପୃଥିବୀର ସବୁ ପାପ ମୋ ଭିତରେ ଅଛି । ମୁଁ ଭଲ ହେଲେ ସମସ୍ତେ ଭଲ ହୁଅନ୍ତେ, ହେ ଭଗବାନ୍ ! [ ଯ ବ ନି କା ]

···o···

Digitized by srujanika@gmail.com

# କାଃ ପନ୍ତା

ରେଳଗାଡ଼ିର ପ୍ରଥମ ଶ୍ରେଣୀରେ ଉଠି ଯାତ୍ରା କରିବା ମୋ ଜୀବନରେ ଏଇ ପ୍ରଥମ । ପିଲାବେଳୁ ବାପାଙ୍କ ସଙ୍ଗତ ବହୁତ ଥର ମୁଁ ରେଳଗାଡ଼ିରେ ଯାଇଛି; କିନ୍ତୁ ସଦାବେଳେ ତୃତୀୟ ଶ୍ରେଣୀରେ । ଠେଲି ପେଲି ମାଲପତ୍ର ଉଠାଇ ଆମେ ଉଠୁଁ ଏବଂ ଡବାଭିତରେ ଛିଡ଼ାହୋଇ ଯାଉଁ । ଗୋଡ଼ ଝଣଝଣେ ଛିଡ଼ା ହୋଇ ହୋଇ । ପ୍ରଥମ ଶ୍ରେଣୀ ଡବାର ଯାତ୍ରୀମାନଙ୍କୁ ମୁଁ ଭୟ ଓ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହୁଥାଏ କେବଳ । ଜୀବନରେ ଥରେ ପ୍ରଥମ ଶ୍ରେଣୀରେ ଯାତ୍ରା କରିବା ସେତେବେଳେ ଥିଲା ମୋର ଗୋଟାଏ ଆଦର୍ଶ । ସରକାରୀ ଚାକିରି କରି ମଧ୍ୟ ବହୁତ ଦିନ ମୁଁ ପ୍ରଥମ ଶ୍ରେଣୀରେ ଯିବାର ଯୋଗ୍ୟ ହୋଇ ନ ଥିଲି ।

ଯେଉଁ ଦିନ ଯୋଗ୍ୟ ହେଲି ତାହାର ଅଳ୍ପଦିନ ପରେ ବଦଳି ହେଲି ଅନ୍ୟ ଜାଗାକୁ । ପ୍ରଥମ ଶ୍ରେଣୀ ଟିକଟ ଯେତେବେଳେ କିଣିଲି ସେତେବେଳେ ମନରେ ଗୋଟାଏ ଅପୂର୍ବ ପୁଲକ ଓ ରୋମାଞ୍ଚ ଜାତ ହେଲା । ମନରେ ଭୟ ଓ ବାହାରେ ଗୋଟାଏ ବେପରୁଆ ଭାବ ଫୁଟାଇ ଉଠିଲି ପ୍ରଥମ ଶ୍ରେଣୀ ଭିତରକୁ । ମନରେ ଭୟ ଥାଏ, କିଏ ଜାଣେ ଟିକଟ ଥିଲେ ମଧ୍ୟ ମୋତେ କେହି ବାହାର କରିଦେଇ

Digitized by srujanika@gmail.com

ପାରନ୍ତି ହୁଏତ କୌଣସି ନିୟମ ଅନୁସାରେ । ଟିକଟ ନମ୍ବରଟି ଡାଇରିରେ ଟିପି ରଖିଲି । ସରକାରଙ୍କୁ ବିଲ୍ ଦେଲାବେଳେ ନମ୍ବରଟି ଦେବାକୁ ହେବ ପ୍ରମାଣ ସ୍ୱରୂପ । ଅପମାନ ଲାଗିଲା ଅବଶ୍ୟ; କିନ୍ତୁ ଏ ଅପମାନ ଆମେ ନିଜେଇ ବରଣ କରିଛୁ । ଦ୍ୱିତୀୟ ଶ୍ରେଣୀରେ ଯାଇ ପ୍ରଥମ ଶ୍ରେଣୀର ଖର୍ଚ୍ଚା ଆଦାୟ କରୁଥିବାରୁ ସରକାର ଏ ଅପମାନ-ଜନକ ନିୟମ କରିଛନ୍ତି ।

ସାନ ଡବାଟିଏ । ତଳେ ଗୋଟିଏ ବର୍ଥ ଓ ତା' ଉପରକୁ ଗୋଟିଏ ବଙ୍କ୍ । ବଙ୍କ୍ ଉପରେ ଶୋଇ ଥାଆନ୍ତି ଜଣେ ଭଦ୍ରଲୋକ ଏବଂ ବର୍ଥ ଉପରେ ମଧ୍ୟ । ସେମାନେ ନିଦ୍ରୋଡ ନିଦରେ ଶୋଇ ଥାଆନ୍ତି କ ଚେଇଁ ଶୋଇଥାଆନ୍ତି ଜାଣିବାର ଉପାୟ ନାହିଁ । ସେ-ମାନଙ୍କୁ ଡାକିବାକୁ ସାହସ ହେଲା ନାହିଁ । ଛିଡା ହୋଇ ରହିଲି ପାରିବରେ ।

ପର ଷ୍ଟେସନରେ ଉଠିଲେ ଜଣେ ଭଦ୍ରଲୋକ । ତାଙ୍କର ପୋଷାକ ପରିଚ୍ଛଦରୁ ସ୍ପଷ୍ଟ ମନେ ହେଉଥାଏ ସେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ତାଙ୍କର ମାଲପତ୍ରରେ ମଧ୍ୟ ଲେଖା ତାଙ୍କର ନାମ ଓ ପଦବୀ । ଭଦ୍ରଲୋକ ମିଷ୍ଟର ଦାସ । ସେ ଉଠି କାହାରିକୁ କିଛି ନ କହି ବର୍ଥରେ ଶୋଇଥିବା ଭଦ୍ରଲୋକଙ୍କୁ ଆଦେଶ ଦେବା ଭଙ୍ଗୀରେ କହିଲେ "ହୁଁ, ଉଠନ୍ତୁ ଉଠନ୍ତୁ" ।

ବର୍ଥର ଭଦ୍ରଲୋକ ଆଖି ମେଲି ଥରେ ଚାହିଁଲେ ସତ; କିନ୍ତୁ "ଉଠନ୍ତୁ" ଆଦେଶର କୌଣସି ପ୍ରତିକ୍ରିୟା ହୋଇଥିବା ଭଳି ଜଣାଗଲା ନାହିଁ । ମିଃ ଦାସ କହିଲେ ଉଠନ୍ତୁ, ନ ହେଲେ ଆପଣଙ୍କୁ ଘୋଷାରି ମୋତେ ଉଠାଇବାକୁ ହେବ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ଅଛି ବୋଲି ନିଉଟନ୍ ଯେଉଁ ପ୍ରାକୃତିକ ନିୟମ ଆବିଷ୍କାର କରିଥିଲେ ବର୍ଥଶାୟିତ ଭଦ୍ରଲୋକ ତାହା ଭୁଲ୍ ବୋଲି ପ୍ରମାଣ କଲେ ।

Digitized by srujanika@gmail.com

ମିଃ ଦାସ ଓଡୋଷାବ ଉଠାଇଦେବା ପାଇଁ ତାଙ୍କର ହାତ ସ୍ପର୍ଶ କଲେ । ସ୍ପର୍ଶ କରିଛନ୍ତି ମାତ୍ର । ତା'ପରେ...

ପ୍ରଚଣ୍ଡ ପ୍ରତିକ୍ରିୟା !! ସାମାନ୍ୟ ଟିକିଏ ସୁଇଚ୍ ଟିପି ଯେମିତି ବିସ୍ଫୋଟ ଶକ୍ତିକୁ ମୁକ୍ତ କରାଯାଏ ସେମିତି । ଏଇ ଅଳ୍ପ ସମୟ ମଧ୍ୟରେ ସାମାନ୍ୟ କେତୋଟି କ୍ରିୟାର ଫଳ ଏତେ ପ୍ରତିକ୍ରିୟା ସୃଷ୍ଟି ହୋଇ ସମ୍ଭବ ହୋଇଥିଲା ମୁଁ ଆଶା କରି ନ ଥିଲି ।

ଜ୍ୟାମୁକ୍ତ ଧନୁପରି କର୍ଷଣାପୃଷ୍ଠ ଭଦ୍ରଲୋକ ଡେଇଁ ପଡ଼ିଲେ । ଧୀରେ ଗୋଟିଏ ସିଗାରେଟ ଲଗାଇ ଥରେ ଟାଣି ମୁହଁରୁ ଧୂଆଁ ବାହାର କଲେ କିଛିକ୍ଷଣ । ତା'ପରେ...

ମୁଁ କେବଳ ଶୁଣିବାକୁ ପାଇଲି ଗୋଟାଏ ଶବ୍ଦ । ଗୋଟାଏ ଟିଣରେ କେତେଗୁଡ଼ିଏ ଗୋଡ଼ି ପୁରାଇ ହଲାଇଲେ ଯେମିତି ଶବ୍ଦ ବାହାରେ ସେମିତି । ମଝିରେ ମଝିରେ ଅବଶ୍ୟ ଗୋଟାଏ ଗୋଟାଏ ଇଂରାଜୀ କଥା କାନକୁ ଆସୁଥିଲା; କିନ୍ତୁ ପୂର୍ବାପର ଶବ୍ଦଗୁଡ଼ିକ ଶୁଣି-ପାରୁ ନ ଥିବାରୁ ବୁଝିପାରୁ ନ ଥିଲି । ଏବଂ ସେ ଶବ୍ଦଗୁଡ଼ିକ ମଧ୍ୟ ମୁଁ କେବେହେଁ ପଢ଼ିନାହିଁ । କେବଳ ଶେଷକୁ ଶୁଣିଲି ସେ କହୁଛନ୍ତି, "ଜାଣନ୍ତି ଆପଣ ମୁଁ କିଏ ? ମୁଁ......।" ପଦକଟି କହି ସେ ଭା'ର ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ନୀରବ ହେଲେ ।

ମୁଁ ଚମକି ପଡ଼ିଲି ସେ ପଦକ ଶୁଣି । ଭାବିଲି ପରି ପ୍ଲେଟଫର୍ମରେ ଓହ୍ଲାଇଯିବି ମୋର ଟିକେ ପରିଚିତ ଶ୍ରେଣୀ ଜବାକୁ; କିନ୍ତୁ ଏଇ ସୂତ୍ରଧାରରେ "ଦରକାର ବେଳେ କାର୍ଯ୍ୟରେ ଆସିବ" ଏଥିପାଇଁ ଟିକିଏ ଖୋସାମଦ କରିବାର ମଧ୍ୟ ଲୋଭ ହେଲା; କିନ୍ତୁ ପୁଣି ସେତିକି କରିବାକୁ ମଧ୍ୟ ଭୟ ହେଲା ।

ମିଃ ଦାସ; କିନ୍ତୁ ସେ ପଦକ ଶୁଣି ଟିକିଏ ତାଚ୍ଛଲ୍ୟର ହସ ହସିଲେ । ଗମ୍ଭୀର ଭାବରେ ସେ କହିଲେ, "ଆପଣ ଜାଣନ୍ତି ମୁଁ କିଏ ? ମୁଁ......।"

Digitized by srujanika@gmail.com

ସେ ପଦବୀ ଶୁଣି ମୋର ହୃତ୍‌କମ୍ପ ଜାତ ହେଲା । ମନେ ହେଲା ଭାରି ଗରାପ ଯୋଗରେ ମୁଁ ଯାତ୍ରା ଆରମ୍ଭ କରିଛି ।

ବର୍ଷଣାପ୍ଳୁତ ଭଦ୍ରଲୋକ ସିଗାରେଟରେ ଗୋଟିଏ ଦୀର୍ଘ ଶୋଷଣ ଦେବା ପରେ କହିଲେ, "କ୍ଷେତ୍ଃ ଏଇଥି ପାଇଁ ଏତେ । ସରକାରର ଗୋଟାଏ ନଗଣ୍ୟ ବିଭାଗ, ତାହାର ପୁଣି···ଆପଣ ! ମୋତେ ହସେଇଲେ ଆପଣ !" ଭଦ୍ରଲୋକ କିନ୍ତୁ ହସିଲେ ନାହିଁ, ବ୍ୟେଷ-କଷାୟିତ ନେତ୍ରରେ ଚାହିଁ ରହିଲେ ।

"ଓଃହୋ, ଧୂଷ୍ଟିଆ ବିଭାଗରେ ଚାକିରି ବୋଲି ଏତେ ତେଜ ଆପଣଙ୍କର ନା ?" ମିଃ ଦାସ କହିଲେ ।

ତା'ପରେ ବ୍ୟକ୍ତିର ବଡ଼ମାରୁ ବିଭାଗର ବଡ଼ମାନ୍ତରକୁ ପ୍ରବେଶ କଲା ଦୁହିଁଙ୍କ ମଧ୍ୟରେ କଳହ ।

ସେ ବିଷୟରେ କୌଣସି ସିଦ୍ଧାନ୍ତ ହେବା ପୂର୍ବରୁ (ଅବଶ୍ୟ କୌଣସି ସିଦ୍ଧାନ୍ତ ପାଇଁ ସେମାନେ ବିଚାର କରୁ ନ ଥିଲେ ।) କଳହ ପ୍ରବେଶ କଲା ପ୍ରଦେଶର ବଡ଼ମାନ୍ତରକୁ (ବର୍ଷଣାପ୍ଳୁତ ଭଦ୍ର-ଲୋକ ଓ ମିଃ ଦାସ ଭିନ୍ନ ଭିନ୍ନ ପ୍ରଦେଶର ଲୋକ ।) ଏହି ସ୍ତରରେ ପହଞ୍ଚିବା ପରେ ବିବାଦ ଆଉ ମୌଖିକ ନ ରହି ଶାରୀରିକ ଆଡ଼କୁ ଅଗ୍ରସର ହେବାକୁ ଲାଗିଲା । ମିଃ ଦାସ ଗୋଟିଏ ସିଗାରେଟ ଲଗାଇବାକୁ ଯାଉଥିଲେ, ତାକୁ ରଖିଦେଇ ଗୋଟିଏ ଚୁରୁଟ ବାହାର କରି ସେଥିରେ ଅଗ୍ନି ସଂଯୋଗ କରି ଅଗ୍ରସର ହେଲେ ଭୟଙ୍କର ମୂର୍ତ୍ତି ଧରି ।

ମୁଁ ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ା ହୋଇ ରହିଲି । ଥରେ ଭାବିଲି ଜୀବନ ଦର୍ଶନ ବୁଝାଇ ଏମାନଙ୍କୁ ଶାନ୍ତ କରିବି । ଆରମ୍ଭ କଲି, ପରମେଶ୍ୱରଙ୍କ ସୃଷ୍ଟିରେ···। ଗାଁର ଉଃ ପ୍ରାଃ ସ୍କୁଲରେ

Digitized by srujanika@gmail.com

ପଢ଼ିବା ସମୟରେ ହେଡ଼ପଣ୍ଡିତ ମହାଶୟ ଶିଖାଇଥିଲେ, ଯେ କୌଣସି ରଚନା, ଗାଈ ହେଉ ବା ଗଧ ହେଉ ବା ପୋଇଗଛ ହେଉ ବା ଗ୍ରୀଷ୍ମ ଛୁଟି ହେଉ, ଆରମ୍ଭ କରିବା ସମୟରେ ଉପ-କ୍ରମଣିକାରେ ପରମେଶ୍ୱରଙ୍କଠାରୁ ଆରମ୍ଭ କରିବ, ଏବଂ ତା'ର ଯେଉଁ ଫର୍ମୁଲା ସେ କରି ଦେଇଥିଲେ ସେଇ ଫର୍ମୁଲା ଅନୁସାରେ ଆରମ୍ଭ କଲା ।

କିନ୍ତୁ "ପରମେଶ୍ୱର" ଶୁଣିବା ମାତ୍ରକେ ଦୁଇଜଣଯାକ କହି ଉଠିଲେ "ଷ୍ଟପ୍ ଦ୍ୟାଟ ନନ୍‌ସେନ୍‌ସ" "କୃଷ୍ଣ ନାମ ଆଜଠାରୁ ମୋ ଶ୍ରବଣେ ନ ଶୁଣାଇବଟି କେହି ଗୋ" ଭଙ୍ଗୀରେ ନୁହଁ, ଖାଲି ଘୃଣାରେ ଉତ୍‌କ୍ଷିପ୍ତ ହୋଇ ।

ମନେ ମନେ ଦୁହିଁଙ୍କୁ "ପାଷାଣ୍ଡ" କହି ଝରକା ବାହାରେ ଅପସୃତ ଜଗତ୍‌କୁ ପ୍ରବାହମାନା ପୃଥିବୀର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଚେଷ୍ଟା କଲା । କିଆରି ସବୁ, ଧାନଗଛ, ପୋଖରୀ, ତାଳ ଗଛ, ପାହାଡ଼ ସବୁ ଗୋଟିଏ ସ୍ରୋତରେ ପଡ଼ି ଦଉଡ଼ୁଛନ୍ତି ଅପସୃତ ଜଗତ୍‌କୁ ।

ସେମାନଙ୍କର କଳହ ସେତେବେଳେ ଚରମୋତ୍କର୍ଷକୁ ପ୍ରବେଶ କରିଥାଏ । ମଝିରେ ମଝିରେ ରେଳଗାଡ଼ି ଝନ୍‌ଝନ୍ ଶବ୍ଦରେ କମ୍ପି ଉଠୁଥାଏ । ସେମାନେ ମଧ୍ୟ କମ୍ପି ଉଠୁଥାଆନ୍ତି ତା' ସହିତ । କଣେଇ ଦେଖିଲା ଦୁଇ ଜଣରୁ ଦୁଇ ହଳ ହାତ ପରସ୍ପରର ନାକ ପର୍ଯ୍ୟନ୍ତ ଯାଉଥାଏ ଓ ଫେରୁଥାଏ । ଅବଶ୍ୟ ନିଃଶବ୍ଦରେ ।

ଭାବିଲା, ପୃଥିବୀର ଦୁଇଟି ପ୍ରଥମ ଶ୍ରେଣୀର ଶକ୍ତିଙ୍କ ଯୁଦ୍ଧ ପରି ଏବଂ ଯୁଦ୍ଧ କିଏ ଜିଣୁଛି ଦେଖାଯାଉ ।

ରେଳଗାଡ଼ିର ଗତି ଧୀରେ ଧୀରେ କମି ଆସିଲା ।

ମିଃ ଦାସ ଏଥର ଆଉ ବିବାଦରେ ନ ମାତି ଅନ୍ୟର ବିଛଣା ବର୍ଥର ଅଧିକରୁ ଉଠାଇ ଦେଇ ନିଜ ବିଛଣା ପକାଇ ଦେଇ ଶୋଇ

Digitized by srujanika@gmail.com

ପଢ଼ିଲେ । ଅନ୍ୟ ଜଣକ ଏଥିରେ ଆପତ୍ତି ନ କରି ନୀରବ ରହିଲେ। ହଠାତ୍ ଏ ପରିବର୍ତ୍ତନର କାରଣ ନ ବୁଝିପାରିଲେ ମଧ୍ୟ ଆଶ୍ୱସ୍ତ ହେଲି ।

ପାନ୍, ବିଡ଼ି, ସିଗାରେଟ୍...

ଲଞ୍ଜ ଏଣ୍ଡ୍...ସାର୍ ?

ଓଃ ।

ସେ ଷ୍ଟେସନରେ ଉଠିଲେ ଜଣେ ଭଦ୍ରଲୋକ । ପ୍ରୌଢ଼, ଦୁଗ୍ଧ-ଧବଳ ଧୋତି, ପଞ୍ଜାବି ଓ ଗ୍ଭଦର ସୁନ୍ଦର ମୂର୍ତ୍ତିଟିଏ। ସ୍ନିଗ୍ଧ ହସ। ଦେଖିବା ମାତ୍ରକେ ଭକ୍ତି ଜାତ ହେଲା ।

ଭଦ୍ରଲୋକ ଉଠି ମୃଦୁ ହସି ଗ୍ଭରିଆଡ଼କୁ ଗ୍ଭହିଁଲେ। ତା'ପରେ ନୀରବରେ ମୋ ପାଖରେ ଛିଡ଼ା ହୋଇ ରହିଲେ । କିଛିକ୍ଷଣ ପରେ ଗୁଣୁ ଗୁଣୁ କରି ସୁନ୍ଦର ସ୍ୱରରେ ଗାଇବାକୁ ଲାଗିଲେ, "କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ, ମହାଶନୋ ମହାପାପ୍ମା ବିଦ୍ଧ୍ୟେନ-ମିହ ବୈରିଣଂ ।"

ଗୀତାର ଶ୍ଳୋକ ଶୁଣି ମୋର ଭକ୍ତି ଆହୁରି ବଢ଼ିଗଲା ।

ଝି...ଅ...ଅ...ଅ...କ୍, ଉସ୍ ଉସ୍ ଉସ୍...

ତା'ପରେ ଝିଅ ଅକ୍ ଉସ୍ ଉସ୍ ଉସ୍...

ତା'ପରେ ଝିକ୍ ଉସ୍ ଉସ୍

ତା'ପରେ ଧପ ଧପ ଧପ, ଝିଣ ଝିଣ ଝିଣ ଧପ ଧପ ଧପ୍ ଧପ ଧପ ଧପ...(ଦ୍ରୁତ ତାଳରେ)

ଗାଡ଼ି ପୁଣି ଗ୍ଭଲିବାକୁ ଆରମ୍ଭ କଲା ଅଦ୍ଭୁତ ଭାଷାରେ ସଙ୍ଗୀତ ଗାଇ । ଗୀତା ଶ୍ଳୋକ ଶୁଣିବା ପରେ ମୋର ମନ ଦାର୍ଶନିକ ଚିନ୍ତାରେ ଭରି ଉଠିଥିଲା । ମନେ ମନେ କହିଲି, ଗାଡ଼ିର ଏ କଅଣ ଭାଷା ନୁହେଁ, କି ଭାଷା ଏ ? କାହାରିକୁ ଅନାଇ ରହିଲି ।

Digitized by srujanika@gmail.com

...କୋଟି କୋଟି ସୂର୍ଯ୍ୟ ଘୂରି ବୁଲୁଛନ୍ତି (କାହାକୁ କେନ୍ଦ୍ର କରି ?!)। ପୁଣି ଗୋଟିଏ ଗୋଟିଏ ସୂର୍ଯ୍ୟ ଗ୍ରହପଙ୍କେ ଅସଂଖ୍ୟ ଗ୍ରହ ତାରା ବୁଲୁଛନ୍ତି। ସେମିତି ଗୋଟିଏ ସୂର୍ଯ୍ୟ ଗ୍ରହପଙ୍କେ ବୁଲୁଛି ଆମ ମୃତ୍ କଣିକା, ମହାଶୂନ୍ୟରେ, ମହାକାଶରେ କୋଟି କୋଟି ବର୍ଷ ଧରି ! ସେଥିରେ ପୁଣି କେତେ ଦେଶ ଭିତରୁ ଆମ ଦେଶ। ସେଥିରେ ଆମ ପ୍ରଦେଶ, ସେଥିରେ ଗୋଟିଏ ସ୍ଥାନ, ସେ ସ୍ଥାନରେ ଗୋଟିଏ ରେଳଗାଡ଼ି, ସେ ଗାଡ଼ିରେ ଗୋଟିଏ ଡ଼ବା, ସେ ଡବାରେ ପ୍ରାଣୀ ଆମ୍ଭ ଗାରମାରେ ସ୍ୱାର୍ଥ ସାଧନାରେ ବ୍ୟାପୃତ।

ଝଣ ଝଣ ଝଣ, ଡାଃ ଡାଃ ଡାଃ--ରେଳଗାଡ଼ି ହସି ପକେଇଲା।

କିଛିକ୍ଷଣ ପରେ ଡ଼ବା ଭିତରକୁ ଦୃଷ୍ଟି ଫେରିବାରୁ ଦେଖିଲି ଏ ଅଦ୍ଭୁତ ଦୃଶ୍ୟ !

ନବାଗତ ବଙ୍କ୍ ଶାୟିତ ଭଦ୍ରଲୋକଙ୍କ ଗୋଡ଼ ଘଷି ଦେଉଛନ୍ତି !!

ଭକ୍ତିରେ ମୁଣ୍ଡ ନଇଁ ଗଲା।

ବଙ୍କସ୍ଥ ଭଦ୍ରଲୋକ କିଛିକ୍ଷଣ ଶୋଇ ରହିଲେ ଏବଂ ଆରାମ ଲାଗିବାରୁ କଡ଼ ମୋଡ଼ି ଶୋଇଲେ। କିଛିକ୍ଷଣ ପରେ ହଠାତ୍ ଚମକି ପଡ଼ି ସେ ଉଠି ବସି ଆଶ୍ଚର୍ଯ୍ୟ ଭାବରେ ବୃଦ୍ଧି ଗୋଡ଼ ଉଠାଇ ନେଇ ନମସ୍କାର କରି କହିଲେ, "ଏ କଅଣ କରୁଛନ୍ତି ଆପଣ ?"

ନବାଗତ ବ୍ୟସ୍ତ ହୋଇ କହିଲେ, "ଆ ହା ହା, ନା ନା ନା, ଆପଣ ଶୋଇ ରୁହନ୍ତୁ, ମୁଁ ଗୋଡ଼ ଘଷି ଦେଇ ଆପଣଙ୍କର ସେବା କରେ। ସେ ସୁଯୋଗ ମୋତେ ଦଅନ୍ତୁ ଆପଣ।"

"ନା, ନା, ନା..."

"ହିଁ ହିଁ ହିଁ..."

Digitized by srujanika@gmail.com

ତା'ପରେ ସେଇ ପ୍ରଶ୍ନ, ଆପଣ କିଏ ?

"କଅଣ ମିଳବ ମୋର ପରିଚୟରୁ", ନବାଗତ ସ୍ୱଳ୍ପରେ କହିଲେ ।

ଆପଣଙ୍କର ପରିଚୟ ପାଇବାକୁ ମନ ବ୍ୟାକୁଳ ହେଉଛି କରୁଣମିଳନ୍ତ ବୟସ୍କ ଭଦ୍ରଲୋକଙ୍କର । ମୁଁ ମଧ୍ୟ ମନେ ମନେ ସେ ମିନତିରେ ଯୋଗ ଦେଲି ।

"ମୁଁ ହେଉଛି......"

ମୁଁ ସ୍ତମ୍ଭିତ ଚମକିତ ହେଲି ସେ ନା' ଶୁଣି । ଏଇ ସେଇ ସୁନାମଧନ୍ୟ... ; ଯାହାଙ୍କର ଦର୍ଶନ ବିଷୟକ ପ୍ରବନ୍ଧଗୁଡ଼ିକ ସାରା ପୃଥିବୀରେ ଖ୍ୟାତି ଅର୍ଜନ କରିଛି ! ଧନ୍ୟ ମୋର ଆଜିର ଯାତ୍ରା !!

ବୟସ୍କ ଭଦ୍ରଲୋକ ଏଥର ବ୍ୟସ୍ତ ଭାବରେ ଉଠିଯାଇ ପଡି ନବାଗତଙ୍କର ଚରଣ ସ୍ପର୍ଶ କଲେ ।

ତା'ପରେ, ସେ ବର୍ଥରୁ ନିଜର ବିଛଣା ଉଠାଇ ଦେଇ ତଳେ ଥୋଇ ଦେଲେ, ନବାଗତଙ୍କର ବିଛଣା ନେଇ ସଯତ୍ନେ ବର୍ଥ ଉପରେ ପାରି ଦେଲେ ଏବଂ ନବାଗତଙ୍କୁ ଅତି ବିନୟର ସହିତ ଅନୁରୋଧ କଲେ ବର୍ଥ ଉପରେ ଶୋଇବାକୁ ।

ନବାଗତ ସବିନୟ ଅନୁରୋଧ ଏଡ଼ି ନ ପାରି ଉଠି ଶୋଇଗଲେ ଓ ନାନା ଶ୍ଳୋକ ଗାଇବାକୁ ଲାଗିଲେ । ମଝିରେ ମଝିରେ ତା'ର ଅର୍ଥ ବୁଝାଇବାକୁ ଯାଇ ସେ ନିଜ ଦେଶର ସ୍ୱାର୍ଥାନ୍ଧତା ପ୍ରତି କଟୁ ମନ୍ତବ୍ୟ ଓ ଅନ୍ୟ ଦେଶର ସାଧୁତାର ପ୍ରଶଂସା କରିବାକୁ ଲାଗିଲେ । ସେଥିରେ ତାଙ୍କ ପ୍ରତି ମୋର ସମ୍ମାନ ଆହୁରି ବଢ଼ିଗଲା ।

କିଛିକ୍ଷଣ ପରେ...

Digitized by srujanika@gmail.com

ନବାଗତ ସୂଖନଦ୍ୱାରରେ ଶୟାନ । ବର୍ଥ ଉପରେ ଦୁଇ ପ୍ରତାପୀ ମଧ୍ୟ ପରସ୍ପର ଆଡ଼କୁ ମୁଣ୍ଡ କରି ସୁପ୍ତ । ମଝିରେ ମଝିରେ ସେମାନଙ୍କ ମୁଣ୍ଡ ଦୁଇଟି ବାଡ଼େଇ ହୋଇ ଯାଉଥାଏ । ଆଉ ବର୍ଥସ୍ଥ ଭଦ୍ରଲୋକ ଡ଼ବାର ଚଟାଣ ଉପରେ ବିଛଣା ପାରି ସୁପ୍ତ ।

ମନରେ ପ୍ରଶ୍ନ ଜାଗିଲା, ବର୍ଥସ୍ଥ ଦୁଇଜଣ ତ ପୃଥିବୀର ଦୁଇ ବିବଦମାନ ମହାଦେଶ; କିନ୍ତୁ ନବାଗତଟି କେଉଁ ଦେଶ ?



Digitized by srujanika@gmail.com

# ମହାପୁରୁଷ ବାଗ

ଗଣତନ୍ତ୍ର ଗୋଟାଏ ଶାସନ ପଦ୍ଧତି ନୁହେଁ, ଆଧ୍ୟାତ୍ମିକ ସାଧନା । କଲ୍ପଦେଶ ପରାଧୀନତାରୁ ମୁକ୍ତ ପାଇବାର କିଛି ବର୍ଷ ପରର ଘଟଣା ।—

ଘଟଣାଟି ଘଟିଥିଲା ମହାପୁରୁଷ ବାଗ ଉଦ୍‌ଘାଟିତ ହେବାର କିଛି ଦିନ ପରେ । ଉଦ୍‌ଘାଟନ ବେଳେ ନେତା ମହାଶୟ ଆବେଗ-ଭରା କଣ୍ଠରେ ବକ୍ତୃତା ଦେଇଥିଲେ, ଏ ଉଦ୍ୟାନ ଜାତି-ଧର୍ମ-ଆୟୁ-ପଦବୀ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏଠି ଉଚ୍ଚ-ନୀଚ ଭେଦାଭେଦ ନାହିଁ । ଯେ ଏ ଆଦର୍ଶରେ ବିଶ୍ୱାସୀ ନୁହଁ ଏକଥା ସ୍ପଷ୍ଟ ଜଣାଇ ରଖୁଛି । ଅମିତ ଏଠି ମେହେନ୍ତରର ମଧ୍ୟ ଏକା ବେଞ୍ଚରେ ଉଚ୍ଚପଦସ୍ଥ କର୍ମଚାରୀ ସହିତ ବସିବାର ଅଧିକାର ଅଛି—ଇତ୍ୟାଦି, ଇତ୍ୟାଦି । ବକ୍ତୃତାଟାକୁ ହାତୁଡ଼ି ମାରି ସମସ୍ତଙ୍କ ମୁଣ୍ଡରେ ଢୁକାଇ ଦେବା ପାଇଁ ସେ ବହୁବାର ବଜ୍ରମୁଷ୍ଟିରେ ଟେବୁଲ ବାଡ଼େଇଥିଲେ ।

କିନ୍ତୁ କଥା, କଥା; ବକ୍ତୃତା, ବକ୍ତୃତା; ଆଦର୍ଶ, ଆଦର୍ଶ; ଯେମିତି ଅଦାଲତରେ ସାକ୍ଷୀ ହଲପୂର୍ବକ ସତ କଥା କହିବ ବୋଲି ଶପଥ ନେଇ ମଧ୍ୟ ମିଛ ଅନର୍ଗଳ କହିଯାଏ ଏବଂ ପଚାରିଲେ କୁହେ,

Digitized by srujanika@gmail.com

ଆଜ୍ଞା, ସତ କହିଲେ କଅଣ ଦୁନିଆ ଚଳିବ, ନା କେହି ବଞ୍ଚି ପାରିବେ, କମ୍ବା, ଘୋଡାଏ ପ୍ରକାର ନିୟମ ତିଆରି ହେଲେ ମଧ୍ୟ ଲୁହାଯାଏ, ନିୟମ ଅକ୍ଷରେ ଅକ୍ଷରେ ପାଳିଲେ କାମ ଅଚଳ ହୋଇ ଯିବ; ସେମିତି ମହାପୁରୁଷ ବାଗର ଆଦର୍ଶ, ଆଦର୍ଶରେ ହିଁ ରହିଗଲା ।

କାର୍ଯ୍ୟତଃ ଏଠାରେ କେବଳ ଲୋକମାନେ ପ୍ରବେଶ କରିବାର ଅଧିକାର ପାଇଲେ, ଯେଉଁମାନଙ୍କର ମାସିକ ଆୟ ଦୁଇଅଙ୍କ ବିଶିଷ୍ଟ ସଂଖ୍ୟାରୁ ଊଣା ନୁହେଁ, କମ୍ବା ଯେଉଁମାନେ ଖୁବ୍ ଉଚ୍ଚପଦସ୍ଥ କର୍ମଚାରୀ, କମ୍ବା ବିଧାନ ସଭା ଆଦିର ସଭ୍ୟମାନେ । ସେମାନଙ୍କର ପାଖାପାଖି ଲୋକେ ଯିବାକୁ ଭୟ କଲେ, ଅନ୍ୟେ ପରେ କା କଥା ! ତା' ଛଡ଼ା, ଉଦ୍ୟାନର ମହାର୍ଘ ପରିବେଶ, ଉଦ୍ୟାନ ଭିତରେ ଥିବା ନୃତ୍ୟଶାଳା, ନୃତ୍ୟଶାଳାରେ ମହାର୍ଘ ପରିଚ୍ଛଦଧାରୀ ପାନରତ ନର-ନାରୀ, ପାନ ପରେ ଉଲଗ୍ନ ଉଚ୍ଛୃଙ୍ଖଳତା, ମଖମଲ ଭଳି ଘାସ, ନାନା ବର୍ଣ୍ଣର ଝରଣା ଇତ୍ୟାଦି ପାଇଁ ସାଧାରଣ ଲୋକେ କେବଳ ଆର୍ଥିକ ଦୃଷ୍ଟିରୁ ନୁହେଁ, ନୈତିକ ଦୃଷ୍ଟିରୁ ମଧ୍ୟ ଭୟ କଲେ ମହା-ପୁରୁଷ ବାଗ ଭିତରକୁ ଯିବାପାଇଁ ।

କିନ୍ତୁ ଭୟଟା କାହାରିବ । ତଥାକଥିତ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ମହାପୁରୁଷ ବାଗକୁ ଯାଆନ୍ତି । ତେଣୁ ସାଧାରଣ ଲୋକଙ୍କର ଧାରଣା ଜାତ ହେଲା, ମହାପୁରୁଷ ବାଗକୁ ପ୍ରବେଶ କରି ପାରିଲେ ସେମାନେ ସମ୍ଭ୍ରାନ୍ତ ହେବେ । ମୁନୀନାଞ୍ଚ ମତିଭ୍ରମ, ଅତଏବ ଯାହାର ମତିଭ୍ରମ ହୁଏ, ସେ ମୁନି—ଏହା ଅଯୌକ୍ତିକ ହେଲେ ମଧ୍ୟ, ଅନେକ କ୍ଷେତ୍ରରେ, ଓଲଟା ଟା, ସର୍ପରେ ରଜ୍ଜୁଭ୍ରମ ଭଳି, ସତ୍ୟ ବୋଲି ଧାରଣା ଜନ୍ମେ । ସେଇ ଭ୍ରମରେ ପଡ଼ି ଅନେକେ ମହାପୁରୁଷ ବାଗରେ ପ୍ରବେଶ କରିବାର ଯୋଗ୍ୟତା ହାସଲ କରିବା ପାଇଁ ସସ୍ତ୍ରୀକ ମଦ୍ୟ ପାନ କରିବା, ଅବାଧ ପ୍ରେମ କରିବା, "ଗ୍ଲାଉନ

Digitized by srujanika@gmail.com

ଗୋଟାଏ ଜୁଆ ଖେଳ” ଦର୍ଶନ ବିଷୟରେ ପଢ଼ିବା, ତଥାକଥିତ ବଡ଼ ବଡ଼ ଲୋକମାନଙ୍କୁ ନିମନ୍ତ୍ରଣ କରି ଖୁଆଇବା, ଅପେକ୍ଷାକୃତ ଦରିଦ୍ର ବନ୍ଧୁବାନ୍ଧବମାନଙ୍କ ସଂସର୍ଗ ତ୍ୟାଗ କରିବା ଇତ୍ୟାଦି ଅଭ୍ୟାସ କରିବାକୁ ଲାଗିଲେଣି । ମହାପୁରୁଷ ବାଗରେ ପ୍ରବେଶଟାଇ ହେଲା କାମ୍ୟ । ସେ ଯେକୌଣସି ପ୍ରକାରରେ ହେଉ । ମାସିକ ଆୟବୃଦ୍ଧି ସାଧୁ ଉପାୟରେ ହେଉ ବା ଅସାଧୁ ଉପାୟରେ ହେଉ; ବରଂ ଅସାଧୁ ଉପାୟରେ ହେଲେ ଭଲ, କାରଣ ସେଥିରେ ଖୁବ୍ ଶୀଘ୍ର ଆୟ ବୃଦ୍ଧିର ସମ୍ଭାବନା ଅଛି । ତା’ ସାଙ୍ଗକୁ କିଛି କିଛି ବଡ଼ ବଡ଼ କଥା ଓ ସେ କଥା କହିଲାବେଳେ ଆବେଗ ପ୍ରକାଶ କରିବାର କାଇଦା ହାସଲ କରି ପାରିଲେ ତ ମଣିକାଞ୍ଚନ ସଂଯୋଗ ! ସବୁ ଅସାଧୁତା ସଫଳତାର ସହ ଯୋଡ଼ିହୋଇ ହୋଇଯିବ । ଖାଲି ଏତିକି କଷ୍ଟ କରିବାକୁ ପଡ଼ିବ ଯେ, କଲୁଚା ହେଲା ପରେ ଜଣେ ଅତି ମାନ ମୁଣ୍ଡିଆ ଦେଖି ତା କାନ୍ଧରେ ହାତ ପକାଇ ଦେବାକୁ ପଡ଼ିବ । କିନ୍ତୁ ସେ କଷ୍ଟ କେତେ କ୍ଷଣ ! ଫୋଟୋ ଉଠାଇବାକୁ ଯେତେ ସମୟ ଲାଗେ । ଫୋଟୋଗ୍ରାଫର ତ ପ୍ରସ୍ତୁତ ଥିବେ ।

କିନ୍ତୁ ଆମ ସ୍ୱାମୀଜୀ ସେପରି କୌଣସି ଭ୍ରମରେ ପଡ଼ି ନ ଥିଲେ । ତାଙ୍କ ଭ୍ରମ ଜାତ ହେଲା ନିଛକ ବୋକାମିରୁ । ମହାପୁରୁଷ ବାଗ ଉଦ୍‌ଘାଟନ ବେଳେ ନେତା ମହାଶୟ ଯେଉଁ କଲୁଚା ହେଇ-ଥିଲେ, ସେ ତାକୁ ଓଲଟା ବୁଝିଲେ । ଠିକ୍ ବୁଝିଥିଲେ ଧନୀ କ୍ଲମ୍ବା ପାଦରୀ (ଯେଉଁମାନଙ୍କର ପଦବୀ ଅଛି) ମାନେ । ସ୍ୱାମୀଜୀଙ୍କର ଦୁର୍ଭାଗ୍ୟକୁ (ସେତେବେଳେ ସେ ଅବଶ୍ୟ ସୌଭାଗ୍ୟ ମଣିଥିଲେ) କଲୁଚା ପରେ ନେତା ମହାଶୟ ତାଙ୍କ କାନ୍ଧରେ ହାତ ରଖି ହସି କଥା କହିଥିଲେ ଏବଂ ସେ ଫୋଟୋ ସବୁ ଖବର କାଗଜରେ ବାହାରି ଯାଇଥିଲା । ତଥାପି, ସ୍ୱାମୀଜୀ ସେ ସବୁକୁ ସତ୍ୟ ବୁଝିବା

Digitized by srujanika@gmail.com

ଜଣତ ନ ଥିଲା । ପ୍ରାୟତଃ ଦେଖାଯାଏ ବାହାରକୁ ଯା ସତ୍ୟ ବା ମିଥ୍ୟା ବୋଲି ଜଣେ, ପ୍ରକୃତରେ କଥାଟା ଠିକ୍ ତା'ର ଓଲଟା । କିନ୍ତୁ ବ୍ରମାସ୍ୱଓ ସରଳ ଲୋକ, ତାହାହିଁ ତାଙ୍କର ଦୋଷ । ତାଙ୍କର ସହକର୍ମୀ ବନ୍ଧୁମାନେ ତାଙ୍କୁ ନେତାଙ୍କ ବକ୍ତୃତାର ନହାତ ଜଟିଳ ସତ୍ତାଟା ବୁଝାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ, ସେ ବାହାରର ସରଳ ସତ୍ୟଟାକୁ ହିଁ ଗ୍ରହଣ କଲେ ।

ବ୍ରମାସ୍ୱଓ ଦେଖିବାକୁ ସୁନ୍ଦର । ସେ କବି ପ୍ରକୃତିର । କାମ କରୁ କରୁ ନିଜ ତିଆରି ଗୀତ ସବୁ ଗାଇବା ତାଙ୍କର ଅଭ୍ୟାସ । ସୁନ୍ଦର ଗାଇ ପାରନ୍ତି ସେ । କାମରୁ ଫୁରସତ ପାଇବା ମାତ୍ରକେ ସେ ଗୀତ ରଚନା କରିବାକୁ ବସି ଯାଆନ୍ତି ଓ ଦରଦୀ ହାରମୋନିଅମ୍‌ରେ ସୁର ସଂଯୋଗ କରନ୍ତି । ଗୀତଗୁଡ଼ିକ ତେଲୁଗୁରେ । ତା'ର ଅର୍ଥ କିଛି ବୁଝି ନ ପାରିଲେ ମଧ୍ୟ ମୁଗ୍ଧ ହୋଇ ଯିବା ଭଳି ସୁର ସେସବୁ ଗୀତର । ଜଣକୁ ସେ ଗୋଟିଏ ଗୀତର ଅର୍ଥ ବୁଝାଉଥିବାର ମୁଁ ଶୁଣିଛି; "ମୁଁ ସମସ୍ତଙ୍କ ଗୋଡ଼ ସେବା କରିବାର, ହେ ଜଗନ୍ନାଥ, ତୁମର ଗୋଡ଼ ନ ଥିବାର ସତ୍ୟ କି ?" ବ୍ରମାସ୍ୱଓଙ୍କ ସ୍ତ୍ରୀ ସୁନ୍ଦରୀ । ସେ ମଧ୍ୟ ବ୍ରମାସ୍ୱଓଙ୍କ ସହିତ ତନ୍ମୟ ହୋଇ ଗୀତ ଗାଆନ୍ତି କରୁଣ ପାଣି ଝରୁ ଝରୁ ।

ମହାପୁରୁଷ ବାଗ ଉଦ୍‌ଘାଟିତ ହେଲା ପରେ ବ୍ରମାସ୍ୱଓ ଓ ତାଙ୍କ ସ୍ତ୍ରୀ ଦୁହିଁଙ୍କ ଇଚ୍ଛା ହେଲା, ସେ ପ୍ରମୋଦୋଦ୍ୟାନକୁ ଯିବାପାଇଁ । ସମ୍ମାନିତ ହେବା ପାଇଁ ନୁହଁ, ନେତା ମହାଶୟଙ୍କ କଥାରେ ଅନୁ-ପ୍ରାଣିତ ହୋଇ । ଗତେନ ଶନିବାର ଅପରାହ୍ଣରେ ସେମାନେ ବାହାରିଲେ । ବ୍ରମାସ୍ୱଓ ପିନ୍ଧିଲେ ପରିଷ୍କାର ଧୋତି ଓ ପଞ୍ଜାବି, କାନ୍ଧରେ ଚାଦର । ତାଙ୍କ ସ୍ତ୍ରୀ ପିନ୍ଧିଲେ ନାଲି ରଙ୍ଗର ଖଣ୍ଡେ ଶାଢ଼ୀ । ତାଙ୍କର ପଡ଼ୋଶୀ ଓ ବନ୍ଧୁ ରିକ୍‌ସାବାହକ ଗଙ୍ଗାପ୍ପା ତାଙ୍କୁ ନେଇଗଲେ ।

Digitized by srujanika@gmail.com

ଉଦ୍ୟାନ ଫାଟକ ପାଖରେ ସେତେବେଳେ ଖାଲି ମଟରର ଭିଡ଼ । ମଟରରୁ ବାହାରୁଥାଆନ୍ତି ମହାର୍ଘ ପେଣ୍ଟକୋଟ ପରିହିତ ଓ ମହାର୍ଘ ଝୀନବାସ-ପରିହିତ ନରନାରୀମାନେ । ବାହାରିବା ପରେ ସମସ୍ତେ ଗୋଳେଇ ମିଶେଇ ହୋଇ ଯାଉଥାଆନ୍ତି । ପୁରୁଷମାନଙ୍କର ଯୁବକ-ସୁଲଭ ପରିପାଟୀ ଓ ନାରୀମାନଙ୍କ ପୀମାକୃତ ଅଙ୍ଗ ପ୍ରତ୍ୟଙ୍ଗରୁ ସେମାନଙ୍କର ବୟସ କଳନା କରିବା ଭୁଲ ହେବ । ଅନେକ ନାରୀ ପୁଣି ଟାଣୁଥାଆନ୍ତି ସିଗାରେଟ୍ । ସେମାନଙ୍କୁ ଦେଖିଲେ ଡ଼ାର୍‌ଉଇନ୍‌ଙ୍କ ମତ ପ୍ରତି ସ୍ୱତଃ ସମ୍ମାନ ଆସିଯାଏ । "ହ୍ୟାଲ୍ଲୋ ମିସେସ୍ ପ୍ରକାଶ, ହ୍ୟାଲ୍ଲୋ, ହ୍ୟାଲ୍ଲୋ ମିଷ୍ଟର ଚକ୍ରବର୍ତ୍ତୀ, ହା' ଡୁ ଡୁ" ରେ ବାୟୁମଣ୍ଡଳ ମୁଖରିତ ହୋଇ ଉଠିଥାଏ । ଦୂରକୁ ଖାଲି ଶୁଭୁଥାଏ, ହାଉ ହାଉ । ଗାଁ ହାଟ ଗୋଳମାଳ ଭଳି । ଆଉ ଧୂଆଁ, କିଏ ଯେମିତି ଧୂଆଁ ବାଣ ମାରି ଦେଇଛି । ସମସ୍ତେ ଦଳ ଦଳ ହୋଇ ପ୍ରବେଶ କରୁ-ଥାଆନ୍ତି, ଉଦ୍ୟାନ ଭିତରକୁ । ଦାରୋଗ୍ୟାନ ସଲାମ କରି କରି ହଇରାଣ, ହାତ ତା'ର ବଥେଇ ଗିଲାଣି ନିଶ୍ଚୟ ।

ଏଇ ସମୟରେ ରାମାରାଓ ଓ ତାଙ୍କ ସ୍ତ୍ରୀଙ୍କୁ ନେଇ ଗଙ୍ଗାସ୍ୱାମୀ ରିକ୍‌ସା ଫାଟକ ପାଖରେ ଛିଡ଼ା ହେଲା । ରାମାରାଓ ମଧ୍ୟ ଅନ୍ୟମାନଙ୍କୁ ଅନୁକରଣ କରି ସ୍ତ୍ରୀଙ୍କ ହାତ ଧରି ରିକ୍‌ସାରୁ ଓହ୍ଲାଇ ଦେଇ ଫାଟକ ପାଖରେ ଛିଡ଼ା ହେଲେ । ଦାରୋଗ୍ୟାନର ହାତ ସଲାମ କରୁ କରୁ ଅଧାରେ ସନ୍ଦିଗ୍ଧ ଭାବରେ ଅଟକିଗଲା ଓ ହଠାତ୍ ପ୍ରସାରିତ ହେଲା, ବାଧା ଦେବାର ଭଙ୍ଗୀରେ । ଗିଏ ପେଣ୍ଟକୋଟ ପିନ୍ଧି ନାହିଁ, ସିଏ କେମିତି ଯିବ ଭିତରକୁ !

କିନ୍ତୁ ସୌଭାଗ୍ୟବଶତଃ ଠିକ୍ ସେଇ ସମୟରେ ମହାପୁରୁଷ ବାଗ ଉଦ୍‌ଘାଟକ ମେତା ମହାଶୟଙ୍କ ମଟର ଗାଡ଼ି ଥମକି ଛିଡ଼ା ହେଲା । ବହୁମୂଲ୍ୟ ମଟର ଆନନ୍ଦରେ ନାଚି ଉଠିଲା । ଓହ୍ଲାଇଲେ

Digitized by srujanika@gmail.com

ନେତା ଓ ନେତ୍ରୀ । ସମସ୍ତ ପେଣ୍ଟକୋଟଧାରୀ ସାହବ ଓ ଧର୍ମମାନେ ସାଙ୍ଗରେ ଗୋଡ଼େଇ ଗୋଡ଼େଇ ନେଇଗଲେ ମନ୍ତ୍ରୀଙ୍କୁ ଉଦ୍ୟାନ ଭିତରକୁ । ସେ ସୁଅରେ ଦରଓ୍ୟାନର ଖୀଣ ବାଧା ଭାସିଗଲା । ଶ୍ୟାମାପ୍ରସାଦ ଓ ତାଙ୍କ ସ୍ତ୍ରୀ ମଧ୍ୟ ଭାସିଗଲେ ଭିତରକୁ ସେ ସୁଅରେ ପଡ଼ି । ରାସ୍ତାରେ ଶ୍ୟାମାପ୍ରସାଦ ଥରେ ମନ୍ତ୍ରୀଙ୍କ ସାମନାକୁ ଲାଗିଯାଇ ହସି ନମସ୍କାର କଲେ । ଏଇ ମଧ୍ୟରେ ସେ ଦେଖିଲେ ତାଙ୍କ ସ୍ତ୍ରୀଙ୍କୁ ଉଡ଼ି ନେଇ ଧରି ବୁଲୁଛନ୍ତି ପୂଲସ୍ ସାହେବ ମିଷ୍ଟର ପ୍ରକାଶ୍ । ଶ୍ୟାମାପ୍ରସାଦ ତାହା ଦେଖି ମନେ ମନେ ଗର୍ବ ଅନୁଭବ କଲେହେଁ ଏଥିରେ ଯେ କ ହେଲେ, ତା ନୁହେଁ ।

ସନ୍ଧ୍ୟା ହୋଇଗଲାଣି । ହଠାତ୍ ଜଳି ଉଠିଲା ମହାପୁରୁଷ ବାଗର ନାନା ବର୍ଣ୍ଣର ବିଜୁଳି ଆଲୁଅ ସବୁ । ଉଦ୍ୟାନର ଫୁଆରା ସବୁ ହଠାତ୍ ଆନନ୍ଦରେ ଶରଧା ହୋଇ ଲମ୍ଫ ଦେଲେ ଆକାଶକୁ । ବୃକ୍ଷମାନଙ୍କରେ ଜଳି ଉଠିଲା ନାଲି ନେଳି ରଙ୍ଗର ଫୁଲ ସବୁ । ସେ ବୃକ୍ଷଗୁଡ଼ିକ ମଧ୍ୟ ଅଦ୍ଭୁତ । କଏ ତିନି କୋଣିଆ, କଏ ଗୋଲ କୋଣିଆ, କଏ ପୁଣି ବାଘ ପରି କଏ ହାତୀ ପରି ! ମୁହୂର୍ତ୍ତକେ ବିଦ୍ୟୁତ୍ ଶକ୍ତିର କୁହୁକରେ ମହାପୁରୁଷ ବାଗ, ମହୀଶୂରର ବାଗରେ ପରିଣତ ହୋଇଗଲା ।

ଅଳ୍ପ ସମୟ ପରେ ମହାପୁରୁଷ ବାଗରୁ ନୃତ୍ୟ ଓ ଗାନଶାଳାରୁ ରକ୍ ଏଣ୍ଡ୍ ରୋଲ୍ ବାଦ୍ୟ ବାଜି ଉଠିଲା । ସମସ୍ତେ ପାଗଳ ଭଳି ଦୌଡ଼ିଲେ ନୃତ୍ୟ ଶାଳାକୁ । ନେତା ଓ ନେତ୍ରୀ ମଧ୍ୟ । ଶ୍ୟାମାପ୍ରସାଦଙ୍କ ସ୍ତ୍ରୀଙ୍କୁ ଟାଣି ନେଉଥାଆନ୍ତି ମିଷ୍ଟର ପ୍ରକାଶ୍ । ଶ୍ୟାମାପ୍ରସାଦଙ୍କ ସ୍ତ୍ରୀ ବ୍ୟାକୁଳ ଭାବରେ ଖୋଜୁଥାଆନ୍ତି ତାଙ୍କ ସ୍ୱାମୀଙ୍କୁ । ଏଣେ ଶ୍ୟାମାପ୍ରସାଦଙ୍କୁ ଆକ୍ରମଣ କରିଥାଆନ୍ତି ମିସେସ୍ ସାବିତ୍ରୀ ଧନପତି, ପ୍ରସିଦ୍ଧ ବ୍ୟବସାୟୀ କୋଟି-ପତି ମିଷ୍ଟର ଧନପତିଙ୍କ ସ୍ତ୍ରୀ । ମିସେସ୍ ଧନପତି ଭାବୁଥାଆନ୍ତି ଶ୍ୟାମାପ୍ରସାଦ

Digitized by srujanika@gmail.com

ଜଣେ ବିଧାନ ସଭାର ସଭ୍ୟ, ଆଉ ମିଷ୍ଟର ପ୍ରକାଶ୍ ଭାବଥାଆନ୍ତି ରାମାରାଓଙ୍କ ସ୍ତ୍ରୀ ଜଣେ ନାରୀ ନେତ୍ରୀ ।

ମହାପୁରୁଷ ବାରର ଫାଟକ ବନ୍ଦ ହୋଇଗଲାଣି ସେତେ-ବେଳକୁ । ନୃତ୍ୟଶାଳାରେ ଆରମ୍ଭ ହୋଇ ଗଲାଣି ମଦ୍ୟପାନ । ସମବେତ ନର-ନାରୀ ସମସ୍ତେ ମାଛ ଭଳି ପାନ କରୁଥାଆନ୍ତି ସୁରା । ଆଜି ନେତା-ଇନ୍ଦ୍ର ନିଜେ ନୃତ୍ୟ ଶାଳାରେ ବିରାଜମାନ ସଚୀ ଦେବୀଙ୍କ ସହିତ । ସେମାନଙ୍କର ଉପସ୍ଥିତିର ଉପଯୁକ୍ତ ସମ୍ମାନ ଦେବା ପାଇଁ ଆଜି ସମସ୍ତେ ବହୁତ ବହୁତ ପାନ କରିବାକୁ ବାଧ୍ୟ । ଇନ୍ଦ୍ର ଓ ସଚୀ ଦେବୀ ମଧ୍ୟ ବହୁତ ବହୁତ ପାନ କଲେ । ରାମାରାଓ ମଧ୍ୟ ମିସେସ୍ ଧନପତିଙ୍କ ବାଧ୍ୟ-ବାଧକତାରେ ପଡ଼ି ପାନ କଲେ । ତେଣେ ତାଙ୍କ ସ୍ତ୍ରୀଙ୍କ ମୁଖରେ ମିଷ୍ଟର ପ୍ରକାଶ୍ ମଧ୍ୟ ପେଗ୍ ପରେ ପେଗ୍ ଢାଳୁଥାଆନ୍ତି । ସେ ଖାଲି ହାଁ'ଟା କରି ଛୁଡ଼ା ହୋଇଥାଆନ୍ତି, ଆଉ ତାଙ୍କ ଆଖି ବ୍ୟାକୁଳ ଭାବରେ ଖୋଜୁଥାଏ ସ୍ୱାମୀଙ୍କୁ ।

ରକ୍ ଏଣ୍ଡ୍ ରୋଲ୍ ଉଦ୍ଦାମ ଭାବରେ ବାଜି ଉଠିଲା ଏକ ଉଲଗ୍ନ ନୃତ୍ୟର ସାଙ୍କେତିକ ତାଳରେ । ସେ ତାଳରେ ମଗ୍ନ ହୋଇ ସମସ୍ତେ ବେତାଳିଆ ନାଚିଲେ । କିଛି ସମୟ ପରେ ବାଦ୍ୟର ଶବ୍ଦକୁ ଟପି ଗଲା ଚୁ ଚୁ ଶବ୍ଦ । ମିଷ୍ଟର ପ୍ରକାଶ୍ ଆଉ ସେ ଶବ୍ଦ ମଧ୍ୟ ପ୍ରକାଶ କରି ପାରିଲେ ନାହିଁ । ତାଙ୍କର ମାତାଲ ଓଷ୍ଠ ଯୁଗଳ ମିସେସ୍ ରାମାରାଓଙ୍କ ଗଣ୍ଡ ଦେଶରେ ଲାଗି ରହିଲା । ନେତା ମହାଶୟ ଟଳ ଟଳ ଆସି, ହସି ହସି ମିଷ୍ଟର ପ୍ରକାଶଙ୍କୁ ଠେଲି ଦେଇ ରାମାରାଓଙ୍କ ସ୍ତ୍ରୀଙ୍କୁ ନେଇ ନାଚିବାକୁ ଲାଗିଲେ ଉଦ୍ଦାମ ଭାବରେ ।

ସେତେବେଳେ ରାମାରାଓ ଥାଆନ୍ତି ମିସେସ୍ ଧନପତିଙ୍କ ବଜ୍ର-ଆଲିଙ୍ଗନରେ । ମିସେସ୍ ଧନପତି କହୁଥାଆନ୍ତି, ଡ଼ାର୍ଲିଂ, ତୁମେ କଏ ? ଯିଏ ହୁଅ, ଗୋଟିଏ ମଜୁଆଳି ଗୀତ ଗାଅ । ରାମାରାଓଙ୍କୁ ନିଶା

Digitized by srujanika@gmail.com

ଘାରଥିଲେ ମଧ୍ୟ ଯଥେଷ୍ଟ ଜ୍ଞାନ ଥାଏ । ଗୀତ ଗାଇବାକୁ ସେ କୁଣ୍ଠାବୋଧ କରୁଥାଆନ୍ତି । କିନ୍ତୁ ଯେତେବେଳେ ମିସେସ୍ ଧନପତି ତାଙ୍କ ଉପରେ ଚଢ଼ି ଯାଇ କାଖ ହୋଇ ପଡ଼ି ବାରମ୍ବାର ଅନୁରୋଧ କଲେ, ସେତେବେଳେ ସ୍ୱାମୀସ୍ୱର୍ଣ୍ଣ ଆଉ ସମ୍ଭାଳି ନ ପାରି ଖୁବ୍ ଉଚ୍ଚ ସ୍ୱରରେ ଗାଇବାକୁ ଲାଗିଲେ ସେଇ ଗୀତ, ଯାହାର ଅର୍ଥ, "ମୁଁ ସମସ୍ତଙ୍କ ଗୋଡ଼ତଳ ସେବା କରିବାର, ହେ ଜଗନ୍ନାଥ, ତୁମ ଗୋଡ଼ତଳ ନ ଥିବାର ସନ୍ତ କି ?" ନା, ନା, ନା, ନା ସ୍ୱାମୀସ୍ୱର୍ଣ୍ଣଙ୍କ ମତରେ ଏ ଗୀତ ତାଙ୍କର ଶ୍ରେଷ୍ଠ ରଚନା, ସମସ୍ତେ ଶୁଣି ମୁଗ୍ଧ ହୋଇଯିବେ ।

କିନ୍ତୁ ହାୟ ! ହଠାତ୍ ଏପରି ବେଖାପ୍ପା ଅସଭ୍ୟ ଗୀତ ଶୁଣି ରକ୍ ଏଣ୍ଡ୍ ରୋଲ୍ ବାଦ୍ୟ ବନ୍ଦ ହୋଇଗଲା । ସମସ୍ତେ କ୍ରୁଦ୍ଧ ଭାବରେ ଅନାଇ ରହିଲେ ସ୍ୱାମୀସ୍ୱର୍ଣ୍ଣ ଆଡ଼େ । ନେତା ଗର୍ଜି ଉଠିଲେ, ହୁ ଇଜ୍ ଦ୍ୟାଟ୍ ଫୁହଲ୍ ? ସମସ୍ତ ନର ନାରୀ ଗର୍ଜି ଉଠିଲେ ଶତ ପଣିମା ଭଳି, ହୁ, ହୁ, ହୁ, ହୁ,...... । ନୃତ୍ୟଶାଳା ଭିତରେ ହୁ ହୁ ଝଡ଼ ବୋହିଗଲା । ସମସ୍ତେ ନାଚ ବନ୍ଦକରି କ୍ରୁଦ୍ଧ ନୟନରେ ଛିଡ଼ା ହୋଇ ଥାଆନ୍ତି ।

ସ୍ୱାମୀସ୍ୱର୍ଣ୍ଣର ନିଶା ନିମିଷକେ ଉଭେଇ ଗଲା । ସେ ନେତାଙ୍କ ଆଡ଼େ ହସି ଚାହିଁ ରହିଲେ, ଆଜ୍ଞା, ମୋତେ ଚିହ୍ନି ପାରୁ ନାହାନ୍ତି ? ମୁଁ ପରା ମୋଚି ସ୍ୱାମୀସ୍ୱର୍ଣ୍ଣ, ଆପଣଙ୍କ ଜୋତା କେତେ ଥର ମରାମତି କରି ଆପଣଙ୍କ ଘରକୁ ନେଇଯାଇଛି । ଆପଣଙ୍କ ମଧ୍ୟ ମୋର ଫୋଟୋ ଛାପାଇଛନ୍ତି ଖବର କାଗଜରେ ।

"ହୁ ହୁ ?" ଝଡ଼ ଆହୁରି ଜୋରରେ ବୋହିବାକୁ ଲାଗିଲା । ଗଳା ଧକ୍କା ଖାଇ ସ୍ୱାମୀସ୍ୱର୍ଣ୍ଣ ଓ ତାଙ୍କ ସ୍ତ୍ରୀ ନୃତ୍ୟଶାଳାରୁ ବିତାଡ଼ିତ ହେଲେ ।

Digitized by srujanika@gmail.com

ତାହାର କିଛୁଦିନ ପରେ ଦିନେ ଦେଖିଲି ରାମାରାଓଙ୍କ ଘର ପାଖରେ ପୁଲିସ୍ । ପଚାରି ବୁଝିଲି ରାମାରାଓ ପୁଲିସ୍ ସାହେବଙ୍କ ଘରୁ ଜୋତା ଚୋରି କରିଥିବାରୁ ପୁଲିସ୍ ତାଙ୍କୁ ଧରିବାକୁ ଆସିଛି । ରାମାରାଓଙ୍କୁ ହାତକଡ଼ା ପକାଇ ପୁଲିସ୍ ନେଇଗଲେ । ରାମାରାଓଙ୍କ ସ୍ତ୍ରୀ ବାଡ଼ ଉଠି କହିଲେ, କାହିଁକି ତୁମେ ମନ୍ତ୍ରୀଙ୍କ କଥାରେ ଭୁଲି ସେ ଯୋଡ଼ା ବଗିଚାକୁ ଯାଇଥିଲ ଗୋ···କାହିଁକି !

ରାମାରାଓଙ୍କୁ ପଚାରିଲି, କଥାଟା କଅଣ ରାମାରାଓ ? ତୁମେ ଜୋତା ଚୋରି କରିଚ ସତେ ? ରାମାରାଓଙ୍କ ଆଖିରୁ ପାଣି ଝରି-ପଡ଼ିଲା । ସେ ମ୍ଳାନ ଭାବରେ ହସି କହିଲେ, ଏକଦମ୍ ମିଛ କଥା ଆଜ୍ଞା । ମୋର ମହାପୁରୁଷ ବାଗ ଭିତରକୁ ଯିବାର ଫଳ ଇଏ । ବିଶ୍ୱାସ ନ କରି ପଚାରିଲି, କିନ୍ତୁ ତୁମ ଘରୁ ତ ପୁଲିସ୍ ସାହେବଙ୍କ ଜୋତା ବାହାରିଲା ? ସେ ସେମିତି ହସି କହିଲା, ମୁଁ ବି ତ ବୁଝି ପାରୁନାହିଁ ସେ କଥା ।

ରାମାରାଓ ଜେଲ୍ ହାଜତରେ ରହିଲେ । ତାଙ୍କୁ ଜାମିନରେ ମଧ୍ୟ କେହି ନେଲେ ନାହିଁ । ଛ' ମାସ ପରେ ବିଚାର ଶେଷ ହେଲା । ସାପ୍ତ ହେଲା ଚୋରି ପ୍ରମାଣିତ ହୋଇ ଥିବାରୁ ରାମାରାଓଙ୍କୁ ଛ' ମାସ ଜେଲ । ରାମାରାଓ ଓକିଲ ଦେବାକୁ ନାରାଜ ହେଲା ଏବଂ ଦୋଷ ସ୍ୱୀକାର କଲା । ବିଚାରକଙ୍କୁ ବିଶେଷ କଷ୍ଟ ପଡ଼ିଲା ନାହିଁ ବିଚାର କରିବାକୁ ।

ଛ' ମାସ ଜେଲ୍ ମିଆଦ ପରେ ରାମାରାଓ ଜେଲ୍‌ରୁ ଖଲାସ ହୋଇ ବାହାରିଲେ ଉପରଓଳ । ସେଦିନ ଥାଏ ମହାପୁରୁଷ ବାଗ ଉଦ୍‌ଘାଟିତ ହେବାର ବାର୍ଷିକ ଉତ୍ସବ । ରାମାରାଓ ସେଇବାଟେ ଘରକୁ ଫେରୁଥାନ୍ତି । ଫାଟକ ପାଖରେ ଛିଡ଼ା ହୋଇ ସେ ମାଇକ୍ ବାହିତ ନେତାଙ୍କ ଗୁରୁଗମ୍ଭୀର ବକ୍ତୃତା ଶୁଣିଲେ, "ମହାପୁରୁଷ ବାଗ

Digitized by srujanika@gmail.com

ତା'ର ଆଦର୍ଶରେ ଆଗେଇ ଚାଲିଛି, ଜାତି-ଧର୍ମ-ଆସ୍ଥ-ପଦବୀ ନିର୍ବିଶେଷରେ ଏଠି ସମସ୍ତଙ୍କର ପ୍ରବେଶ ଅଧିକାର ଅଛି, ମୁଁ ଆଜ ପୁଣି ଥରେ ଜଣାଇ ରଖୁଛି, ଏ ଦେଶରେ ଆଜ ଗଣତନ୍ତ୍ର ଶାସନ ଥିବାରୁ ଦେଶ ଆଗେଇ ଚାଲିଛି ହୁ ହୁ କରି......"

ରାମାରାଓ ଶୁଣି ମ୍ଳାନ ଭାବରେ ହସିଲେ। ହଠାତ୍ ଦୁମ୍ ଦୁମ୍ ଶବ୍ଦ ଶୁଣି ଚମକି ପଡ଼ି ରାମାରାଓ ଦେଖିଲେ ନେତା ଟେବୁଲ ଉପରେ ବିଧା ମାରୁଛନ୍ତି।

ରାମାରାଓ ଏଥର ଠୋ ଠୋ କରି ହସି ଉଠିଲେ। ଦରୱାନ ତାଙ୍କୁ ସେଠାରୁ ତଡ଼ି ଦେଲା। ଘରକୁ ଆସି ରାମାରାଓ ଦେଖିଲେ ସ୍ତ୍ରୀ ନାହିଁ। ଶୁଣିଲେ ପୁଲିସ୍ ତାକୁ କେଉଁଠି ଧରି ନେଇ ଯାଇଥିଲା ପୁଲିସ୍ ସାହେବ ଘରକୁ। ତା' ପରେ ସେ ହଠାତ୍ କୁଆଡ଼େ ଚାଲି ଯାଇଛି।

ଘରର ଏକ କୋଣରେ ତାଙ୍କର ଦଦସ୍ତ ହାର୍ମୋନିୟମ୍, କବିତାଖାତା ଓ ଜୋତା ମରାମତି ସାଜସରଞ୍ଜାମଗୁଡ଼ିକ ସାଇତା ହୋଇ ଥୁଆ ହୋଇଛି। ଗଲାବେଳେ ତାଙ୍କ ସ୍ତ୍ରୀ ସେ ସବୁ ସଜାଡ଼ି ସାଇତି ରଖିଦେଇ ଯାଇଛନ୍ତି। ରାମାରାଓ କବିତାଖାତା ଆଣି କବିତା ଲେଖି ବସିଲେ।

କ କବିତା ଲେଖିଲେ କେଜାଣି ?

(ଗଳ୍ପଟି ସଂପୂର୍ଣ୍ଣ କାଳ୍ପନିକ, ଏବଂ ସାହିତ୍ୟ ଆଳାପନୀ, କେନ୍ଦ୍ରାପଡ଼ା ଆନୁକୂଲ୍ୟରେ ପ୍ରାପ୍ତ)



# ମିମିର ଭୂଗୋଳ ଶିକ୍ଷା

ବ୍ୟର୍ଥତା ଜୀବନ ବାବୁଙ୍କ ମନକୁ ଘାରିଦିଏ । ସବୁଠି ବ୍ୟର୍ଥତା, ନିଜର ପ୍ରତିଷ୍ଠା ପାଇଁ ସେ ଯେତେ ମିଥ୍ୟା ଓ କୁଟନୀତିର ଆଶ୍ରୟ ନେଇଛନ୍ତି, ଯେତେ ଦେଖାଣିଆ ଜ୍ଞାନ ଆହରଣ କରିଛନ୍ତି, ଯେତେ ବ୍ୟବସାୟ କରିଛନ୍ତି, ଯେତେ ଧର୍ମାନୁଷ୍ଠାନମାନଙ୍କରେ ବକ୍ତୃତା ଦେଇଛନ୍ତି, କେଉଁଠି କିଛି କରି ପାରି ନାହାନ୍ତି । ପ୍ରତିଷ୍ଠା ପାଇଁ ଗୋଟାଏ ନୂଆ ଉପାୟ ମୁଣ୍ଡକୁ ଆସିଲେ ତାକୁ କାର୍ଯ୍ୟକାରୀ କରିବା ପରେ କିଛି ଫଳ ପାଆନ୍ତି ସତ; କିନ୍ତୁ ତାହା ଦୁଏ କ୍ଷଣସ୍ଥାୟୀ । ଦୁଏ ତି କଟକର ନର୍ଦ୍ଦମା ସଫା କରିବା ପାଇଁ ଗୋଟିଏ ସମିତି ସ୍ଥାପନ କଲେ, ସେଥିରେ ସେ ସଭାପତି ହୋଇ ବକ୍ତୃତା ଦେବାକୁ ଲାଗିଲେ । ଖବରକାଗଜରେ ନାଁ ବାହାରିଲା ତଥାପି ତାଙ୍କର ତୃପ୍ତି ହେଲା ନାହିଁ କାହିଁ ଏ ପର୍ଯ୍ୟନ୍ତ ବି ଲୋକେ ତାଙ୍କର ଜନ୍ମବାର୍ଷିକୀ ମାନଉଲେ ନାହିଁ । ମନ ତାଙ୍କର ଘାରି ହୁଏ । ମଝିରେ ମଝିରେ ସେ ସମସ୍ତଙ୍କୁ ଗାଳି ଦିଅନ୍ତି । ଲୋକଗୁଡ଼ାକ ଅକୃତଜ୍ଞ, ବଦ୍‌ମାସ୍ । ସେ ସମିତି ଛାଡ଼ି ସେ ଆଉ ଏକ ନୂଆ ସମିତି ଗଢ଼ିବାର ଯୋଜନା କରନ୍ତି । ଲୋକେ ମଧ୍ୟ ଭୁଲି ଯାଆନ୍ତି ତାଙ୍କୁ । ପୁରୁଣା ମନ୍ତ୍ର ନୂଆ ବୈଦ୍ୟ

Digitized by srujanika@gmail.com

ପାଖରୁ ନୂଆ ଔଷଧ ଖାଇ କିଛି ଫଳ ପାଏ ବା ପାଇଲା ପରି ମନେ କରେ କିନ୍ତୁ କିଛି ଦିନ ସେ ଔଷଧ ବ୍ୟବହାର କଲାପରେ ପୁଣି ଯେଉଁ କଥାକୁ ସେଇ କଥା । ଜୀବନ ବାବୁଙ୍କ ଦଶା ସେମିତି । ନିଜର ପ୍ରତିଷ୍ଠା, ସମ୍ମାନ, ସ୍ମରଣୀୟ ହେବାର ମୋହ ତାଙ୍କୁ ପୂର୍ଣ୍ଣ ବେଗ ଭଳି ମାଡ଼ି ବସିଛି । ନାକରେ ଦଉଡ଼ି ତାଙ୍କର, କିଛି ଗୋଟାଏ ଚମକ୍‌ପ୍ରଦ କରିବାକୁ ସେ ସର୍ବଦା ବ୍ୟାକୁଳ ଓ ଚିନ୍ତିତ । ସାହିତ୍ୟ, ରାଜନୀତି, ବ୍ୟବସାୟ, ଧର୍ମ ଆଦି ସବୁଥିରେ ସେ ହାତ ମାରି ପୂର୍ଣ୍ଣ ଯୋଗୀ, ଏଣିକି ଗୁଣି ଗାଉରଡ଼ ଆଶ୍ରୟ ନେଲା ଭଳି ସେ ନାନା ଅଦ୍ଭୁତ ସମିତି ଗଢ଼ିବାରେ ଲାଗି ପଡ଼ିଛନ୍ତି ।

ଜୀବନର ବୃଦ୍ଧାପ୍ୟ ଭାଗରେ ପାଦ ଦେଲା ପରେ ସେ ମନସ୍ଥ କଲେ, ନାଁ ମୋହାସ କିଛି ହେବ ନାହିଁ, ମିମିକୁ ଗଢ଼ିବାକୁ ହେବ...... ।

ମିମି ତାଙ୍କର ଏକ ମାତ୍ର ବଂଶଧର । ବୟସ ବର୍ତ୍ତମାନ ନଅ ବର୍ଷ । ପଞ୍ଚମ ଶ୍ରେଣୀରେ ପାଠ ପଢ଼େ । ଜୀବନ ବାବୁ ଜୀବନପଣ କରି ତାକୁ ଗଢ଼ିବାରେ ଲାଗିଛନ୍ତି । ତାକୁ ଗଢ଼ିବାର ନାନା ଯୋଜନା ଅଛି ତାଙ୍କର; କିନ୍ତୁ ସେ, ସେ ଯୋଜନା ସବୁ ସମ୍ଭାଳିବାରେ ମିମିର ବା ସାମର୍ଥ୍ୟ କେତେ ? ହେଲେ ଜୀବନ ବାବୁଙ୍କ ସେଥିପ୍ରତି ନଜର ନାହିଁ । ବ୍ୟର୍ଥତା ତାଙ୍କୁ କରିଛି ନିର୍ମମ ସ୍ୱପ୍ନବିଳାସୀ, ବ୍ୟର୍ଥତା ତାଙ୍କୁ କରିଛି ଅନ୍ଧ ଓ ନିଷ୍ଠୁର ।

ସକାଳୁ ବ୍ୟାୟାମ, ତା'ପରେ ଦୁଇଟି ଅଣ୍ଡା ଓ ଗିଲାସେ ଲେମ୍ବୁ ସରବତ ପରେ ନାଚ ଓ ଗୀତ ଶିକ୍ଷା, ତା'ପରେ ପଢ଼ା, ତା'ପରେ ତାଟିଆଏ ମାଂସ ସହ ଭାତ ଖାଇ ଇସ୍କୁଲ, ଇସ୍କୁଲରୁ ଫେରି ପୁଣି ଗୀତ, ଭଲଲ ଏମିତି ରାତି ଏଗାର ପର୍ଯ୍ୟନ୍ତ । ମିନିଟିଏ ବି ଫୁରୁସତ ନାହିଁ । ଗୃହିଣୀ, ଚାକର ବାକର ସମସ୍ତେ ଲାଗିଛନ୍ତି ମିମି ପଛରେ ।

Digitized by srujanika@gmail.com

ଟଙ୍କା ପାଣି ପରି ଖରଚ ହେଉଛି, ନ ଥିଲେ ଧାର ହେଉଛି ଭ୍ରୂକ୍ଷେପ ନାହିଁ ସେଥିପ୍ରତି । ସ୍କୁଲର ବାଳକଙ୍କୁ ସୁବର୍ଣ୍ଣ ସୁଯୋଗ ପଡ଼ିଯାଇଛି, ବେଶ୍ ଦି ପଇସା ହାତପେଠ ହେଉଛି ତାଙ୍କର ।

ହେଲେ ମିମିର ବା ଶକ୍ତି କେତେ ସେ ନିଆଁଗିଳା ଯୋଜନା ସବୁକୁ ସମ୍ଭାଳିବାକୁ । ସେ ଯୋଜନାରେ ମିମିର ମଙ୍ଗଳ ବା ଭବିଷ୍ୟତର ତ ସ୍ଥାନ ନାହିଁ, ଅଛି କେବଳ ଜୀବନ ବାବୁଙ୍କ ପ୍ରତିଷ୍ଠା ପାଇବାର ନିର୍ମମ ଅନ୍ଧ ବ୍ୟଗ୍ରତା । ସେ ଯୋଜନା ଭିତରେ ମିମି ନିଷ୍ପେଷିତ ହୋଇ ଦିନକୁ ଦିନ ଆହୁରି ଦୁର୍ବଳ ହୋଇ ପଡ଼ୁଛି ।

ମିମି ପଢ଼ାରେ ଭୁଲ କଲେ ଜୀବନ ବାବୁ ଯେତେବେଳେ ଧୈର୍ଯ୍ୟ ହରାଇ ତାକୁ ନିର୍ମମ ଭାବରେ ପ୍ରହାର କରନ୍ତି ସେତେ-ବେଳେ ତାଙ୍କ ବନ୍ଧୁ ଭାଇ ତାଙ୍କୁ କହନ୍ତି, ଶାନ୍ତ ହ, ଶାନ୍ତ ହ, କାହିଁକି ସେଥିରେ ମାତୁଚୁ, ଅସ୍ୱାଭାବିକ ଭାବରେ ଚେଷ୍ଟା କଲେ ଫଳ ଓଲଟା ହୁଏ । ଜୀବନ ବାବୁ ଥରେ ରାଗିଯାଇ କହିଲେ ତୁମର କଅଣ ଗଲା, ମୋ ଗାଈକୁ ମୁଁ ଲଞ୍ଜବାଟେ ଖୋଇବି । ତାଙ୍କ ବନ୍ଧୁ ଭାଇ ହୃଦୟ ବାବୁ ମ୍ଳାନ ହସି କହିଥିଲେ, ତୁ ବୁଝିପାରୁନୁ ଜୀବ, କେତେ ନିର୍ମମ ତୁ ହୋଇ ଯାଉଚୁ । ଯେଉଁ ମିମିକୁ ତୁ...... । ସେ ଆଉ କହି ନ ପାରି ମୁହଁ ବୁଲାଇ ଦେଇଥିଲେ ।

ମିମିର ସତେ ସେ ଦିନ ଆଉ ନାହିଁ । ସରି ଯାଇଛି ସେ ଦିନ । ତାକୁ ଯେତେବେଳେ ୧ ବର୍ଷ ବୟସ ସେତେବେଳେ ଦିନେ ତା'ର ବାପା ଶୋଇଥିବା ବେଳେ ମିମି ବାପାର ନାକକୁ ଅନେକ ବେଳ ଯାଏ ଦେଖି ଶେଷରେ ସିଦ୍ଧାନ୍ତ କଲା; ନାକଟା ନିହାତି ଅଡୁଆ କରୁଥିବ ବାପାଙ୍କୁ ନିଶ୍ଚୟ । ନାକକୁ ସେ ଚାପୁଡ଼ି ଧରି ଉଠାଇ ଫିଙ୍ଗି ଦେବାକୁ ଚେଷ୍ଟା କଲା । ତାହାର ନଖରେ ବାପାଙ୍କ ନାକ ଚିରି ହୋଇଗଲା । ରକ୍ତ ବୋହିଗଲା । ଜୀବନ ବାବୁଙ୍କ ନିଦ ଭାଙ୍ଗିଗଲା

Digitized by srujanika@gmail.com

ଷ୍ଟୁହିଁକନା; କିନ୍ତୁ ସେ ଉଠି ପାରିଲେ ନାହିଁ କାରଣ ତାଙ୍କ ବୁକୁରେ ବସିଥିବା ମିମି ପଡ଼ିଯିବ ବୋଲି । ନିଜ ଦନ୍ତ କାନରେ ରକ୍ତ ପୋଛି ସେ ହସି ମିମିକୁ ଚୁମ୍ବନ ଦେଲେ । ତା'ପରେ ପାଣି ଲଗି ସେ କ୍ଷତ ଘା ହୋଇ ଶୁଖିବାକୁ ଲାଗିଲା ଅନେକ ଦିନ । କିଛି ଖର୍ଚ୍ଚ ମଧ୍ୟ ହେଲା ସେଥିପାଇଁ । ସେ ଚିହ୍ନ ଆଜି ପର୍ଯ୍ୟନ୍ତ ଅଛି । ସେତେବେଳେ କିନ୍ତୁ ଜୀବନ ବାବୁଙ୍କୁ କେହି ଦାଗ କଥା ପଚାରିଲେ ସେ ହସି ହସି ତା'ର ଇତିହାସ କହୁଥିଲେ ଗର୍ବର ସହିତ, ଯେପରି ଯେମିତି କୌଣସି ଯୁଦ୍ଧରେ ସେ ଖଡ୍‌ଗାଘାତର ଚିହ୍ନ । ସତ କହିଲେ, ଏ ବି ତ ଜୀବନସଂଗ୍ରାମର ଗୋଟାଏ ଦାଗ ।

ଜୀବନ ବାବୁଙ୍କ ବଡ଼ ଭାରି ଶାନ୍ତ ପ୍ରକୃତିର ଲୋକ । ସାମାନ୍ୟ ଗୋଟିଏ ସ୍କୁଲର ଟିଚର । ଯାହା ସଚ୍ଚୋଟ ଉପାୟରେ ରୋଜଗାର କରନ୍ତି ସେଥିରେ ଦୁଃଖରେ ଚଳୁଥିଲେ ମଧ୍ୟ କେବେହେଁ ତାଙ୍କୁ କେହି ଆପତ୍ତି କରିବାର ଶୁଣି ନାହାନ୍ତି । ସଦାବେଳେ ହସ ହସ ମୁହଁଟି । ଟିଚେରି କାମ ସାରି ସିଧାସଳଖ ଘରକୁ ଆସି ଗୃହାଳ ସଫା, ନର୍ଦ୍ଦମା ସଫା, କନ୍ଥା ସିଲେଇ, ଭାଗବତ ପଢ଼ା, ପୂଜା ଆଦି କାମରେ ସେ ଲାଗି ଯାଆନ୍ତି । ତାଙ୍କର ସ୍ତ୍ରୀ ମଝିରେ ମଝିରେ ଦୁଃଖ କଷ୍ଟ କଥା କହି ବସିଲେ ସେ କହନ୍ତି, ଭଗବାନଙ୍କ ପ୍ରତ୍ୟେକ କଥାରେ ଆମେ ଯଦି ଆପତ୍ତି କରୁ ତେବେ ସୁଖ ମିଳିବ କେଉଁଠୁ ? ଲକ୍ଷେ ପାଇଲେ ବି ସୁଖ ମିଳିବ ନାହିଁ । ସେ ଯାହା ଦେଉଛନ୍ତି କୁଣ୍ଠି ଗୁଣ୍ଠି ଦଉଛନ୍ତି । ବେଶୀ ଦେଲେ ଆମେ ସମ୍ଭାଳି ପାରିବୁ ନାହିଁ ।

ସ୍ତ୍ରୀ କିନ୍ତୁ ଛାଡ଼ିବାର ନୁହେଁ । କହିଲେ, 'ଏସବୁ ଅଫାରିଗ ଲୋକର କଥା । ତୁମ ଭଳି ଯଦି ସମସ୍ତେ ହୁଅନ୍ତେ ତାହାହେଲେ ଏ ଦେଶ କେବେଠୁଁ ଦରିଦ୍ର ହୁଅନ୍ତାଣି ।

Digitized by srujanika@gmail.com

ହୃଦୟ ବାବୁ ହସି କହିଲେ, ତା ହୁଏତ ସତ; କିନ୍ତୁ ଧର୍ମ ଉଚ୍ଛୃଙ୍ଖଳ ଦେଶ ବା ଲୋକ ତାହାଠୁ ଆହୁରି ବିପଦ୍‌ଜନକ । ଅନେକ ଲୋକର କଷ୍ଟ ଓ ମୃତ୍ୟୁର କାରଣ ହୁଏ ସେ ।

ସ୍ତ୍ରୀ ଦୀର୍ଘ ନିଶ୍ୱାସ ପକାଇ କହିଲେ, ତୁମରି ମାଙ୍ଗର କେତେ ଲୋକ ଉପରକୁ ଉପରକୁ ଯାଇ କେଉଁଠି ଉଠିଲେଣି, ଆଉ ତୁମେ......

ହୃଦୟ ବାବୁ ହସିଲେ । କହିଲେ, କେହି ସିନା ଆନନ୍ଦ କେମିତି ମିଳିବ ସେ ଚିନ୍ତା କରନ୍ତି, ନା ଖାଲି ଅନ୍ୟକୁ ଚପି ଯିବାର ଦୁଶ୍ଚିନ୍ତା ! ଜ୍ଞାନ ଦେଇ, ଅର୍ଥ ଦେଇ, କ୍ଷମତା ଦେଇ, ଶକ୍ତି ଦେଇ ସବୁଥିରେ ମୁଁ କେମିତି ଅନ୍ୟକୁ ଚପି ଯିବି । ଗାଗାରିନ୍ ମହାଶୂନ୍ୟକୁ ଗଲା ! ଅନେକ ଆକ୍ଷେପ କଲେ ଜଣେ ରୁଷୀୟ ଏ କଥା ପାରିଲା, ଆମେ ପାରିଲୁ ନାହିଁ । କହୋ, କେତେବର୍ଷ ପରର ଇତିହାସ କଅଣ କହିବ ରୁଷୀୟ ଲୋକ ଯାଇଥିଲା, ଆଉ କେହି ପାରି ନ ଥିଲେ ? ମାନବ ଜାତିର ବିକାଶର ଇତିହାସ କହିବ ଅମୁକ ଯୁଗରେ ମାନବ ଜାତିର ବୁଦ୍ଧି ଏମିତି ବିକଶିତ ହୋଇଥିଲା । ଯିଏ ବି ଯାହା କରୁଛି ସେ ଯଦି ମାନବ ଜାତିର ଚରମ ବିକାଶ ପାଇଁ କରେ ସେଥିରେ ସମସ୍ତଙ୍କର ମଙ୍ଗଳ । ନାହିଁ ତ ଗଳା କଟାକଟି ଯୁଦ୍ଧ । ସେ ବିକାଶରେ କିଛି ଲାଭ ନାହିଁ, ବରଞ୍ଚ ମରଣ । ସ୍ତ୍ରୀ ତାଙ୍କର ମୁହଁ ମୋଡ଼ି ଚାଲିଗଲେ ।

ହୃଦୟ ବାବୁ ମିମିକୁ ଭାରି ସ୍ନେହ କରନ୍ତି । ମିମିର ମଧ୍ୟ ବଡ ବାପା ଅନ୍ତ ପ୍ରାଣ । ଜୀବନ ବାବୁ ଯେତେବେଳେ ପଢ଼ାଇ ପଢ଼ାଇ ମିମିକୁ ପ୍ରହାର କରନ୍ତି ସେତେବେଳେ ହୃଦୟ ବାବୁ ତାଙ୍କ ଘର ଭିତରେ ଆଖି ବୁଜିଦେଇ ବସି ଲୁହ ପୋଛନ୍ତି । ନିହାତି ସହି ନ ପାରିଲେ "ଶ୍ରୀକୃଷ୍ଣ, ଶ୍ରୀକୃଷ୍ଣ" ଜପନ୍ତି ।

Digitized by srujanika@gmail.com

ସେଦିନ ସ୍କୁଲରେ ଜୀବନ ବାବୁ ଭୂଗୋଳ ପଢ଼ା ଦେଇ ଗଲେ ଭୁଲାଭଣାଲି ସଭିଙ୍କୁ । ମିମି ଭୂଗୋଳ ମୁଖସ୍ଥ କରିବାକୁ ଲାଗିଲା··· କେତେଗୁଡ଼ିଏ ଲୋକ ମିଶି ହୁଏ ଗୋଟିଏ ପରିବାର ଓ ଘର । କେତେଗୁଡ଼ିଏ ଘର ମିଶି ଗୋଟିଏ ଗ୍ରାମ ହୁଏ । କେତେଗୁଡ଼ିଏ ଗ୍ରାମ ମିଶି ଗୋଟିଏ ଥାନା, କେତେଗୁଡ଼ିଏ ଥାନା ମିଶି ହୁଏ ସବ୍‌ଡିଭିଜନ । କେତେଗୁଡ଼ିଏ ସବ୍‌ଡିଭିଜନ ମିଶି ଗୋଟିଏ ଜିଲ୍ଲା । କେତେଗୁଡ଼ିଏ ଜିଲ୍ଲା ମିଶି ଗୋଟିଏ ପ୍ରଦେଶ । କେତେଗୁଡ଼ିଏ ପ୍ରଦେଶ ମିଶି ହୁଏ ଗୋଟିଏ ଦେଶ । କେତେଗୁଡ଼ିଏ ଦେଶ ମିଶି ହୁଏ ଏକ ମହାଦେଶ । ଏପରି କେତେଗୁଡ଼ିଏ ମହାଦେଶ ମିଶି ପୃଥିବୀର ସ୍ଥଳଭାଗ ।

ମିମି ମୁହଁରେ ପଢ଼ି ଯାଉଛି ସତ, ମନ କିନ୍ତୁ ତା'ର ବଡ଼ ବାପାଙ୍କଠି ଓ ଶଙ୍କି ଭଲେଇଠି । ରାତି ଏଗାର ବାଜିଲାଣି । ବୋଉ ସେପେଇଶାଳରେ ଚୂଲ୍ଲୀ ମୁଣ୍ଡରେ ଶୋଇ ପଡ଼ୁଛି । ମିମିକୁ ଖାଇବାକୁ ଡ଼ାକିବାକୁ ତାଙ୍କର ସାହସ ନାହିଁ । ଜୀବନ ବାବୁ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି, ସେ ସେତେବେଳେ ବେଦ ଉପନିଷଦ୍‌ରୁ ଶ୍ଳୋକ ସବୁ ଉଦ୍ଧାର କରି ଭୁଲାଭଣାଳୀଙ୍କର ସମାଜରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାରେ ଲାଗିଛନ୍ତି । ଆରପଟ ଘରେ ହୃଦୟ ବାବୁ ଅପେକ୍ଷା ବସିଛନ୍ତି । ମିମିର ପଢ଼ା ସରିଲେ ସେ ଓ ତା'ର ଶଙ୍କି ତାଙ୍କ ସହିତ ନିତି ଖାଆନ୍ତି । ଶଙ୍କି ଏପର୍ଯ୍ୟନ୍ତ ଖାଇ ନାହିଁ, ମ୍ୟାଉଁ ମ୍ୟାଉଁ ରଡ଼ି ଛାଡ଼ୁଛି । ମିମି ଖାଇବାକୁ ନ ବସିଲେ ସେ ଖାଏ ନାହିଁ ।

ମିମିର ମନ ବଡ଼ ବାପାଙ୍କଠି ଆଉ ଶଙ୍କିଠି । ତଥାପି ସେ ଢୁଳାଇ ଢୁଳାଇ ପଢ଼ି ଚାଲିଛି । ବାପାଙ୍କ କଡ଼ା ଆଦେଶ, ସେ ନ ଫେରିବା ପର୍ଯ୍ୟନ୍ତ ମିମି ଯେପରି ପଢ଼ା ଜାଗାରୁ ନ ଉଠେ । ସେ ଆଦେଶ ଅମାନ୍ୟ କରିବାକୁ ମିମିର ସାହସ ନାହିଁ । କିନ୍ତୁ ପାଠରେ ମନ ନ ଥିବାରୁ ମିମିର ସବୁ ଗୋଳେଇ ଗଲାଣି । ସେ ଢୋଳେଇ

Digitized by srujanika@gmail.com

ଢ଼ୋଲେଇ ଭଳିଭ ଝୁଲଛନ୍ତି, କେତେଗୁଡ଼ିଏ ଦେଶ ମିଶି ହୁଏ ଗୋଟିଏ ଘର । ଘରେ ବାପା ଥାଆନ୍ତି । ଯେଉଁ ଘରେ ବାପା ଥାଆନ୍ତି ତାଙ୍କୁ କହନ୍ତି ମହାଦେଶ, ସେଠି ଶକ୍ତି ଅଛି, ମୋତେ ଡ଼ାକୁଛି । ତା'ପରେ ତା'ର ହଠାତ୍ ଖିଆଲ ହେଲା କଅଣ ଗୁଡ଼ାଏ ସେ ଇସ୍କାଡ଼୍ ସିସ୍କାଡ଼୍ କହୁଛି । ଚମକି ପଡ଼ି ସେ ଆଖି ରଗଡ଼ି ପୁଣି ପଡ଼ା ମୁଖସ୍ଥ ହୋଇଛି କି ନା ଦେଖିବାକୁ ଯାଇ ନିଜକୁ ନିଜେ ପ୍ରଶ୍ନ ପଚାରି ଉତ୍ତର ଦେବାକୁ ଲାଗିଲା···ହଁ···ହଁ···କେତେଗୁଡ଼ିଏ ପୃଥିବୀ ମିଶି କଅଣ ହୁଏ ଟି ? କଅଣ ହୁଏ ଟି ?

ଏହାର ଉତ୍ତର ସେ ଦେଇ ପାରିଲା ନାହିଁ । ବ୍ୟସ୍ତ ହୋଇ ସେ ବହିର ପତ୍ର ଓଲଟାଇବାକୁ ଲାଗିଲା । କେଉଁଠି ତା'ର ଉତ୍ତର ପାଇଲା ନାହିଁ ।

ହୃଦୟ ବାବୁ କାନ ପାରି ସବୁ ଶୁଣୁଥାନ୍ତି । ମୃଦୁ ମୃଦୁ ହସୁ ଥାଆନ୍ତି; କିନ୍ତୁ ଆଖିରେ ତାଙ୍କର ଲୁହ ।

ଏହି ସମୟରେ ଶୁଭିଲା ଗର୍ଜନ, ମିମି ଏଇ ତୋର ପଢ଼ା ? ଜୀବନ ବାବୁ କେତେବେଳୁ ଗୁପ୍ତରେ ଛିଡ଼ା ହୋଇ ମିମିକୁ ଲକ୍ଷ୍ୟ କରୁଥିଲେ କାହାରିକୁ ଜଣା ନାହିଁ ।

ହୃଦୟ ବାବୁ ଓ ମିମିର ମୁହଁରୁ ଅଚାନକ ଖସି ପଡ଼ିଲା । ହୃଦୟ ବାବୁ ମନୁ ବାଧା ଏଡ଼ି ଦେଇ ଦୌଡ଼ି ଆସି ଛିଡ଼ା ହେଲେ ମିମି ପାଖେ ।

ଜୀବନ ବାବୁ ଥରେ ଚଟକି ତାଙ୍କୁ ଚାହିଁ ମିମି ପାଖରୁ ବହି ଛଡ଼ାଇ ଦେଇ ପଚାରିଲେ, କହ, ଗାଁ, ଥାନା, ସବ୍‌ଡିଭିଜନ, ଜିଲ୍ଲା, ପ୍ରଦେଶ, ଦେଶ, ମହାଦେଶ କାହାକୁ କହନ୍ତି ।

ମିମି କେବଳ ବଲ୍‌ବଲ୍ କରି ଚାହିଁଲା । ମନେ ତା'ର କିଛି ନାହିଁ । ସେ ସବୁ କଅଣ ମେ ବୁଝି ବି ପାରିଲା ନାହିଁ । ମଝିରେ

Digitized by srujanika@gmail.com

ମଝିରେ ସେ ଜଣେଇ ଜଣେଇ ବଡ ବାପାଙ୍କ ଆଡ଼େ ଚାହୁଁ ଥାଏ । ସେ ଗୃହିଣୀ ଜୀବନ ବାବୁଙ୍କୁ ଉତ୍କ୍ଷିପ୍ତ କରି ଦେଲା । କ୍ରୋଧରେ ସେ ବହିଟି ଫୋପାଡ଼ିଲେ ମିମି ଉପରକୁ । ଆଖିପତାରେ ବହି ବାଜିଲା । ମିମି ଯନ୍ତ୍ରଣାରେ ଚିତ୍କାର କରି ଉଠିଲା । ମିମି ଭୋଉ ଧଡ଼ପଡ଼ କରି ଉଠି ବସି ଦୀର୍ଘ ନିଶ୍ୱାସ ପକାଇଦେଲେ । ହୃଦୟ ବାବୁ ମିମିକୁ କୋଳକୁ ଉଠାଇ ନେଇ ଗୃଚାଲେ ନିଜ କକ୍ଷଗୃହକୁ । ଜୀବନ ବାବୁ ତାଙ୍କ କୋଳରୁ ମିମିକୁ ଛଡ଼ାଇ ଆଣି ତଳେ କରିଡ ଦେଇ ଦୁଇଗୋଡ ଫାଙ୍କ କରି ତା ପାଖରେ ଛିଡ଼ା ହେଲେ ।

ହୃଦୟ ବାବୁ ହୃଦୟଙ୍ଗମ କଲେ, ବର୍ତ୍ତମାନ ବାଧା ଦେଲେ ଜୀବନ ବାବୁଙ୍କ ମିମି ଉପରେ ଅତ୍ୟାଚାର ବଢ଼ିଯିବ ସିନା ରାଗ ଯାଇ ପଡ଼ିବ ମିମି ଉପରେ । ତେଣୁ ସେ ମିମିକୁ କୋଳକୁ ଆଉଜାଇ ନେଇ କହିଲେ, ଆଚ୍ଛା ତୁ ଦେଏଖେ ମୁଁ ତାକୁ ଦଶ ମିନିଟରେ ସବୁ ପଢ଼ା କରାଇ ଦେଉଛି ।

ମିମି ସାହସ ପାଇ ବହିଟି ଖୋଲି ବଡ଼ ବାପାଙ୍କ କୋଳକୁ ଆଉଜି ବସିଲା । ଜୀବନ ବାବୁ ରାଗରେ ଚମଚମ ହୋଇ ସେମିତି ଛିଡ଼ା ହୋଇ ରହିଲେ ।

ହୃଦୟ ବାବୁ ପଢ଼ାଇବାକୁ ଲାଗିଲେ; କିନ୍ତୁ ମିମିର ଲାଗିଗଲା ଗୋଟାଏ ଖେଳ, ପ୍ରଶ୍ନର ଖେଳ । ସେ ପଚାରିଲା, ଆଚ୍ଛା ତେବେ, ବଡ ବାପା କହିଲ କେତେଗୁଡ଼ାଏ ପୃଥିବୀ ମିଳି କଅଣ ହୁଏ ।

ହୃଦୟ ବାବୁ ବଲ୍ ବଲ୍ କରି ଚାହିଁଲେ କିଛି କ୍ଷଣ । ତା'ପରେ କହିଲେ, ଏମିତି କେତେଗୁଡ଼ାଏ ପୃଥିବୀ ଭଳିଆ ଗ୍ରହ ମିଳି ହୁଏ ସୌର ଜଗତ । ଏମାନେ ସୂର୍ଯ୍ୟ ଚାରିପଟେ ଚକାଭଉଁରୀ ଖେଳୁ ଥାଆନ୍ତି ।

Digitized by srujanika@gmail.com

ମିମି ପୁଣି ପଚାରିଲା, କେତେଗୁଡ଼ିଏ ପୌର ଜଗତ ମିଶି କ'ଣ ହୁଏ ? ପ୍ରଶ୍ନ ପଚାରି ସେ, ବଡ଼ ବାପାଙ୍କ ମୁହଁ ସାମନାରେ ହାତ ବୁଲାଇ କହିଲା, କହ ତ ପା-ର-ବ-ନା-ହିଁ ଆ-ଆ-ଆ-ଜ । କହି ସେ ବଡ ବାପାଙ୍କ ଅପାରଗତାରେ ମୁଗ୍ଧ ହୋଇ ଆନନ୍ଦରେ ବଡ ବାପାଙ୍କ କୋଳରେ ଗଡି ଗଲା ।

ହୃଦୟ ବାବୁ; କିନ୍ତୁ ଉତ୍ତର ଦେଲେ । ଆଖି ତାଙ୍କର ଛଳ ଛଳ । ସେ କହିଲେ, ମା, କୃଷ୍ଣ ଯେତେବେଳେ ସାନ ପିଲାଟିଏ, ଦିନେ ସେ ଗୁରୁଣ୍ଡି ଗୁରୁଣ୍ଡି ବୁଲି ମାଟି ଖାଉଥାନ୍ତି, ଯଶୋଦା କୃଷ୍ଣଙ୍କୁ ମାଟି ଖାଇବାର ଦେଖି ତାଙ୍କୁ ଧମକ କହିଲେ "ଆଁ କର ପାଟି, ଆଁ କର ।" ଭଗବାନ ଆଁ କରି ଦେଲେ । ଯଶୋଦା ତ ଦେଖି କାବା । କଅଣ ଦେଖିଲେ ? ତା'ର ଉତ୍ତରରେ ହୃଦୟ ବାବୁ ଗାଇଲେ, "କୋଇଲି ହାଇ ଯେ ମାରଇ ପୁଅ ତୁଣ୍ଡ, ହୃଦୟେ ଦିଶିଲା ସପତ ବ୍ରହ୍ମାଣ୍ଡ, ଲୋ କୋଇଲି" । ପୁଣି ଗାଇଲେ "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତା ପ୍ରତିଲୋମେ ଝୁଲଇ" ।

ଆଖି ପୋଛି ମିମିକୁ ଚୁମ୍ବନ ଦେଇ କହିଲେ, ମା ତୁ ଯେଉଁ ପ୍ରଶ୍ନ କଲୁ ସେ ଭୂଗୋଳ ନୁହେଁ, ଗୋଳ । ଏ ଯେତେ ସବୁ ସୃଷ୍ଟି ହୋଇଛି, ପରମାଣୁଠାରୁ ଆରମ୍ଭ କରି କୋଟି କୋଟି ମହା ମହା ସୂର୍ଯ୍ୟ ପର୍ଯ୍ୟନ୍ତ, ସବୁ ମିଶି ହେଉଛନ୍ତି ସେ ।

ଅଣୋରଣୀୟାନ୍ ମହତୋ ମହୀୟାନ୍
ଆତ୍ମାସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍,
ତମକ୍ରତୁଃ ପଶ୍ୟତି ବୀତଶୋକୋ
ଧାତୁପ୍ରସାଦାନ୍ମହିମାନମାତ୍ମନଃ ।

Digitized by srujanika@gmail.com

ସୂକ୍ଷ୍ମଠାରୁ ସୂକ୍ଷ୍ମତର ଏବଂ ବିଶାଳଠାରୁ ବିଶାଳତର ସେ ପ୍ରତ୍ୟେକ ଜୀବ ଓ ବସ୍ତୁ ମଧ୍ୟରେ ଅଛନ୍ତି । ନିଷ୍କାମ ବ୍ୟକ୍ତି ତାଙ୍କୁ ଦର୍ଶନ କରି ଉଶାକାଶତ ହୁଅନ୍ତି । ମା, କେ କହି ପାରିବ ତା କଥା !

ଜୀବନ ବାବୁ ବାଧା ଦେଇ କହିଲେ, ଆପଣ ସେ ଧର୍ମ ଫର୍ମ କଥା କହନ୍ତୁ ନାହିଁ । ସେ ସବୁ ବାଜେ କଥାରେ ତାକୁ ପ୍ରବେଶ କରାଇବା ମୋର ଯୋଜନା ନୁହେଁ । ଯୋଜନା-ଆ-ଆ । ପ୍ରତ୍ୟେକ କାମ ପାଇଁ ଦରକାର ଯୋଜନା ।

ହୃଦୟ ବାବୁ ହସିଲେ । କହିଲେ, ଆରେ ପ୍ରତ୍ୟେକ ଜୀବର ଏକମାତ୍ର ଉଦ୍ଦେଶ୍ୟ ସେଇ ଈଶ୍ୱର ପ୍ରତି ଆକୃଷ୍ଟ ହେବା । ଧର୍ମ ଈଶ୍ୱର ନୁହେଁ ରେ, ଈଶ୍ୱରପ୍ରାପ୍ତିର ଗୋଟିଏ ପନ୍ଥା । ସେ ପନ୍ଥାରେ ଯେତେବେଳେ ଗ୍ଳାନି ଜାତ ହୁଏ ବା ଧର୍ମ ପନ୍ଥା ଯେତେବେଳେ ଈଶ୍ୱର ଆଡ଼କୁ ନ ଯାଇ ଅନ୍ୟ ଆଡ଼କୁ ଗତି କରେ ଯେତେବେଳେ ମଣିଷ ହୁଏ ମଣିଷଖିଆ ରାକ୍ଷସ । ସେତେବେଳେ ଭଗବାନ ନିଜେ ଅବତୀର୍ଣ୍ଣ ହୁଅନ୍ତି ସେ ପନ୍ଥାକୁ ସଜାଡ଼ିବାକୁ । ସେ ସଜାଡ଼ିବାର ପନ୍ଥା ହେଉଛି ଧ୍ୱଂସ । ଧ୍ୱଂସ ପରେ ପୁଣି ହୁଏ ସୃଷ୍ଟି । ତୋ ପରି ଏମିତି କେତେ ଯୋଜନା ଗଲଣି, ଧର୍ମ ରହିଛି ତା ଗତିରେ, ସଦା ଜାଗ୍ରତ ଈଶ୍ୱର ।

ମିମି ଏତେ ସବୁ କିଛି ବୁଝିଲା ନାହିଁ । ସେ ତା'ର ବଡ଼ ବାପାର ଛାତିରେ ମୁହଁ ଲୁଚାଇ ରହିଲା ।



Digitized by srujanika@gmail.com

# ପୁଲିସ ଓ ପ୍ରାର୍ଥନା

(O. Henryଙ୍କର "The Cop and the Anthem"ର
ଅନୁବାଦ)

ମ୍ୟାଡସନ୍ ସ୍କୋୟାର୍‌ର ବେଞ୍ଚ ଉପରେ ସୋପି କ୍ଷୁବ୍ଧ ଭାବରେ ହଲଚଲ୍ ହେଲା । ଯଦି ଦେଖିବ ଯେ ରାତିରେ ମରାଳମାଳା କଁକ୍ କଁକ୍ ଡାକ ଦେଇ ବହୁ ଉଚ୍ଚରେ ଉଡ଼ି ଯାଉଛନ୍ତି ବା ଯେଉଁ ଭାର୍ଯ୍ୟାମାନଙ୍କର ସୁନ୍ଦର ଗରମ ପୋଷାକ ନାହିଁ ସେମାନେ ସେମାନଙ୍କର ସ୍ୱାମୀମାନଙ୍କ ପ୍ରତି ସଦୟ ବ୍ୟବହାର କରିବାକୁ ଲାଗିଲେଣି, କିମ୍ବା ଯେତେବେଳେ ଦେଖିବ ଯେ ସୋପି ତାହାର ବେଞ୍ଚ ଉପରେ ଅସ୍ୱସ୍ତି ଅନୁଭବ କରି ହଲଚଲ ହେବାକୁ ଲାଗିଲାଣି ସେତେବେଳେ ନିଶ୍ଚୟ ଜାଣିବ ଯେ ଶୀତ ଦିନ ଆସିଯିବାର ଆଉ ବିଳମ୍ବ ନାହିଁ ।

ଗୋଟାଏ ଶୁଖିଲା ପତ୍ର ସୋପିର କୋଳରେ ପଡ଼ିଲା । ଶୀତ ବାବୁଙ୍କର ସେ ଆଗମନ ବାର୍ତ୍ତାବହ ଚିଠାଉ । ମ୍ୟାଡସନ୍ ସ୍କୋୟାର ଉଦ୍ୟାନରେ ଯେଉଁମାନେ ବରାବର ଶୁଅନ୍ତି ଶୀତବାବୁ ସେମାନଙ୍କ ପ୍ରତି ସଦା ଦୟା ରଖି ପ୍ରତ୍ୟେକ ବର୍ଷ ଆସିବା ପୂର୍ବରୁ ସେମାନ୍ତି ସାବଧାନ କରାଇ ଦିଅନ୍ତି । ସବୁ ବାସହୀନମାନଙ୍କର ଦୂତ ହେଉଛି ଉତ୍ତରୀ ପବନ । ଶୀତବାବୁ ରାସ୍ତା ମୋଡ଼ ପାଖରୁ ଉତ୍ତରପବନ ହାତରେ ସେ ଚିଠାଉ ପଠାଇ ଦିଅନ୍ତି ଏବଂ ତାହା ପାଇ ମ୍ୟାଡ଼ସନ୍ ସ୍କୋୟାରର ବାସିନ୍ଦାମାନେ ଶୀତ ପାଇଁ ପ୍ରସ୍ତୁତ ହୁଅନ୍ତି ।

Digitized by srujanika@gmail.com

ସୋପି ହୃଦୟଙ୍ଗମ କଲା ଯେ ଆସନ୍ନ ଶୀତର ଦାଉରୁ ନିଜକୁ ରକ୍ଷା କରିବା ସକାଶେ ଉପାୟ ଓ ପନ୍ଥା ନିର୍ଦ୍ଧାରଣ ପାଇଁ ନିଜକୁ ନେଇ ଗୋଟିଏ ଇଣିକିଆ କମିଟି ଗଠନ କରିବାର ବେଳ ଆସିଗଲା। ସେଇଥିପାଇଁ ସୋପି ତା'ର ବେଞ୍ଚ ଉପରେ ଅଶାନ୍ତି ଅନୁଭବ କରି ହଲଚଲ ହେଲା ।

ନିଜକୁ ଚାପ ଦେବାର ଯେଉଁ ଯୋଜନା ସୋପି କଲା ତାହା ଖୁବ୍ ଗୋଟାଏ ବଡ଼ ଉଚ୍ଚ ଯୋଜନା ଲୁହା ମିଲ ନାହିଁ । କାରଣ, ସେଥିରେ ଭୂମଧ୍ୟସାଗର ଭ୍ରମଣ ନାହିଁ, କି କୌଣସି ଦକ୍ଷିଣାଞ୍ଚଳରେ ଉଷ୍ଣବାୟୁ ସେବନ ନାହିଁ, କି ଭେସୁଭିୟାନ୍ ଉପସାଗରକୁ ଯିବା ମଧ୍ୟ ନାହିଁ । ତା'ର ଆତ୍ମା ଖୋଜୁଥିଲା କେବଳ ଶୀତ ତିନିମାସ ଜେଲ ଭିତରେ ରହିବାକୁ । ତିନୋଟି ମାସ ପାଇଁ ଖାଦ୍ୟ ଓ ଶୀତବସ୍ତ୍ର ଚିନ୍ତାରୁ ମୁକ୍ତ ଏବଂ ଧନୀମାନଙ୍କ ହସ୍ତକ୍ଷେପଠାରୁ ଦୂରରେ ଏହା ହିଁ ତା'ର ମନେ ହେଲା ସବୁଠାରୁ ପ୍ରିୟ ।

ଆଜକୁ ବହୁ ବର୍ଷ ଯାଏ ସେ ପ୍ରତି ଶୀତ ଋତୁରେ ଜେଲ-ଖାନାର ସ୍ନେହମୟ କୋଳରେ ସ୍ଥାନ ପାଇ ଆସିଛି । ପ୍ରତ୍ୟେକ ଶୀତ ଋତୁରେ ଯେମିତି ନିଉୟର୍କର ଧନିକଶ୍ରେଣୀ ପାମ୍ ବିଚ୍ ବା ରିଭିୟେରାକୁ ଟିକେଟ କାଟନ୍ତି ସୋପି ସେମିତି ଜେଲଖାନାକୁ ଯିବାର ଯୋଗାଡ଼ କରେ । ବର୍ତ୍ତମାନ ସେଇ ବେଳ ଆସି ଗଲାଣି । ଗତ ରାତିରେ ସୋପି କେତୋଟି ଖବରକାଗଜ ତଳେ ବିଛାଇ ଓ ଘୋଡ଼ି ହୋଇ ଉଦ୍ୟାନର ଝରଣା ପାଖରେ ଶୋଇଥିଲା । କିନ୍ତୁ ଖବରକାଗଜଗୁଡ଼ିକ ତାକୁ ଶୀତର ଦାଉରୁ ରକ୍ଷା କରି ପାରିଲେ ନାହିଁ । ତେଣୁ ଜେଲଖାନା କଥା ତାକୁ ଆକୃଷ୍ଟ କଲା । ସେ ଦାତବ୍ୟ ଅନୁଷ୍ଠାନଗୁଡ଼ିକ ପାଖରୁ ସାହାଯ୍ୟ ନେବାକୁ ଘୃଣା କରେ, ତା' ମତରେ ଦାତବ୍ୟ ଅନୁଷ୍ଠାନଗୁଡ଼ିକଠାରୁ ଆଇନ୍ ଅଧିକ ମଙ୍ଗଳକାରୀ ।

Digitized by srujanika@gmail.com

ସହରରେ ଅନେକଗୁଡ଼ିଏ ଦାତବ୍ୟ ଅନୁଷ୍ଠାନ ଅଛି ଏବଂ ସେମାନଙ୍କ ଭିତରୁ ଯେ କୌଣସିଟିରୁ ସୋପି ବାସସ୍ଥାନ ଓ ଖାଦ୍ୟ ପାଇ ପାରି ଥାଆନ୍ତା; କିନ୍ତୁ ତା' ମତରେ ଆତ୍ମମର୍ଯ୍ୟାଦାସମ୍ପନ୍ନ ଲୋକ ମଣିଷରେ ଦାନ ଗ୍ରହଣ କରିବା ଉଚିତ ନୁହେଁ, ପ୍ରତ୍ୟେକ ଦାନ ପାଇଁ ପ୍ରତି-ଦାନରେ ଅର୍ଥ ଦେବାକୁ ପଡ଼ୁ ନ ଥିଲେ ମଧ୍ୟ ଆତ୍ମମର୍ଯ୍ୟାଦା ତ୍ୟାଗ କରିବାକୁ ପଡ଼େ । ଯେମିତି ବ୍ରୁଟସ୍ ସିଜରଙ୍କ ଦ୍ୱାରା ଗଢ଼ା ହୋଇ ମଧ୍ୟ ସିଜରଙ୍କୁ ହତ୍ୟା କରିଥିଲେ, ସେମିତି ଦାନ ପରିବର୍ତ୍ତନରେ ଦାତା ଗ୍ରହୀତାର ଆତ୍ମମର୍ଯ୍ୟଦାକୁ ହତ୍ୟା କରି ତାକୁ କ୍ରୀତଦାସ କରେ । ଯଦିଚ ସରକାରଙ୍କ ଅତିଥି ହେବାକୁ ହେଲେ ଅନେକ ଆଇନ କାନୁନ୍ ଭିତର ଦେଇ ଯିବାକୁ ହେବ ତଥାପି ସେଥିରେ ଆତ୍ମମର୍ଯ୍ୟାଦାରେ ହସ୍ତକ୍ଷେପ ନ ଥିବାରୁ ତାହା ବରଣୀୟ ।

ସୋପି ଜେଲଖାନାକୁ ଯିବା ହିଁ ସବୁଠାରୁ ଭଲ, ଏ ସିଦ୍ଧାନ୍ତ କଲା ପରେ ସାଙ୍ଗେ ସାଙ୍ଗେ ତାହା କାର୍ଯ୍ୟକାରି କରିବାକୁ ବାହାରି ପଡ଼ିଲା । ଜେଲ୍‌ଖାନାକୁ ଯିବା ପାଇଁ ଅନେକ ସହଜ ପନ୍ଥା ଅଛି; କିନ୍ତୁ ସବୁଠାରୁ ଆନନ୍ଦଦାୟକ ପନ୍ଥା ହେଉଛି ଗୋଟିଏ ହୋଟେଲରେ ଖୁବ୍ ପେଟେ ସୁସ୍ୱାଦୁ ଖାଦ୍ୟ ଖାଇବା ପରେ କହିବ ଯେ ତୁମେ ସମ୍ବଳହୀନ ଏବଂ ତା'ପରେ ବିନା ଆପତ୍ତିରେ ପୁଲିସ ପାଖରେ ଧରା ଦେବ । ଏହା ପରେ ସ୍ୱବଗ୍ରାହୀ ମ୍ୟାଜିଷ୍ଟ୍ରେଟ୍ ଅ.ଉ ଯାହା କରିବାର କଥା କରି ଦେବେ ।

ସୋପି ଉଦ୍ୟାନ ଛାଡ଼ି ଆଗେଇ ଚାଲିଲା । ସହରର ପ୍ରାସାଦ-ସମୁଦ୍ର ଭିତର ଦେଇ ଯାଇ ଯାଇ ସେ ପହଞ୍ଚିଲା ଯେଉଁଠି ବ୍ରଡ୍‌ୱେ ଓ ଫିଫ୍‌ଥ୍ ଏ୍ୟାଭିନ୍ୟୁ ମିଳିତ ହୋଇଛନ୍ତି । ବ୍ରଡ୍‌ୱେ ବାଟେ ଯାଇ ଯାଇ ସେ ଗୋଟିଏ ଖୁବ୍ ବଡ଼ ଆଲୋକମାଳା-ସଜ୍ଜିତ ହୋଟେଲ ସାମନାରେ ଛିଡ଼ା ହେଲା । ପ୍ରତ୍ୟେକ ସନ୍ଧ୍ୟାରେ ଏହି ହୋଟେଲରେ

Digitized by srujanika@gmail.com

ଗଦା ହୁଅନ୍ତ ହ୍ରାଷା, ମିଲ୍‌କପୋକ ଓ ଭୃଣଙ୍କ ଜାତ ହୋଇଥିବା ବହୁମୂଲ୍ୟ ପାନୀୟ, ବସ୍ତୁ ଓ ପ୍ରାଣୀ-ସକଳ ।

ସୋପିର ନିଜ କୋଟ୍‌ର ସବା ତଳ ବୋତାମଠାରୁ ଉପର ଅଂଶ ଉପରେ ବିଶ୍ୱାସ ଥିଲା । ନାଇଁ ତ ସାଦଓଳ ନେଇ ସିଥର ହୋଇ-ଥାଏ ଏବଂ ତା'ର କୋଟ୍‌ଟି ମଧ୍ୟ ସୁନ୍ଦର । ଗୋଟିଏରେ ସୁବେଶି କସମର ଓନେକଟାଇଟି ବି ଅଛି, ଯାହା ତାଙ୍କୁ ଗତ ପର୍ବରେ ଜଣେ ଦାନଶୀଳା ମହିଳା ଉପହାର ଦେଇଥିଲେ । ଅତଏବ ଯଦି କାହାର ସନ୍ଦେହ ଉଦ୍ରେକ ନ କରି ସେ ଭିତରକୁ ଯାଇ ଗୋଟିଏ ଟେବୁଲ ପାଖରେ ବସି ଯାଇପାରେ ତେବେ ସଫଳତା ତାହାର ହାତମୁଠା ଭିତରେ । ତାହାର ଶରୀରର ଯେଉଁ ଭାଗ ଟେବୁଲ ଉପରକୁ ଦିଶିବ ସେଥିରେ କୌଣସି ହୋଟେଲ୍ କର୍ମଚାରୀର ସନ୍ଦେହ ଜାଗ୍ରତ ହେବ ନାହିଁ । ଗୋଟିଏ ହଂସ-ରୋଷ୍ଟ ଓ ତା' ସାଙ୍ଗକୁ ବୋତଲେ ବହୁମୂଲ୍ୟ ମଦ ଓ ତା' ପରେ ଗୋଟିଏ ଏକଡଲାର ଦାମ୍‌ର ସିଗାର ଯଥେଷ୍ଟ ହେବ । ସେ ସବୁର ଦାମ୍ ଏମିତି କିଛି ବେଶି ହବ ନାହିଁ ଯେଉଁଥିରେ କି ହୋଟେଲ-ମାଲିକ କ୍ରୋଧରେ କାଣ୍ଡଜ୍ଞାନ ହରାଇ ତାକୁ ହତ୍ୟା କରିବେ, ଅଥଚ ପୂରା ପେଟରେ ଆନନ୍ଦ ନେଇ ସେ ଯିବ ତାହାର ଇପ୍‌ସିତ ଶୀତ ନିବାସକୁ ।

କିନ୍ତୁ ସୋପି ହୋଟେଲର ପ୍ରବେଶ ଦ୍ୱାରରେ ପାଦ ଦେବା ମାତ୍ରକେ ପ୍ରଧାନ ଦରଓ୍ୱାନର ଦୃଷ୍ଟି ସୋପିର ଛିଣ୍ଡା ପେଣ୍ଟ ଓ ଛିଣ୍ଡା ଜୋତା ଉପରେ ପଡ଼ିଲା । ବିନା ବାକ୍ୟବ୍ୟୟରେ ଦରଓ୍ୱାନ ସୋପିକୁ ଧକ୍‌କା ମାରି ଘଉଡ଼ େଲା ଏବଂ ହଂସ-ରୋଷ୍ଟକୁ ତା'ର ଅବାଞ୍ଛିତ ଖାଦକଠାରୁ ରକ୍ଷା କଲା ।

ସୋପି ବୁଲ୍‌ଭେ ସ୍ୟ ଗୁଡ଼ଲା । ସେ ବୁଝିପାରିଲା ଯେ ତା'ର ଜେଲଖାନାକୁ ଯିବା ସ୍ୱଦେଶୀୟ ପନ୍ଥାରେ ହେବ ନାହିଁ ଏବଂ ତେଣୁ ଅନ୍ୟ ପନ୍ଥା ଉଦ୍ଭାବନ କରିବାକୁ ପଡ଼ିବ ।

Digitized by srujanika@gmail.com

ସିକ୍‌ସଥ୍ ଏ୍ୟାଭିନ୍ୟୁ ଓକୋଣରେ ଗୋଟିଏ ଦୋକାନର କାଚ-କବାଟ ତା'ର ଦୃଷ୍ଟି ଆକର୍ଷଣ କଲା । ସୋପି ଗୋଟିଏ ପଥର ଉଠାଇ ସେ କାଚ କବାଟକୁ ଫୋପାଡ଼ି ଦେଲା । ଲୋକମାନେ ଦୌଡ଼ି ଆସିଲେ । ସେମାନଙ୍କ ଆଗରେ ଜଣେ ପୁଲିସ ମଧ୍ୟ । ସୋପି ନିଶ୍ଚଳ ଭାବରେ ତା'ର ପକେଟ ଭିତରେ ହାତ ପୂରାଇ ଛିଡ଼ା ହୋଇ ରହିଲା । ପୁଲିସ ଦେଖି ମନରେ ତାହାର ଆଶାର ସଞ୍ଚାର ହେବାରୁ ମୁହଁରେ ଆନନ୍ଦ ଫୁଟି ଉଠିଲା ।

କେଉଁଠି ଗଲା ସେ ପାଜି ? ପୁଲିସ ଉତ୍ତେଜିତ ଭାବରେ ପଚାରିଲା ।

ସୋପି ଉତ୍ତର ଦେଲା, ଆପଣ କଅଣ ଅନ୍ଦାଜ କରି ପାରୁ ନାହାନ୍ତି ଯେ ମୁଁ ସେ କାମ କରି ଥାଇ ପାରେ ? ସୋପିର ଉତ୍ତରରେ ପ୍ରକାଶ ପାଇଲା ବିଦ୍ରୂପ ନୁହଁ, ସୌଭାଗ୍ୟର ସୂଚନାରେ ଆନନ୍ଦ ।

କିନ୍ତୁ ପୁଲିସ ସୋପିକୁ ଦୃଢ଼ଭାବରେ ଗ୍ରହଣ କରିବାକୁ ନାରାଜ । ଯିଏ ଦୋକାନର କାଚ ଏମିତି ଭାଙ୍ଗେ ସେ ଆଇନ୍‌ରକ୍ଷକ ସହିତ ଏପରି ଶାନ୍ତ ଭାବରେ କଥାବାର୍ତ୍ତା କରି ପାରେ ନା ! ସେ ଦୌଡ଼ି ପଳାଏ । ଏହି ସମୟରେ ପୁଲିସଟି ଦେଖିଲା ଅଦୂରରେ ଜଣେ ମଟର-ବସ୍ ଧରିବାକୁ ଦୌଡ଼ୁଛି । ଲାଠି ଘୁରାଇ ଘୁରାଇ ପୁଲିସ ଦୌଡ଼ିଲା ସେ ଲୋକ ପଛରେ । ସୋପି ବ୍ୟର୍ଥତାର ଗ୍ଳାନିରେ ପାଦକୁ ଓଟାରି ଓଟାରି ଆଗେଇ ଚାଲିଲା ।

ରାସ୍ତାର ଅପର ପାଖରେ ସେ ଦେଖିଲା ଆଉ ଗୋଟିଏ ହୋଟେଲ । ଯେଉଁମାନଙ୍କ କ୍ଷୁଧା ଅନେକ ଅଥଚ ପଇସା କମ୍ ସେଇମାନଙ୍କ ପାଇଁ ଏ ହୋଟେଲ । ଏହାର ବାସନପତ୍ର ଯେତିକି ମୋଟ, ତରକାରି ଝୋଳ ସେତିକି ପାତଳା । ଏହା ଭିତରକୁ ସୋପି

Digitized by srujanika@gmail.com

ତାହାର ଅବସ୍ଥାର ପ୍ରମାଣ ଦେଉଥିବା ଛିଣ୍ଡା ପେଣ୍ଟ ଓ ଯୋତା ନେଇ ଯେତେବେଳେ ପ୍ରବେଶ କଲା କେହି ବାଧା ଦେଲେ ନାହିଁ । ଗୋଟିଏ ଟେବୁଲ ପାଖରେ ବସି ଇପ୍ସାଡ଼୍ସ ପିପ୍ସାଡ଼୍ସ ଯଥେଷ୍ଟ ଖାଇବା ପରେ ହୋଟେଲ କର୍ମଚାରୀଙ୍କୁ ଜଣାଇଲା ଯେ କହୁଥିବ ହେବ ଗୋଟିଏ ପାଉଲ ସହିତ ବ ତା'ର ପରିଚୟ ହୋଇ ନାହିଁ । ତା'ପରେ ସେ ଅନୁରୋଧ କରି କହିଲା—ବର୍ତ୍ତମାନ ଦୟା କରି ପୁଲିସ ଡାକ, ଭଦ୍ରଲୋକଙ୍କୁ ଅପେକ୍ଷାରେ ରଖିବା ଉଚିତ ନୁହଁ ।

ହ୍ୟାପ, ଆମେ ପୁଲିସ ଡାକୁ ନା, କର୍ମଚାରୀ କହିଲା ଓ ତା'ର ସାଙ୍ଗ କର୍ମଚାରୀଙ୍କୁ ଡ଼ାକଲା, ଆବେ କନ୍, ଇପ୍ସାଡ଼େ ଆ ।

କିଛି କ୍ଷଣ ପରେ ସେ ଦୁଇଜଣ କର୍ମଚାରୀ ସୋପିଙ୍କୁ ରାସ୍ତାରେ ଶୁଆଇ ଦେଇ ଆସିଲେ । ସୋପି କିଛିକ୍ଷଣ ପଡ଼ିରହି ଅଳ୍ପେ ଅଳ୍ପେ ଉଠିଲା, ଆଣ୍ଠୁ, ଗଣ୍ଠି ତା'ର ପକ୍ୱାସ ହୋଇ ଯାଇଛି ମାଡ଼ରେ । ପେଣ୍ଟ କୋଟରୁ ଧୂଳି ଝାଡ଼ି ସେ ଛିଡ଼ା ହେଲା । ଜେଲ ଯିବା ତା ପକ୍ଷରେ ବର୍ତ୍ତମାନ ସ୍ୱପ୍ନ ଭଳି ମନେ ହେଲା । ଗୋଟାଏ ପୁଲିସ ତାକୁ ଚାହିଁ ମୁରୁକି ହସି ଚାଲିଗଲା ।

ସୋପି ବ୍ୟର୍ଥମନୋରଥ ହୋଇ କିଛିକ୍ଷଣ ଚାଲିଲା ପରେ ପୁଣି ଥରେ ପୁଲିସଦ୍ୱାରା ଧରା ହେବାର ଚେଷ୍ଟା କରିବା ପାଇଁ ତା'ର ପ୍ରେରଣା ଫେରି ଆସିଲା । ନିକଟରେ ମଧ୍ୟ ଯାହା ଦେଖିଲା ତାହା ଅପୂର୍ବ ସୁଯୋଗ ବୋଲି ମନେ ହେଲା । ଗୋଟିଏ ସୁନ୍ଦରୀ ଯୁବତୀ ଗୋଟିଏ ଦୋକାନର କାଚ ଆଲମାରୀ ପାଖରେ ଛିଡ଼ା ହୋଇ ତା' ଭିତରେ ସଜା ହୋଇ ରଖା ହୋଇଥିବା ଦାଢ଼ି କମେଇବା ସରଞ୍ଜାମ ଓ ଦୁଆତଦାନୀ ସବୁ ନିରୀକ୍ଷଣ କରି ଦେଖୁଥିଲା । ଏବଂ ନିକଟରେ ମଧ୍ୟ ଗୋଟିଏ ସ୍ୱାସ୍ଥ୍ୟଦର୍ଶନ ପୁଲିସ ।

Digitized by srujanika@gmail.com

ସୋପି ସ୍ଥିର କଲ ଯେ ସେ ଯଦି ଯୁବତୀଟି ସହିତ ବଜାରଗିରି କରେ ତେବେ ନିଶ୍ଚୟ ତା'ର ଉଦ୍ଦେଶ୍ୟ ସଫଳ ହେବ । ଗୋଟିଏ ପୁଲିସ ସାମନାରେ ଏପରି ଗୋଟିଏ ସୁରୁଚିସମ୍ପନ୍ନା ଯୁବତୀ ସହିତ ବଜାରଗିରି କରି ମଧ୍ୟ ଯଦି ସେ ତା'ର ଇପ୍‌ସିତ ଶୀତ ନିବାସକୁ ଯାଇ ନ ପାରେ ତେବେ ଆଉ କେଉଁ ଉପାୟରେ ତା' ସିଦ୍ଧ ହେବ ।

ସୋପି ତା'ର ନେକ୍‌ଟାଇ ସଜାଡ଼ି ଦେଇ, ଟୋପିକୁ ବଜାରଙ୍କ ଭଳି ଟେଢ଼ା କରି ପିନ୍ଧି ଆଗେଇ ଗଲା ଯୁବତୀ ଆଡ଼େ । ନିକଟକୁ ଯାଇ ସେ ଆଖିଠାରିଲା ଯୁବତୀଟିକୁ ଓ ଖଣ୍ଡେ କାସ ଦେଲା । କଣେଇ କଣେଇ ଦେଖିଲା ଯେ ପୁଲିସର ଦୃଷ୍ଟି ସେ ଆକର୍ଷଣ କରି ପାରିଛି, ଯୁବତୀଟି କିଛି ବାଟ ଘୁଞ୍ଚିଯାଇ ଛିଡ଼ା ହେଲା । ସୋପି ତା' ପାଖକୁ ଲାଗିଯାଇ ଟୋପିଟି ଉଠାଇ କହିଲା "ଆମାରେ ଗଲା ଆଉ..."

ପୁଲିସର ଦୃଷ୍ଟି ସୋପି ଉପରେ ନିବଦ୍ଧ । ଯୁବତୀଟି ପୁଲିସକୁ ସଙ୍କେତ ଦେବା ମାତ୍ରକେ ସୋପିର ଶୀତ ନିବାସକୁ ଯିବା ନିଶ୍ଚିତ ହୋଇଯିବ । ସୋପି କଳ୍ପନାରେ ଜେଲଖାନାର ଉଷ୍ମତାର ପରଶ ଅନୁଭବ କଲା । ଯୁବତୀଟି କିନ୍ତୁ ସୋପିର ହାତ ଧରି କହିଲା "ସେ ପୁଲିସଟା ବୁଝିଥିଲା ତେଣୁ ମୁଁ କଡ଼କୁ ଘୁଞ୍ଚି ଆସିଲି । ଚିଚ୍ଚ ତୋ ସାଙ୍ଗରେ ମୋତେ ଆଗେ ପେଟଟା ଖୋଇଲୁ, ଚାଲ ।"

ସୋପି ଯୁବତୀର ହାତ ଧରି ଅତି ଦୁଃଖରେ ପୁଲିସକୁ ଅତିକ୍ରମ କରି ଚାଲିଗଲା ଓ ମନେ ମନେ ଭାବିଲା "ମୋର ଏ ସ୍ୱାଧୀନତା ଅଭିଶପ୍ତ ।"

କିଛି ବାଟ ଗଲା ପରେ ଗଳି ମୋଡ଼ରେ ସେ ଯୁବତୀର ହାତ ଛଡ଼ାଇ ନେଇ ଦଉଡ଼ି ପଳାଇଗଲା । ଦୌଡ଼ି ଦୌଡ଼ି ସେ ପହଞ୍ଚିଲା ଏମିତି ଗୋଟାଏ ବସ୍ତିରେ ଯହିଁରେ ଥିଲା ଘେରେ ଘିଞ୍ଜା ଅନ୍ଧାରୁଆ ଜନ-

Digitized by srujanika@gmail.com

ବରଲ ଏବଂ ଲୋକଗୁଡ଼କ ମଧ୍ୟ ହାଲୁକା ହୃଦୟର । ସେ ଅଞ୍ଚଳରେ ଯୁବକ ବା ଯୁବତୀମାନେ ଆନନ୍ଦରେ ବୁଲୁଥାନ୍ତି । ସେଠି ପଦାର୍ପଣ କରିବା କ୍ଷଣି ସୋପିର ଭୟ ହେଲା, ବୋଧେ କୌଣସି ଦୁଷ୍ଟ ଦେବତା ତାକୁ ଏମିତି କରି ଦେଇଛି ଯେ ପୁଲିସ ତାକୁ ଛୁଇଁବ ନାହିଁ । ଏ ଭୟ ଜାତ ହେବା ମାତ୍ରକେ ସେ ଅସ୍ଥିର ହୋଇ ପଡ଼ିଲା । ସେଇ ସମୟରେ ଗୋଟିଏ ପୁଲିସ ଯାଉଥାଏ । ସୋପି ସ୍ଥିର କରିନେଲା ସେ ମାତାଲଙ୍କ ଭଳି ଆଚରଣ କରିବ ।

ସୋପି ଛିଡ଼ା ହୋଇ ମାତାଲଙ୍କ ଭଳି ନାଚିଲା, କୁଦିଲା ଓ ଯାହା ତାହା ବକିବାକୁ ଲାଗିଲା । ପୁଲିସଟି ତା'ର ବାଡ଼ିଟି କାଖରେ ଯାକି ଆଉ ଜଣେ ବାଟୋଇକୁ କହିଲା "ଭୟ ନାହିଁ । ଏମାନେ କଲେଜର ପିଲା । କଲେଜର ଗୋଟାଏ ମ୍ୟାଚ ପାଉଛନ୍ତି ଆନନ୍ଦରେ । ତାଙ୍କୁ କିଛି କହିବାକୁ ଆମର ମନା ଅଛି ।"

ବ୍ୟର୍ଥ ! ଏଠି ବି ବ୍ୟର୍ଥ ! କୌଣସି ପୁଲିସ ମୋତେ କଅଣ ଭୁଲରେ ବି ଧରିବ ନାହିଁ । ହାୟ, ଶୀତ ଦିନରେ ଜେଲଖାନାର ଉଷ୍ମ କୋଣଟି ଆଜି ସୁଦୂର ପରାହତ । ସୋପି ପୁଣି ଆଗେଇ ଚାଲିଲା ।

ଗୋଟିଏ ସିଗାରେଟ ଦୋକାନ ପାଖରେ ଛିଡ଼ା ହୋଇ ସୋପି ଦେଖିଲା ଯେ ଜଣେ ବହୁମୂଲ୍ୟ ପରିଚ୍ଛଦ ପରିହିତ ଭଦ୍ରଲୋକ ବହୁ-ମୂଲ୍ୟ ଛତାଟି ଡେରି ଦେଇ ସିଗାରେଟ ଲଗାଉଛନ୍ତି । ସୋପି ଛତାଟି ଉଠାଇ ନେଇ ଆଗେଇ ଚାଲିଲା । ଭଦ୍ରଲୋକଟି ସୋପିକୁ ଗୋଡ଼ାଇଲେ ।

"ସେ ମୋର ଛତା" ଭଦ୍ରଲୋକ ରୁକ୍ଷଭାବରେ କହିଲେ ।

"ସତେ କି ?" ସୋପି ବେଶ୍‌ର ମୁହଁଟାଣ ଭଙ୍ଗୀରେ କହିଲା, "ତାହେଲେ ପୁଲିସ ଡାକନ୍ତୁ । କହନ୍ତି ସେଠି ପୁଲିସ ଛିଡ଼ା ହୋଇଛି, ଡାକନ୍ତୁ ନା ।"

Digitized by srujanika@gmail.com

ଭଦ୍ରଲୋକଟି ଥମକି ଗଲେ । ସୋଫି ମଧ୍ୟ ଛିଡ଼ା ହେଲା । ମନରେ କିନ୍ତୁ ତା'ର ଭୟ ଏଥର ମଧ୍ୟ ବ୍ୟର୍ଥ ହେବ ତା'ର ଚେଷ୍ଟା । ପୂଜାରୀ ସେ ଦୁଇ ଜଣଙ୍କୁ ଲୋଲୁପ ଦୃଷ୍ଟିରେ ଚାହିଁ ରହିଲା ।

ଭଦ୍ରଲୋକଟି କହିଲେ 'ଅବଶ୍ୟ, ଅବଶ୍ୟ···ଆଜ୍ଞା···ଆପଣ ତ···ଜାଣନ୍ତି···ଛତା ଅନେକ ସମୟରେ ଭୁଲ ହୋଇଯାଏ···ଯଦି ···ଯଦି ଆପଣଙ୍କର···ମୋତେ କ୍ଷମା କରିବେ···ମୁଁ ଆଜି ସକାଳେ ···କିଛି ମନେ କରିବେ ନାହିଁ—ଭୁଲରେ ଗୋଟିଏ ଛତା··· ହୋଟେଲରୁ ଉଠାଇ ଆଣିଥିଲି···ଆପଣ···ନିଅନ୍ତୁ···ନିଅନ୍ତୁ···'

'ନିଶ୍ଚୟ ମୋର ଛତା' ସୋଫି କ୍ଷୋଭରେ ଜର୍ଜରିତ ହୋଇ କହିଲା ।

ଭଦ୍ରଲୋକଟି ଚାଲିଗଲେ । ପୁଲିସଟି ଦୌଡ଼ିଗଲା ଜଣେ ଯୁବତୀଙ୍କ କୋଟ ପିନ୍ଧିବାରେ ସାହାଯ୍ୟ କରିବାକୁ । ସୋଫି ସମସ୍ତ ପୁଲିସ ଜାତିଙ୍କୁ ମନେ ମନେ ଅଭିଶାପ ଦେଇ କହିଲା, ମୁଁ ଧରା ଦେବାକୁ ଆଗ୍ରହୀ ବୋଲି ହ୍ୟାପୋ ଓଡ଼ାକାମାନେ ମୋତେ ଭାବୁଛନ୍ତି ମୁଁ ରଜା, ତେଣୁ ଦୋଷ କରି ପାରେ ନା ।

କିଛି ବାଟ ଗଲା ପରେ ସୋଫି ଗୋଟିଏ ଗୀର୍ଜା ପାଖରେ ଛିଡ଼ା ହେଲା । ଗୀର୍ଜାର ଗୋଟିଏ ଗବାକ୍ଷରୁ ଭାସି ଆସୁଛି ଗୋଟିଏ ହାଲୁକା ଆଲୋକର ସ୍ରୋତ । କେହି ଜଣେ ଗୀର୍ଜା ଭିତରେ ଭଜନ ଗାଉଛି ।

ଆକାଶରେ ସୁନ୍ଦର ଶାନ୍ତ ସ୍ନିଗ୍ଧ କିରଣ ପୃଥିବୀରେ ଶୁଭାଶୀର୍ବାଦ ଭଳି ବିସ୍ତାରିତ ପଡ଼ୁଛି । ଗୀର୍ଜାର ପ୍ରାଙ୍ଗଣଟି ନିର୍ଜନ ନିଥର । ଭଜନଟି ଶୁଣି ସୋଫି କିଷ୍ଟଳ ଭାବରେ ଛିଡ଼ା ହୋଇ ରହିଲା । ଯେତେବେଳେ ତା'ର ପିତାମାତା ଥିଲେ, ଉତ୍ତମ ବନ୍ଧୁଥିଲେ ଓ ଜୀବନରେ ଥିଲା ଆଶା ସୋଫି ସେ ଭଜନଟି ଶୁଣିଥିଲା ।

Digitized by srujanika@gmail.com

ସୋପିର ହଠାତ୍ ଭାବାନ୍ତର ଜାତ ହେଲା । ପାପର ଯେଉଁ ଗଭୀର ଅନ୍ଧକାର ଗର୍ଭକୁ ସେ ଧୀରେ ଧୀରେ ଆଗେଇ ଯାଉଥିଲା ସୋପି ତାହା ସନ୍ଦର୍ଶନ କଲା । ସୋପି ତାହା ସନ୍ଧ୍ୟେ ଦେଖିଲା ।

ଯୁଗପତ୍ ତା'ର ହୃଦୟରେ ଏକ ଅପୂର୍ବ ଶିହରଣ ମଧ୍ୟ ଜାତ ହେଲା । ଭାଗ୍ୟ ସହିତ ଯୁଦ୍ଧ କରିବାକୁ ଅପୂର୍ବ ପ୍ରେରଣା ଜାତ ହେଲା ତା'ର ହୃଦୟରେ । ଜଣାଣି ତା ମନରେ ତାହାକୁ ଜୟ କରିବାର ଅପୂର୍ବ ସଂକଳ୍ପ ସୃଷ୍ଟି କଲା । ଯେତେ ଶ୍ରେଷ୍ଠ ଗୃହର ହେଉ ନା କାହିଁକି ଭୃତ୍ୟର କର୍ମ ସଚ୍ଚୋଟ ଭାବରେ ଜୀବନ କଟାଇବାର ପ୍ରେରଣା ସେ ପାଇଲା । ନିଶ୍ଚୟ ସେ ସଚ୍ଚୋଟ ହେବ, ନିଶ୍ଚୟ··· ନିଶ୍ଚୟ···

ତାହାର କାନ୍ଧରେ କାହାର ସ୍ପର୍ଶ ପାଇ ସୋପି ଚମକି ଚାହିଁ ଦେଖିଲା ପୁଲିସ ।

ଏଠି କ'ଣ କରୁଛ, ପୁଲିସ ପଚାରିଲା ।

କିଛି ନାହିଁ, କହିଲା ସୋପି ।

ତା ହେଲେ ମୋ ସାଙ୍ଗରେ ଆସ, ପୁଲିସ କହିଲା । ଛଅ ମାସ ଜେଲ, ମ୍ୟାଜିଷ୍ଟ୍ରେଟ ରାୟ ଦେଲେ ବିଚାର କରି ।



Digitized by srujanika@gmail.com

# ଧରିତ୍ରୀ ଓ ଧରିତ୍ରୀ

ଏଇ ସେଇ ସର୍ବଂସହା ଧରିତ୍ରୀ । କବିମାନେ ଯାହାକୁ ନାରୀ-ରୂପରେ କଳ୍ପନା କରିଛନ୍ତି । ଯାହାର ସୁ-ଉଚ୍ଚ ପର୍ବତକୁ କୁଚ ସହିତ ତୁଳନା କରାଯାଇଛି । କୋଟି କୋଟି ବର୍ଷ ବୟସ ହେଲେ ବି ଯେ ଚିରଯୌବନା । ଯେ ନିରଳସ ଭାବରେ ଚରକି ଭଳି ବୁଲି ବୁଲନ୍ତି । ଧାରଣ କରି ରଖିଛି କୋଟି କୋଟି ପ୍ରାଣୀ । କେତେ ଅଦ୍ଭୁତ ପ୍ରକାର ସନ୍ତାନ ! କୋଟି କୋଟି ସନ୍ତାନ ଯାହାକୁ ଅବାରିତ ଦୋହନ କରୁଛନ୍ତି ।

ପାଣ୍ଡବ ବଂଶାବତଂସ ରାଜା ପରୀକ୍ଷିତଙ୍କ ରାଜତ୍ୱ କାଳରେ ଏଇ ଧରିତ୍ରୀ ଏକଦା ହତପ୍ରଭା ଓ ଅଶ୍ରୁମୁଖୀ ହୋଇ ବିଚରଣ କରୁଥିବାର ଦେଖି ଧର୍ମ ପଚାରିଲେ, ଭଦ୍ରେ ! ତୁମ୍ଭର ମଳିନପ୍ରଭା ଓ ବିବର୍ଣ୍ଣ ମୁଖଶ୍ରୀ ଦେଖି ବୋଧ ହେଉଛି ତୁମ୍ଭେ କୌଣସି ମହାନ ମନଃପୀଡ଼ାରେ ପ୍ରପୀଡ଼ିତା । ଏହାପରେ ତୁମ୍ଭଙ୍କୁ କାମାନ୍ଧ ଉନ୍ମାଦ କ୍ଷମତାଲୋଭୀ ହିଂସ୍ରକମାନେ ଭୋଗ କରିବେ ଏବଂ ତଥାକଥିତ ପଣ୍ଡିତ ବୈଜ୍ଞାନିକ-ମାନେ ସେ ଉନ୍ମାଦମାନଙ୍କର ଭୃତ୍ୟ ହୋଇ ତୁମ୍ଭର ବହୁସନ୍ତାନର

Digitized by srujanika@gmail.com

ଭଗବାନ ଦୁଃଖରେ ଓ [illegible], [illegible] କ'ଣ ତୁମେ ଶୋକ କରୁଛ ? ଅସ୍ତ୍ର-ଶସ୍ତ୍ରଧାରୀ ଶାସକମାନେ ଜନ-ମଙ୍ଗଳ, ଶାନ୍ତି, ଆଦର୍ଶର ଦୋହାଇ ଦେଇ ଅନ୍ୟମାନଙ୍କୁ ଶୋଷଣ କରି ନିଜର ପାଶବିକ ଲାଳସା ଚରିତାର୍ଥ କରିବେ, ସେଥିପାଇଁ କଅଣ ତୁମେ ଉଦ୍‌ବିଗ୍ନ ? ସମସ୍ତେ ପରସ୍ପର ବିନାଶକୁ ହିଁ ପ୍ରାଧାନ୍ୟ ଦେଇ ଉତ୍ତମ କାର୍ଯ୍ୟ ବୋଲି ପ୍ରଚାର କରିବେ, ସେଥିପାଇଁ କ'ଣ ତୁମେ ଚିନ୍ତିତ ? ଯେଉଁ ମନୁଷ୍ୟ-ସନ୍ତାନମାନଙ୍କୁ ତୁମର ଶ୍ରେଷ୍ଠ ସୃଜନ ବୋଲି ଭାବି ତୁମେ ଗର୍ବ ଅନୁଭବ କରୁଥିଲ ସେମାନେ ଦିନକୁ ଦିନ ହୀନବୁଦ୍ଧି ହୋଇ ଏବଂ ନିଜନିଜର କ୍ଷୁଦ୍ରତାରେ ମୁଗ୍ଧ ହୋଇ ପରସ୍ପରକୁ ବିନାଶ କରି ଓ ତୁମ ପ୍ରତି ନାନା ଅତ୍ୟାଚାର କରି ଦିନେ ତୁମର କୋଳରୁ ନିଶ୍ଚିହ୍ନ ହୋଇଯିବେ, ସେଥିପାଇଁ କ'ଣ ତୁମେ ଲଜ୍ଜିତା ଓ ଅପମାନିତା ? ତୁମେ ପ୍ରଚୁର ରତ୍ନ ଓ ଶସ୍ୟ ଉତ୍ପାଦନ କରୁଥିଲେହେଁ ଲୋଭୀମାନେ ତାହାକୁ ଲୁଣ୍ଠିତ କରି ଅବା ନଷ୍ଟ କରି ତୁମର କୋଟି କୋଟି ସନ୍ତାନଙ୍କୁ ଅନାହାରରେ ରଖି ଦୁର୍ଭିକ୍ଷ ସୃଷ୍ଟି କରିବେ ଏବଂ ରାଜା ଓ ରାଜକର୍ମଚାରୀମାନେ ସେ ଲୋଭୀମାନଙ୍କୁ ସାହାଯ୍ୟ କରି ନିଜର ଭାଗ ବଢ଼ାଇବାରେ ଲାଗିବେ ଓ ଶେଷରେ ସମୂହ ବିପ୍ଳବରେ ନାଶ ଯିବେ ସେଥିପାଇଁ କଅଣ ତୁମେ ମର୍ମାହତା ? ଯେଉଁ ଜ୍ଞାନ ବିଜ୍ଞାନ ସାହାଯ୍ୟରେ ମନୁଷ୍ୟ ଦିନେ ପରମପୁରୁଷଙ୍କ ପ୍ରତି ଆକୃଷ୍ଟ ହୋଇ ଶାନ୍ତି ସାମ୍ୟ ଲାଭ କରିଥିଲା, ସେହି ଜ୍ଞାନକୁ ଦିନେ ମନୁଷ୍ୟମାନେ ପରସ୍ପର ବିନାଶ ପାଇଁ ବିନି-ଯୋଗ କରିବେ ଓ ଭଗବାନଙ୍କୁ ଖାଲି ମାନବର କଳ୍ପନା ବୋଲି ଭାବିବେ ସେଥିପାଇଁ କଅଣ ତୁମେ ବ୍ୟଥିତା ? ଧରଣୀ କୌଣସି ଉତ୍ତର ନ ଦେଇ ଅଧୋମୁଖୀ ହୋଇ ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ !

Digitized by srujanika@gmail.com

ଆଜି ଏଇ ସେଇ ଧରଣୀ । କାମଦେବଙ୍କ ସ୍ତ୍ରୀ । ଯାହାକୁ ଅନେକ ଧରଣୀ ସହିତ ତୁଳନା କରନ୍ତି । ଯାହାଙ୍କ କୁଚ-ଯୁଗଳକୁ ପର୍ବତ ସହିତ ତୁଳନା ମଧ୍ୟ କରନ୍ତି । ବୟସରେ ସିଏ ପ୍ରୌଢ଼ା ହେଲେ ବି ଏପର୍ଯ୍ୟନ୍ତ ଯୁବତୀ ଓ ସୃଜନକ୍ଷମା । ସିଏ ସକାଳୁ ରାତି ଦୁଇଟା ପର୍ଯ୍ୟନ୍ତ ନିରଳସ ଭାବରେ ଚରକ ଭଳି ବୁଲି କାମ କରୁଥାନ୍ତି । ଯାହାଙ୍କର ଏ ପର୍ଯ୍ୟନ୍ତ ବି କୋଳରେ କୋଟିଏ ସନ୍ତାନ ସ୍ତନ୍ୟପାନ କରୁଛନ୍ତି, ଦୋହନ କରୁଛନ୍ତି । ସିଏ କୋଟିଏ ସନ୍ତାନର ଜନନୀ ହୋଇ ମଧ୍ୟ ପୁଣି ଗର୍ଭବତୀ ।

ରାତି ପ୍ରାୟ ଦୁଇଟା । ଧରଣୀର କେତେକ ସନ୍ତାନ ଗୋଟାଏ ବିରାଟ ମାରଣାସ୍ତ୍ର ନେଇ ଚାଲିଛନ୍ତି ନୀରବରେ । ମାରଣାସ୍ତ୍ରର ପରୀକ୍ଷା ହେବ ଧରଣୀର ସମୁଦ୍ର ବକ୍ଷରେ । ବ୍ୟୋମଯାନରୁ ମାରଣାସ୍ତ୍ର ନିକ୍ଷେପ କରାଗଲା । ମୁହୂର୍ତ୍ତେ କଡ଼ କଡ଼ ଶବ୍ଦରେ ଧରଣୀର ବକ୍ଷ ଆନ୍ଦୋଳିତ ହେବାକୁ ଲାଗିଲା । ଯନ୍ତ୍ରଣାର ବେଦନାରେ ଧରଣୀ କମ୍ପି ଉଠିଲେ । ନୀଳାକାଶ ସହସ୍ର ସହସ୍ର ବିସ୍ଫାରିତ ନୟନରେ ଅନାଇ ରହିଲେ । ଏ ମାରଣାସ୍ତ୍ର ଏକ ଲହମାରେ କୋଟି କୋଟି ମନୁଷ୍ୟ ବିନାଶ କରି ପାରିବ । ଯେଉଁ ଦେଶର ସେ ମାରଣାସ୍ତ୍ର ସେ ଦେଶର ରାଷ୍ଟ୍ରପତି ଆନନ୍ଦରେ, ଗର୍ବରେ ଆସ୍ଫାଳନ ବକ୍ତୃତା ଦେବାକୁ ଲାଗିଲେ । ଧରଣୀର ଆଜି ଏକ କୁକ୍ଷିରେ ଦୁର୍ବଳ ସନ୍ତାନମାନଙ୍କ ଉପରେ ହିଂସ୍ର ପାଶବିକ ମନୁଷ୍ୟ-ସନ୍ତାନମାନେ ଆଦର୍ଶର ଦୁହାଇ ଦେଇ ଶୋଷଣ ଓ ହତ୍ୟାରେ ବ୍ୟାପୃତ ସେତେବେଳେ ।

ଧରଣୀର ଆଉ କେତେଗୁଡ଼ିଏ ସନ୍ତାନ କେଉଁଠି ଚିତ୍କାର କରି ଘୋଷଣା କରିବାକୁ ଲାଗିଲେ, ହୁଆ, ହୁଆ, ହତ୍ୟା ହୁଆ, ହତ୍ୟା ହୁଆ...

Digitized by srujanika@gmail.com

ଧରଣୀ କଣ୍ଡ଼ ଲେଉଟାଇଲେ । ସେ କନ୍ୟେ ଲେଉଟିଲେ ନାହିଁ, କାମଦେବ ତାଙ୍କୁ ଜବରଦସ୍ତ ଲେଉଟାଇ ଦେଲେ ନିଜ ଆଡ଼କୁ । ଧରଣୀଙ୍କ ଆର କଡ଼ରେ ଝୋଲ-ଝୁଆଟି ନଯୋଡ଼ ନିଦରେ ଶୋଇଛି; କିନ୍ତୁ ମୁହଁ ତା'ର ଲାଗି ରହିଛି ସ୍ତନାଗ୍ରରେ । ଧରଣୀ ମୁସ୍ତୀରେ ଶୋଇବା ପାଇଁ ଟିକିଏ ହଲଚଲ ହେବା ମାତ୍ରକେ ସେ ନେଳି ଉଠି ଚୋଉଲେ ସ୍ତନକୁ ଯାଆନ୍ତି ଯିବ ମଧ୍ୟରେ ଚୋଷଣ କରି ଯାଉଛି କିଛିକ୍ଷଣ ଧରି । କାମଦେବ ଅନେକ କ୍ଷଣ ଧରି ଅପେକ୍ଷା କରିଥିଲେ । ବିରକ୍ତ ହୋଇ ଶେଷରେ ସେ ନିଜ ବିଛଣାକୁ ଯାଇ ଧରଣୀର ଗୋଟିଏ କଡ଼ରେ ଶୋଇଲେ । ଅପେକ୍ଷା କରି ରହିଥିଲେ କେତେ-ବେଳେ ଝୁଆଟା ସ୍ତନ୍ୟପାନ ଛାଡ଼ିଲେ ସେ ଧରଣୀକୁ ନେବେ । ଶୋଇ ଶୋଇ ସେ ଧରଣୀକୁ ଉପଭୋଗ କରିବାର ନାନା କଳ୍ପନା କରୁଛନ୍ତି । ଧରଣୀର ଗୋଟିଏ ପଟରେ ଝୁଆଟି ଚୋଷଣ କରି ଝୁଲୁଛି ଓ ଅନ୍ୟପଟରେ ଛକି ବସିଅଛନ୍ତି କାମଦେବ ମଧ୍ୟ ସେଇଥି ପାଇଁ ।

କାମଦେବ କହିଲେ ଶେଷରେ, "ତୁମକୁ ସେ ଦୁହିଁ ଦୁହିଁ ଦୁର୍ବଳ କରିଦେବ, ସବୁ ରକ୍ତ ଶୋଷିଦେବ ସେ ତୁମର ।"

ଧରଣୀ ମ୍ଳାନ ସ୍ୱରରେ ହସି କହିଲେ, ଆଉ ତୁମେ କାହିଁକି ଆସିଲ ମୋ ବିଛଣାକୁ ! ଯେତିକି ହୋଇଛନ୍ତି ସେତିକି ତ ମଣିଷ ହେଉ ନାହାନ୍ତି···

କାମଦେବ ରଗିଯାଇ କହିଲେ, ସେ ମନ୍ତ୍ର କଥାଗୁଡ଼ାକ ଆଜି ଶୁଣାଅ ନାହିଁ ତମେ । ଯିଏ ପିଲା ଛୁଆ ହେଉଛନ୍ତି ସିଏ ବୁଝିବେ ସେ କଥା ! ତୁମେ କିଏ ନା ମୁଁ କିଏ ? ସେଥିପାଇଁ ତୁମେ ଚିନ୍ତା କର ନା ।

ଝୁଆଟି ଶୋଇ ପଡ଼ିଲାଣି । କାମଦେବ ନିଜକୁ ଭାଗ୍ୟବାନ୍ ମନେ କଲେ, ଝୁଆଟା ଆଜି ସହଜରେ ଧରଣୀକୁ ଛାଡ଼ି ଦେଇଛି !

Digitized by srujanika@gmail.com

କାମଦେବ ଧରଣୀକୁ ଭିଡ଼ି ଆଣିଲେ ନିଜ ଆଡ଼କୁ । ଧରଣୀ ପ୍ରତିବାଦ ନ କରି ପଡ଼ି ରହିଲେ କାଠ ଖଣ୍ଡ ପରି ଦେହକୁ କାଠ କରି । ସେ ଜାଣନ୍ତି, ଯେତେ ଥର ଦେଖିଛନ୍ତି ବାରଣ କଲେ କାମଦେବ ଉତ୍‌କ୍ଷିପ୍ତ ହୋଇ ଉଠନ୍ତି । ଛୁଆଟି ଇତି ମଧ୍ୟରେ ଉଠି ପଡ଼ି କିଛିକ୍ଷଣ ନିର୍ବାକ୍ ଭାବରେ ରହି ଧରଣୀର ବୁକୁ ଉପରକୁ କୁଦି ପଡ଼ିଲା । ଅଗତ୍ୟା କାମଦେବ ପୁଣି ଅପେକ୍ଷା କରିବାକୁ ଲାଗିଲେ । ଛୁଆଟି ବୁକୁ ଉପରୁ ଖସି ଯାଇ ଧରିଣୀକୁ ଲେଉଟାଇ ଦେଲା ତା ପଟକୁ ଓ ସ୍ତନ୍ୟ ପାନ କରିବାକୁ ଲାଗିଲା ।

ଧରିଣୀର ଏକ ସ୍ତନରୁ କୁଳୁ କୁଳୁ ନାଦରେ ଝରଣା ବୋହି ଯାଉଛି । ଋଷି ଚରମାନେ ଧାଡ଼ି ଧାଡ଼ି ହୋଇ ତାହାର କୂଳରେ ବସି ନିଃଶବ୍ଦରେ ଧ୍ୟାନ କରୁଛନ୍ତି । ଗୋଟାଏ ପଥରକଟା ଠିକାଦାର ସେ ସ୍ତନର ଅନ୍ୟ ପଟେ ବାରୁଦ ପୂରାଇ ଗୁଡ଼ୁମ ଗୁଡ଼ୁମ କରି ଫୁଟାଉଛି, ଫଟାଉଛି ସେ ସ୍ତନକୁ । ଧରଣୀ କମ୍ପି ଉଠୁଛି ବାରମ୍ବାର । ଠିକାଦାର ଏ ସ୍ତନଟିକୁ ଠିକା ଦେଇଛି । ଅଳ୍ପଦିନ ଭିତରେ ସେ ଏ ସ୍ତନକୁ ଧରଣୀର ବୁକୁ ସହିତ ମିଶାଇ ଦେବ । ବହୁତ ଅର୍ଥ ଉପାର୍ଜନ କରିବ ସେ । ମହା ଉତ୍ସାହରେ ସେ ଦିନ ରାତି ଲାଗିଛି କାମରେ । ଆଉ ଏକ ଠିକାଦାର ପ୍ରକାଣ୍ଡ ଭଅଁର ଦ୍ୱାରା ଧରଣୀର ବୁକୁର ନାନା ସ୍ଥାନରେ ଗାତମାନ ଖୋଳି ରସ ଅନ୍ୱେଷଣରେ ବ୍ୟସ୍ତ । ଧରଣୀର ବୁକୁତଳେ ଯେତେ ରସ ଅଛି ସେ ଶୋଷି ନେବ !

ବିଲୁଆମାନେ ପୁଣି ଚିତ୍କାର କରି ଉଠିଲେ, ହୁକ୍କା ହୁଆ…

କାମଦେବ ଆଉ ଅପେକ୍ଷା କରି ପାରିଲେ ନାହିଁ । ପୁଣି ସେ ଜବରଦସ୍ତି ଧରିଣୀକୁ ଲେଉଟାଇ ଦେଲେ ନିଜ ପଟକୁ । ଛୁଆଟି କିଛିକ୍ଷଣ ରୋଦନ କଲା ପରେ ତୃପ୍ତିର ସହିତ ଶୋଇ ପଡ଼ିଛି ।

Digitized by srujanika@gmail.com

ଅଳ୍ପକ୍ଷଣ ଭିତରେ ତା'ର ତୃପ୍ତି ଚାଲିଯାଇ ପୁଣି ବୁଭୁକ୍ଷା ଜାତ ହେବ ! ଏଥର କାମଦେବ ଶୀଘ୍ର ଶୀଘ୍ର କ୍ରୀଡ଼ା କରିବାକୁ ଲାଗିଲେ । ଧରିତ୍ରୀକୁ ପ୍ରଲୋଭନ ଦେବାକୁ ଲାଗିଲେ, ଗହଣା ଦେବେ, ଭଲ ଶାଢ଼ୀ ଦେବେ । ଧରିତ୍ରୀ ପଡ଼ି ରହିଲେ ସେମିତି ନିଶ୍ଚଳ ବିସ୍ଫାରିତ ନୟନରେ ଉପରକୁ ଚାହିଁ । କାମଦେବଙ୍କ ଗହଣା ଶାଢ଼ୀ ଦେବା କଥା ଶୁଣି ମ୍ଳାନ ଭାବରେ ଟିକଏ ହସିଲେ କେବଳ । ନିଜ କ୍ରିୟାର ଅନୁରୂପ ପ୍ରତିକ୍ରିୟା ପାଇଁ ଧରିତ୍ରୀକୁ ପ୍ରଲୋଭନ ଦେବା କାମଦେବ-ଙ୍କର ବ୍ୟର୍ଥ ହେବାରୁ ସେ ମନେ ମନେ ରାଗି ଗଲେ ଓ ହିଂସ୍ର ଭାବରେ ଉପଭୋଗ କରିବାକୁ ଲାଗିଲେ ।

ଧରିତ୍ରୀର ବୁକୁରେ ଗୋଟାଏ ଭୂଗର୍ଭ ବୋମା ଫୋଡା ହେଉଛି । ଏକ କାମାନ୍ଧ ହିଂସ୍ର ଜନନାୟକ (?) ସେ ମାରଣାସ୍ତ୍ରର କ୍ଷମତା ପରୀକ୍ଷା କରୁଛି । ତଥାକଥିତ ବୈଜ୍ଞାନିକମାନେ ଉପସ୍ଥିତ ଥାଇ ନିର୍ଦ୍ଦେଶ ଦେଉଛନ୍ତି । ଧରିତ୍ରୀ ପୁଣି ଥରେ କମ୍ପି ଉଠିଲେ । କମ୍ପି ଉଠିଲେ ବିଶ୍ୱମାତା ଜନନୀ ! ବୈଜ୍ଞାନିକମାନେ ପରିମାପକ ଯନ୍ତ୍ରରେ ସେ କମ୍ପନର କ୍ରମ ଓ ପରିମାଣ ଦେଖି ଉଲ୍ଲସିତ ହୋଇ ନୃତ୍ୟ କରିବାକୁ ଲାଗିଲେ । ଧରିତ୍ରୀର ଆଉ ଏକ ବୁକୁରେ କର୍ଷଣ ଚାଲିଛି ଶସ୍ୟ ପାଇଁ ।

ଧରିତ୍ରୀର ବୁକୁର ଏକ ନିଭୃତ କୋଣରେ ଏକ ସନ୍ନ୍ୟାସୀ ବସିଛନ୍ତି ଚିନ୍ତାକୁଳ ଭାବରେ । ଏ ସନ୍ତାନଟି କିଏ ହେବ ? ଏ ସନ୍ତାନଟି ଜଣେ ଦାର୍ଶନିକ । ବୈଜ୍ଞାନିକମାନେ ଧରିତ୍ରୀକୁ ଜଡ଼ ବସ୍ତୁ-ପିଣ୍ଡ ବୋଲି ପ୍ରମାଣ କରିବା ସତ୍ତ୍ୱେ ଏ ସନ୍ତାନଟି ଧରିତ୍ରୀକୁ ପ୍ରାଣବନ୍ତ ରୂପେ ସ୍ପଷ୍ଟ ଦେଖି ପାରୁଛି । ତାଙ୍କ ମତରେ ଜଡ଼ରୁ କେବେହେଁ ଜୀବନ ସୃଷ୍ଟି ହୋଇ ପାରେ ନା, ଜୀବନରୁ ହିଁ ଜୀବନ ସୃଷ୍ଟି ହୁଏ । ପ୍ରତ୍ୟେକ ଧୂଳି କଣାର ମଧ୍ୟ ଜୀବନ ଅଛି । ଧରିତ୍ରୀ ଓ ଧରିତ୍ରୀର

Digitized by srujanika@gmail.com

ସନ୍ତାନମାନଙ୍କ ଦୁଃଖରେ ଏ ସନ୍ତାନଟି କାତର । ସେ ଚିନ୍ତା କରୁଛି ଦୁଃଖ ମୋଚନର ପନ୍ଥା, ଧର୍ମ ଦର୍ଶନ ମତ ଆଦି ବର୍ତ୍ତମାନ ହିଂସାର ଅସ୍ତ୍ର ହୋଇଛନ୍ତି, ମନୁଷ୍ୟମାନେ ସେ ସବୁର ଦୋହାଇ ଦେଇ ପରସ୍ପରକୁ ହତ୍ୟା ଓ ଶୋଷଣ କରିବାରେ ଲାଗିଛନ୍ତି । ଏକ ମନୁଷ୍ୟ ବା ଦେଶ କେବଳ ନିଜର ସ୍ୱାର୍ଥ ଓ ପ୍ରତିଷ୍ଠା ଚିନ୍ତା କରୁଥିବାରୁ ସେ ସର୍ବଦା ଭୀତ ଏବଂ ସେହି ଭୟରୁ ଜାତ ହୋଇଛି ହିଂସା, ହିଂସ୍ରତା । ତେଣୁ ସାମାନ୍ୟ ସମସ୍ୟା ମଧ୍ୟ ଭୟାବହ ଆକାର ଧାରଣ କରୁଛି । ଯାହା ନଖରେ ଛିଣ୍ଡିବା କଥା ତାକୁ କୁରାଢ଼ି ଲାଗୁଛି । ସମସ୍ୟାଗୁଡ଼ିକ ଭୟାବହ ଆକାର ଧାରଣ କରୁଛନ୍ତି ଏବଂ ଯୁଦ୍ଧ ଛଡ଼ା ସମାଧାନର ଅନ୍ୟ ପନ୍ଥା ନାହିଁ ମନେ ହେଉଛି । ଏ ଭୟ, କାମ, କ୍ରୋଧ, ଲୋଭ ସୃଷ୍ଟିକର୍ତ୍ତା ମନୁଷ୍ୟ ମନରେ ଦେଇଛନ୍ତି ସତ, କିନ୍ତୁ ସେ ସବୁକୁ ବିଶ୍ଳେଷଣ କରି ଆତ୍ମଜ୍ଞାନ ଲାଭ କରିବାର ବୁଦ୍ଧି ମଧ୍ୟ ଦେଇଛନ୍ତି । ତେଣୁ ସେ ସବୁର ଦାସତ୍ୱ ପାଶବିକତା । ବିଶ୍ୱ ପ୍ରତି ଆକୃଷ୍ଟ ହେଲେ ମନୁଷ୍ୟ କେବଳ ନିଜର ପ୍ରତିଷ୍ଠା ପାଇଁ ହିଂସ୍ର ହୁଅନ୍ତା ନାହିଁ, ନିଜର ଅର୍ଥ, ଯଶ, ପ୍ରତିଷ୍ଠା ପ୍ରତିପତ୍ତି ପାଇଁ ଏତେ ଶଠତା ନିର୍ମମ ହୁଅନ୍ତା ନାହିଁ, ମାନବିକତାକୁ ବିସର୍ଜନ ଦେଇ ପାଶବିକତାକୁ ବରଣ କରନ୍ତା ନାହିଁ । କି ଉପାୟରେ ମନୁଷ୍ୟକୁ ବିଶ୍ୱ ପ୍ରତି ଆକୃଷ୍ଟ କରାଯାଇ ବୁଦ୍ଧିର ବିକାଶ ଅଣାଯାଇ ପାରେ ? ଏପରି ଦେଶ କଅଣ ଗଢ଼ି ହେବ ନାହିଁ ଯିଏ ହିଂସ୍ର ଯୁଦ୍ଧରେ ଜୟକୁ ହିଁ ଏକ ମାତ୍ର ଗୌରବର ବିଷୟ ମନେ ନ କରି ଶାନ୍ତିର ବିକାଶକୁ ହିଁ ଗୌରବ ମନେ କରିବ ।

ସନ୍ନ୍ୟାସୀ ବିଶ୍ୱ ବିପ୍ଳବୀ । ଯିଏ ମନୁଷ୍ୟର ସହଜାତ କାମ କ୍ରୋଧ ଲୋଭକୁ ଓ ଅହମିକାକୁ ଉତ୍ତେଜିତ କରି ଜନପ୍ରିୟ ହୋଇ ଅଶାନ୍ତି ସୃଷ୍ଟି କରେ ଏବଂ ବିଶ୍ୱର ଆଧ୍ୟାତ୍ମିକ ଓ ଶାରୀରିକ ବିନାଶର କାରଣ ହୁଏ ସେ ବିପ୍ଳବୀ ନୁହଁ, ସେ ମନୁଷ୍ୟସମାଜର କର୍କଟ ରୋଗ । ଯିଏ ଶାନ୍ତିକାମୀ ସେଇ କେବଳ ବିପ୍ଳବୀ ।

Digitized by srujanika@gmail.com

ଯୀଶୁଖ୍ରୀଷ୍ଟ, ବୁଦ୍ଧ, ଚୈତନ୍ୟ, ପରମହଂସ, ରାମମୋହନ, ଗାନ୍ଧିମାନେ ବିଶ୍ୱର ବରପୁତ୍ର ! କି ନିର୍ଭୟ ସେମାନେ !! ତେଣୁ ସେମାନଙ୍କ କୂଟ-ନୈତିକ ବା ରାଜନୈତିକ ଶଠତା ଗ୍ରହଣୀୟ ନାହିଁ । ଧର୍ମ ସେମାନଙ୍କ ପକ୍ଷରେ ରାଜନୀତି କୂଟନୀତି ଠାରୁ ବହୁ ଶ୍ରେୟ !

ସନ୍ନ୍ୟାସୀ ପ୍ରାର୍ଥନା କଲେ, ହେ ବିଶ୍ୱ ! ଯେଉଁ ଅହମିକା ତୁମେ ଦେଇଚ, ଯାହାର ସୁନିୟନ୍ତ୍ରଣରେ ବୁଦ୍ଧିର ବିକାଶ ଓ ପ୍ରବଳତାରେ ବିନାଶ, ସେ ଅହମିକାକୁ ତୁମେ ହିଁ ଜାଣ ! ଜଗତରେ ଧନ୍ୟ ତୁମେ ! ତୁମକୁ ଜାଣି ହେବ ଚେଷ୍ଟା ମଧ୍ୟ କେତେ ବିଚିତ୍ର ଏ ସଂସାରରେ !!

ସନ୍ନ୍ୟାସୀ କଳ୍ପନା କରୁଛନ୍ତି ଭବିଷ୍ୟତର ଜାତିସଂଘ ବିଷୟରେ । ...ଜାତିସଂଘରେ ନାନା ଦେଶର ହିଂସ୍ର ନୀତିର ପ୍ରତିନିଧି ନ ରହି ରହିଛନ୍ତି ସମଗ୍ର ପୃଥିବୀର ବଡ଼ ବଡ଼ ସ୍ୱାର୍ଥତ୍ୟାଗୀ ଦାର୍ଶନିକ, ଯେଉଁ-ମାନେ କୌଣସି ଦେଶର ପ୍ରତିନିଧି ନୁହନ୍ତି, ମାନବିକତାର ପ୍ରତିନିଧି, ଧରିତ୍ରୀର ନିରବଚ୍ଛିନ୍ନ ବିରାଟ ବୁକୁକୁ ଯେଉଁମାନେ ନିଜର ହିଂସ୍ର ବୁଦ୍ଧିରେ ଖଣ୍ଡ ଖଣ୍ଡ ଭିନ୍ନ ଭିନ୍ନ ଦେଶ କ୍ଷୁଦ୍ର ଭୂଗୋଳ ଓ ଇତିହାସ ସୃଷ୍ଟି କରିବାରେ ଲାଗିଛନ୍ତି ପରସ୍ପରକୁ ହତ୍ୟା କରି ଓ ଶୋଷଣ କରି, ସେମାନଙ୍କର ପ୍ରତିନିଧି ନୁହନ୍ତି ସେମାନେ । ସେମାନେ ଗଢ଼ିବେ ଏକ ନୂତନ ସୈନ୍ୟ, ଯେଉଁ ସୈନ୍ୟମାନେ ଆନନ୍ଦରେ ବିରାଟର ଜୟଗାନ କରୁ କରୁ ଆଗେଇ ଯିବେ ନିର୍ଭୟରେ ତୋପ କମାଣ ମୁହଁକୁ ମୃତ୍ୟୁ ବରଣ କରିବାକୁ ! ସ୍ୱାଧୀନତାର ଇତିହାସ ଅନ୍ୟ ମାହାନ ଜୟଗାନ କରୁ ନା କାହିଁକି ମାନବିକତାର ଇତିହାସ ଜୟଗାନ କରିଛି ଓ କରିବ କେବଳ ଏମାନଙ୍କର ଜୟଗାନ !

ଇତିମଧ୍ୟରେ ଧରିତ୍ରୀର ଛୁଆଟି ଉଠିପଡ଼ି ଚିତ୍କାର କରି କାନ୍ଦିବାକୁ ଲାଗିଲା । ଆଉ ଚେଷ୍ଟା କଲା କାମଦେବକୁ ଧରିତ୍ରୀର ବୁକୁ ଉପରୁ ହଟାଇ ଦେବାକୁ । ଅନେକ କ୍ଷଣ ସେ ଶୋଇ ପଡ଼ିଥିଲା, ଲୋକଗୁଡ଼ି

Digitized by srujanika@gmail.com

ହୋଇ ଉଠିଛି ସେ ! ଏଥର ସେ ନକ୍ଷତ୍ରବନ୍ଧା । କାମଦେବଙ୍କ ମଧ୍ୟ ସେଇ ଅବସ୍ଥା । ଦୁହେଁ ହିଁ ଲକ୍ଷ ରକ୍ଷିଲେ ଧରଣୀର ବୁକୁରେ । ଧରଣୀ ପଡ଼ିଛନ୍ତି ସେମିତି ମୌନ ନିଶ୍ଚଳ ଭାବରେ, ତାଙ୍କ ବୁକୁ ଉପରେ ଲାଗିଛି ନାନା ଲୀଳା !

ବାଳୁଆମାନେ ଶେଷ ପ୍ରାଙ୍ଗଣକ ଖେଳିଲେ, ହମ୍ଭା, ହମ୍ଭା ! ଆଉ ଥରେ ଦୂରରୁ ଶୁଣିଲେ, କ୍ୟା ହମ୍ଭା, କ୍ୟା ହମ୍ଭା··· । ତା'ପରେ ସମସ୍ତେ ନୀରବ ହେଲେ ।

ଧରଣୀ ଉଠିଲେ । ଅନାଇ ଦେଖିଲେ ସ୍ୱାମୀ ଓ ପୁତ୍ର ଦୁହେଁ ହିଁ ତାଙ୍କୁ ଦୋହନ କଲା ପରେ କ୍ଲାନ୍ତ ଭାବରେ ଶୋଇ ପଡ଼ିଛନ୍ତି । ଦୁହିଁଙ୍କୁ ହିଁ ତାଙ୍କର ଅବୋଧ ସନ୍ତାନ ଭଳି ମନେ ହେଲା । ଅଧରରେ ତାଙ୍କର ସ୍ମିତ ହାସ୍ୟ ଖେଳିଗଲା । ସେ ପ୍ରାର୍ଥନା କଲେ । ହେ ପରମ ପିତା, ଏମାନଙ୍କୁ ସଂଯମ ଦିଅ, ସୁସ୍ଥ ସବଳ କର ।

ଆକାଶରେ ଏକ ସ୍ତବ୍ଧ ଭାବ । ସନ୍ନ୍ୟାସୀ ଯାଉଛନ୍ତି ଡାକି ଡାକି, ହେ ଅମୃତର ସନ୍ତାନମାନେ, ଉଠ, ଜାଗ, ବରଣ୍ୟ ପ୍ରତି ଆକୃଷ୍ଟ ହୁଅ, ତାହା ହିଁ ସବୁଠାରୁ ଶ୍ରେଷ୍ଠ ! ସନ୍ନ୍ୟାସୀଙ୍କ ଆହ୍ୱାନ ଶୁଣି ଧରଣୀ ଆକାଶକୁ ଚାହିଁ ନମସ୍କାର କଲେ, ମୁହଁ ତାଙ୍କର ଆଶାରେ ଉଜ୍ଜ୍ୱଳ ହୋଇ ଉଠିଲା । ତା'ପରେ ସେ ଗୃହକାମ କରିବା ପାଇଁ ସବୁଜ କଣ୍ଠାଟି ପିନ୍ଧି ଉଠିଗଲେ ଚରିବା ଭଳି ... କରିବାକୁ ।

ଧରଣୀ ମଧ୍ୟ ଆକାଶକୁ ଚାହିଁ ହସିଲେ । ସେ ମଧ୍ୟ ଆଶାର ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଲେ । ସେ ମଧ୍ୟ ପ୍ରାର୍ଥନା କଲେ, ହେ ଅନନ୍ତ ପୁରୁଷ, ମୋର ସନ୍ତାନମାନଙ୍କ ମନରୁ ଅବୋଧତା ଦୂର କର, ସେମାନଙ୍କୁ କ୍ଷମା କର, ସୁସ୍ଥ ସବଳ କର, ସଂଯମ ଦିଅ ! କୋଟି କୋଟି ସନ୍ତାନ କୋଳରେ ଧରି ସେ ମଧ୍ୟ ଚରିବା ଭଳି

Digitized by srujanika@gmail.com

ଭୁଲୁଛନ୍ତି । ତାଙ୍କର ସବୁଜ ଦୈନନ୍ଦିନ ବସନ ଆନନ୍ଦରେ ତରଙ୍ଗାୟିତ ହେବାକୁ ଲାଗିଲା ।

ସନ୍ନ୍ୟାସୀ ବୃକ୍ଷଚ୍ଛନ୍ତି କହି କହି—

"ସର୍ବେ ଭବନ୍ତୁ ସୁଖିନଃ,
ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ,
ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍" ॥

ତାଙ୍କର ପ୍ରାର୍ଥନାରେ ସେ ଯେପରି ସବୁ ହିଂସ୍ରତା ଶୋଷଣ କରିବାକୁ ଲାଗିଲେ ନୀଳକଣ୍ଠ ଭଳି !



Digitized by srujanika@gmail.com

# କିମାଶ୍ଚର୍ଯ୍ୟମ୍

(୬)

ଶୂରସେନ ବନରେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଚାରି ଭାଇ ଶୋଷରେ ପାଣି ପିଇବାକୁ ଯାଇ ବକରୂପଧାରୀ ଧର୍ମଙ୍କ ପ୍ରଶ୍ନର ଉତ୍ତର ଦେଇ ନ ପାରିବାରୁ ମରି ପଡ଼ିଥାଆନ୍ତି । ଶେଷରେ ଧର୍ମପୁତ୍ର ଯୁଧିଷ୍ଠିର, ଯେତେବେଳେ ସେଠାକୁ ପାଣି ପିଇବାକୁ ଗଲେ ଧର୍ମ ତାଙ୍କୁ ମଧ୍ୟ ସେଇ ପ୍ରଶ୍ନ ପଚାରିଲେ, କିମାଶ୍ଚର୍ଯ୍ୟମ୍ । ଯୁଧିଷ୍ଠିର ଉତ୍ତର ଦେଲେ—"ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମାଳୟମ୍,

ଶେଷା ଜୀବିତୁମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରମ୍ !!"

ଶୋଷ ବେଳେ ପାଣି ପିଇବାକୁ ନ ଦେଇ ଅଖାଡ଼ୁଆ ପ୍ରଶ୍ନ ପଚାରିବା ଓ ନ ଦେଇ ପାରିଲେ ମାରି ଦେବାକୁ ଅନେକେ ଅନୁମୋଦନ କରିବେ ନାହିଁ; କିନ୍ତୁ ଦେବତାମାନଙ୍କ କାମ ସେମିତି ଅଖାଡ଼ୁଆ ! [illegible] ଯାହା ହେଉ, ସେଦିନ ସନ୍ଧ୍ୟା ସମୟରେ ବିଲୋଚନ, ମଦନ ଓ ବାବା ଜହ୍ନବାନନ୍ଦ [illegible] ବସି ଖଟ୍ଟ, ଫକୁଡ଼ି, ବୃଥା ଆଦି ଉପଭୋଗ କରୁଥିବାବେଳେ ଆମେ ନିଜ ନିଜ ଜୀବନର ଆଶ୍ଚର୍ଯ୍ୟ ଘଟଣା ବ୍ୟକ୍ତ କରିବାର ବିଲୋଚନର ପ୍ରସ୍ତାବକୁ

Digitized by srujanika@gmail.com

ଆପଣ ନିଶ୍ଚୟ ଅନୁମୋଦନ କରିବେ । ଆଜି ସେ ସନ୍ଧ୍ୟାଟା ବି ହୋଇଥିଲା ଆଶ୍ଚର୍ଯ୍ୟ ହେବା ପାଇଁ । ଯାହାରେ ଝଡ଼ର ହିଂସ୍ର ପଲମ୍ବିଂଗ ଗର୍ଜନ ମଧ୍ୟ ଶୁଣାଯାଏ ବର୍ଷାରେ ଅନ୍ଧାର ଘେରିକି ଝରଝର କରୁଣ ସ୍ୱରରେ । ଠିକ୍ ଯେମିତି ପରମାଣୁ ବୋମାର ହିଂସ୍ର ଗର୍ଜନ ସହିତ ମନୁଷ୍ୟର କରୁଣ ପ୍ରାର୍ଥନା, My soul hath long dwelt with him that hateth peace, I am for peace, but when I speak they are for war; ଅଲ୍ଲାହୁ ଆକ୍‌ବର, ଅଲ୍‌ଲା ଇଲାହାଇଲ୍ ଆଲ୍ଲାହ; "ଅସତୋ ମାମ୍ ସତ୍ ଗମୟ ତମସୋମାମ୍ ଜ୍ୟୋତିର୍ଗମୟ, ମୃତ୍ୟୋର୍ମାମ୍ ଅମୃତମ୍-ଗମୟ ।"

ହିଲେଚନ ଜଣେ ଶିକ୍ଷକ, ମଦନ ଜଣେ ବଣିକର ଅଫିସର, ମୁଁ ଜଣେ......ଜଣେ......" ମୁଁ । ଆଉ, ବାବା ଉଦୟନାଥଙ୍କୁ ତ ଆପଣମାନେ ଜାଣନ୍ତି । ସେ ଆମ ସାମାଜିକ ସ୍ତରର ବାହ୍ର ହେଲେ ଥିଲେ ମଧ୍ୟ ଆମର ବାଲ୍ୟବନ୍ଧୁ । ଆଇନର ଅନୁମାନ ଯେ ପ୍ରତ୍ୟେକେ ନିଷ୍ପାପ, ନିର୍ଦ୍ଦୋଷ । ଅର୍ଥାତ୍, ଅର୍ଥ ଓ ପ୍ରତିପତ୍ତି ବଳରେ ନିଜର ଦୁଷ୍କର୍ମ ଘୋଡ଼ାଇ ଦେଇ ପାରିଲେ ହେଲା ଏବଂ କେତେକ କେମିତି ବଡ଼ମାଧ୍ ଓଲକେ କୌଣସି ଧୂର୍ତ୍ତାମି ପ୍ରକାଶ କରିଦେଲେ ନିଜ ବୁଦ୍ଧିରେ, ନ ହେଲେ ଓକିଲ ବୁଦ୍ଧିରେ ଖପେଇ ଦେଇ ତାହା ପୁଣ୍ୟ ବୋଲି ପ୍ରମାଣିତ କଲେ ହେଲା; କିନ୍ତୁ ଉଦୟଙ୍କର ସବୁ ଦୁଷ୍କର୍ମ ପଦାରେ ପଡ଼ିଛି । ତଥାପି ସେ ଆମର ପ୍ରିୟ କାହିଁକି ? ମନସ୍ତତ୍ତ୍ୱ-ବିତ୍‌ମାନେ ଏହାର ଉତ୍ତର ଦିଅନ୍ତୁ ।

ଆଉ ଗୋଟିଏ କଥା । ଅଶ୍ୱିନୀ ଘୋଷ କହୁଥିଲେ, ମନଟାକୁ ଦର୍ପଣ ଭଳି କରିବା ଉଚିତ । ସେଥିରେ ଘଟଣାଗୁଡ଼ିକ କେବଳ ପ୍ରତିଫଳିତ ହେବ, ବିକୃତ ହେବ ନାହିଁ । ପୁଣି ମାଷ୍ଟରନାଥ୍ କହିଲେ, ଘଟଣାମାନଙ୍କର କୌଣସି ସ୍ୱତଃସିଦ୍ଧ ଅର୍ଥ ନାହିଁ, ଭିନ୍ନ ଭିନ୍ନ ମନୁଷ୍ୟ

Digitized by srujanika@gmail.com

ନିଜ ନିଜର ବୋଧ (ବା ସୁବିଧା) ଅନୁସାରେ କୌଣସି ଗୋଟିଏ ଘଟଣାର ଭିନ୍ନ ଭିନ୍ନ ଅର୍ଥ କରନ୍ତି । ଅତଏବ ହେ ସଜ୍ଜନ ପାଠକ, ଆମ୍ଭମାନଙ୍କର ପ୍ରତ୍ୟକ୍ଷଜ୍ଞାନସମ୍ଭୂତ ଘଟଣାଗୁଡ଼ିକ ଶୁଣି ଯାଆନ୍ତୁ, "ବିଶ୍ୱାସ କରନ୍ତୁ ବା ନ କରନ୍ତୁ"; କିନ୍ତୁ ସେଥିରେ ଥିବା ନାନା ଚରିତ୍ରଗୁଡ଼ିକର ବିଚାର ନ କରି ନିଜକୁ ହିଁ ବିଚାର କରନ୍ତୁ, ଯଦି କଦାପି ବିଚାର କରିବାର ମନୋବୃତ୍ତି ତ୍ୟାଗ ନ ପାରନ୍ତି ।

ଏତକ ଗୌର ଚନ୍ଦ୍ରିକା ପରେ ଘଟଣାଗୁଡ଼ିକ ଆରମ୍ଭ କରିବାକୁ ଯାଉଛି; କ୍ଷମା କରିବେ ।

"ସୁଜନମାନେ ଶୁଣ ଦେଇ ମନକର୍ଣ୍ଣ ହୋ,
ଦେଇ ମନ କର୍ଣ୍ଣ
ଆଶ୍ଚର୍ଯ୍ୟ ଘଟଣାମାନ କରିବି କଥନ ହୋ,
କରିବି କଥନ"

ଆନନ୍ଦେ ଏକବାର୍ ହରି ବୋଲ୍ ।

(ଖ)

ପ୍ରଥମେ ଆରମ୍ଭ କଲେ ତ୍ରିଲୋଚନ……

ମୁଁ ସେତେବେଳେ ଥାଏ—ରେ । ଅଳ୍ପଦିନ ହେବ ବଦଳି ହୋଇଥାଏ । ମୋର ପୂର୍ବବର୍ତ୍ତୀ ବିଚାରକଙ୍କଠାରୁ ଚାର୍ଜ ବୁଝିନେବା ପରେ ପ୍ରଥମ ମକଦ୍ଦମା ପଡ଼ିଲା, ଗୁରୁବାଷ୍ଟ ବୋଷ୍ଟମ୍ୟା ମୁନ୍ଦେଇ ବନାମ ଅଗାଧୁ ଜେନା ଓ ଅନ୍ୟ ୫ ଜଣ ଦେହାର ପକ୍ଷମାନଙ୍କୁ ଜିଜ୍ଞାସା କରାଇଲେ । ପକ୍ଷମାନେ ଯେ ଯାହା ସ୍ଥାନରେ ଛିଡ଼ା ହେଲେ । ମୁଁ ଉତ୍ସାହରେ ନଥିଟି ପଢ଼ିବାକୁ ଲାଗିଲି ।

ମକଦ୍ଦମା ସମ୍ବନ୍ଧୀୟ ଘଟଣାଟି ଏହିରୂପ ବର୍ଷେକର ଆଗର ଘଟଣା । ଏ ଗୁରୁବାଷ୍ଟର ଅଭିଯୋଗ, ତାହାର ଦଖଲି ବାଡ଼ିରୁ ମୁଦାଲି ଛ'ଜଣ କାଟି ନେଇ ଯାଇଥିବାରୁ ତାହାର ଦଶ ଟଙ୍କା କ୍ଷତି

Digitized by srujanika@gmail.com

ହୋଇଛି । ସାମାନ୍ୟ ଘଟଣା, ମୋର ପୂର୍ବତନ ବନ୍ଧୁଙ୍କ ଅନୁ-ଯୋଗକୁ ସମ୍ପୂର୍ଣ୍ଣ ବିଶ୍ୱାସ ନ କରିବାରୁ ମୁଦାଲିମାନଙ୍କୁ ଚାଲାଣ ନ କରି ଥାନାକୁ ଦେଇଥିଲେ ଇନ୍‌କୁଆରି କରିବାକୁ । ଇନ୍‌କୁଆରି କରିଥିଲେ ଜଣେ ପୁଲିସ ଅଫିସର୍ । ଇନ୍‌କୁଆରି କରି ସେ ଯେଉଁ ରିପୋର୍ଟ ଦେଇଥିଲେ ତାହା ଅତି ସଂକ୍ଷିପ୍ତ, କିନ୍ତୁ ତାହାର ଅଧିକାଂଶ ସ୍ଥାନ ଦଖଲ କରିଥାଏ "ମୁଦାଲିମାନେ ଗୁଣ୍ଡା ପ୍ରକୃତିର, ଦୁଷ୍ଟ ସ୍ୱଭାବ, ଦଗାବାଜ୍ ଇତ୍ୟାଦି ଇତ୍ୟାଦି" । ମୋର ପୂର୍ବବର୍ତ୍ତୀ ହାକିମ ସେହି ରିପୋର୍ଟ ପାଇ ମୁଦାଲିମାନଙ୍କୁ ଚାଲାଣ କରି ବିଚାର ଚଳାଇଲେ; କିନ୍ତୁ ବର୍ଷେ ହେବ ଗୁରୁବାକ୍ୟର ଜେରା ଶେଷ ହୋଇ ନାହିଁ । ପୂର୍ବରୁ ତିନି ତିନିଥର ତାହାର ଜେରା ସ୍ଥଗିତ ହୋଇଛି; ମୋ ବେଳକୁ ଚତୁର୍ଥ ଥର ଜେରା ଆରମ୍ଭ ହେବାର କଥା ।

ଗୁରୁବାକ୍ୟ ଶପଥ ନେବା ପରେ ମୁଦାଲିର ଉକିଲ ପଚାରିଲେ, ତୁମର ସ୍ୱାମୀ କେତେ ବର୍ଷ ହେବ ମଲେଣି ?

ଉତ୍ତର, ସେ କଥା ପଚାରି ସରିଛି, ଗୋଟାଏ କଥା ଥରକୁ ଥର ପଚାରିବାର ନିୟମ ନାହିଁ ।

ମୁଁ ଓ ସମସ୍ତେ ଆଶ୍ଚର୍ଯ୍ୟ ହେଲୁ, ସେ ଉତ୍ତର ଶୁଣି । ଏ ସାକ୍ଷ୍ୟ ପ୍ରମାଣ ଆଇନ ଜାଣେ ? ମୁଦାଲି ଉକିଲ ହାଁ କରି ରହିଁ ରହିଲେ କିଛିକ୍ଷଣ ଗୁରୁବାକ୍ୟ-ଆଡ଼େ । ମୁଁ ବି ଅନାଇଲି । ଅଦ୍ଭୁତ ବ୍ୟକ୍ତିତ୍ୱ-ପୂର୍ଣ୍ଣ ଚେହେରା । ଆଖି ଯୋଡ଼ିକ ଉଜ୍ଜ୍ୱଳ । ମୁଁ ଉକିଲଙ୍କ ପ୍ରଶ୍ନଟି ନାକଚ କରି ଦେଲି ।

ମୁଦାଲି ଉକିଲ ପୁଣି ପଚାରିଲେ, ଆଚ୍ଛା ସେ କଥା ଥାଉ । କହିବ କି, ସ୍ୱାମୀ ପାଞ୍ଚ ବର୍ଷ ତଳେ ତୁମର ଗୋଟିଏ ଅବୈଧ ସନ୍ତାନକୁ ତୁମ୍ଭେ ମାରିଥିଲ......

ଗୁରୁବାକ୍ସ ଚତୁର ବୁଦ୍ଧିମାନ ଓକିଲ-ଆଜ୍ଞେ; ସ୍ପଷ୍ଟ ଦେଖିଲି ସେ ସ୍ୱଦାଣିରେ ଓକିଲ ଟିକିଏ ଭୟ ପାଇଲେ। ମୁଁ ମଧ୍ୟ ଆଶ୍ୱସ୍ତି ଅନୁଭବ କଲି।

ଓକିଲ ପ୍ରଶ୍ନଟାକୁ ଟାଣି ନେଇ ପଚାରିଲେ, ମାରିଥିଲ ବୋଲି ଏଇ ଦୁ'ଜଣ ମୁଦାଲା ସମେତ ଅନ୍ୟ ଗ୍ରାମବାସୀମାନେ ଅଭିଯୋଗ କରିଥିଲେ କି ?

ଗୁରୁବାକ୍ସ ଉତ୍ତର ଦେଲା, ଆପଣ କଅଣ ଜାଣିବାକୁ ଚାହାନ୍ତି ? ମୋର ଅବୈଧ ସନ୍ତାନ ହୋଇଥିଲା କି, ମୁଁ ତାକୁ ମାରି ଦେଇଥିଲି କି, ଲୋକେ ସେମିତି ଅଭିଯୋଗ କରିଥିଲେ କି, ଏମିତି ତିନୋଟା ପ୍ରଶ୍ନ ଆପଣ ଏକା ସଙ୍ଗରେ ପଚାରି ପାରିବେ ନାହିଁ, ନିୟମ ନାହିଁ।

ବିଚାରାଳୟରେ ଯେତେ ଲୋକ ଥିଲେ ସମସ୍ତେ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହିଲେ ଗୁରୁବାକ୍ସ ଆଡ଼େ। ମୁଦାଲା ଓକିଲ ଅପ୍ରସ୍ତୁତ ହୋଇ ତଳକୁ ମୁହଁ ପୋତିଲେ। ମୁଁ ଓକିଲଙ୍କୁ ଗୋଟି ଗୋଟି କରି ପଚାରିବାର ଆଦେଶ ଦେଲି।

ଓକିଲ ପଚାରିଲେ, ତେବେ କୁହ, ତୁମର ଅବୈଧ ସନ୍ତାନ ହୋଇଥିଲା କି ?

ଗୁରୁବାକ୍ସର ଓକିଲ ସାକ୍ଷ୍ୟ ପ୍ରମାଣ ଆଇନ ଦେଖାଇ ଆପତ୍ତି କଲେ ଯେ ଏପରି ଅସମ୍ମାନସୂଚକ ପ୍ରଶ୍ନ ପଚରା ଯାଇ ନ ପାରେ। ମୁଦାଲା ଓକିଲ ମଧ୍ୟ ସାକ୍ଷ୍ୟପ୍ରମାଣ ଆଇନ ଦେଖାଇ କହିଲେ ଯେ ସାକ୍ଷୀର ଚରିତ୍ର ସମ୍ପର୍କରେ ଜାଣିବାର ଅଧିକାର ତାଙ୍କର ଅଛି। ତା'ପରେ ଚାଲିଲା ଦୁଇ ଓକିଲଙ୍କ ମଧ୍ୟରେ ବାଦାନୁବାଦ। ଗୁରୁବାକ୍ସର ଓକିଲ ତର୍କ ବାଢ଼ିଲେ, ଦଣ୍ଡବିଧି ଆଇନ ଅନୁସାରେ ବଧବାର ଅବୈଧ ସନ୍ତାନ ହେବା ଦଣ୍ଡନୀୟ ନୁହେଁ ଏବଂ ସେ

Digitized by srujanika@gmail.com

ଅଧିକାର ତା'ର ଅଛି । ଅତଏବ କୌଣସି ବିଧବାର ଯଦି ଅବୈଧ ସନ୍ତାନ ହୁଏ ତେବେ ନୈତିକତା ଦୃଷ୍ଟିରୁ ତାହା ଦୋଷାବହ ହୋଇ ପାରେ ସିନା; ଆଇନରେ ନାହିଁ ଯେ ନୈତିକ ଦୋଷକୁ ଅଦାଲତ ଆଇନଗତ ଦୋଷ ବୋଲି ଧରି ପାରିବେ; ଅତଏବ ଏ ପ୍ରଶ୍ନ ଆଇନାନୁମୋଦିତ ନୁହେଁ; ପୁଣି ଏଲାହାବାଦ ହାଇକୋର୍ଟ ୧୯୫୯ ମସିହା ୪୯ ପୃଷ୍ଠାରେ କହନ୍ତି ଯେ ନୈତିକତାର ମାନଦଣ୍ଡ ଚିରନ୍ତନ ନୁହେଁ; ଯୁଗେ ଯୁଗେ ଏବଂ ସ୍ଥାନ ବିଶେଷରେ ତାହା ଭିନ୍ନ ଭିନ୍ନ; ମହାତ୍ମାଗାନ୍ଧି ୧୯୩୯ ମସିହା ଡିସେମ୍ବର ୨୩ ତାରିଖ ଇୟଙ୍ଗ ଇଣ୍ଡିଆରେ ଏବଂ ବଶିଷ୍ଟ ଆଇନଜ୍ଞ ଡ଼ଃ ଗୁର ସ୍ୱାଧୀନମୋଦ ପାଲ ମଧ୍ୟ ଏ କଥା କହିଛନ୍ତି । ମୋର ବିଦ୍ୱାନ ବନ୍ଧୁ କୌଣସି ପ୍ରମାଣ ଦେଇ ପାରିବେ ଯେ ବର୍ତ୍ତମାନ ଯୁଗରେ ଏହା ନୈତିକତା ଦୃଷ୍ଟିରୁ ଦୋଷାବହ ? ମୁଦାଲି ଓକିଲ ତର୍କ କାଢ଼ିଲେ, ଏହାର ପ୍ରମାଣ ଦରକାର ନାହିଁ । କାରଣ ସାକ୍ଷ୍ୟପ୍ରମାଣ ଆଇନ ଅନୁସାରେ କୌଣସି ଯୁଗର ବା ସ୍ଥାନର ନୈତିକତା ବିଷୟରେ ଅଦାଲତଙ୍କ ନିଜର ଜ୍ଞାନକୁ ଅଦାଲତ ବିନା ପ୍ରମାଣରେ ମଧ୍ୟ ପ୍ରମାଣାନୁମୋଦିତ ବୋଲି ଗ୍ରହଣ କରି ପାରିବେ । ଗୁରୁବାଗର ଓକିଲ ଉତ୍ତର ଦେଲେ, ମୁଁ ଏହାର ଆଇନାନୁମୋଦିତା ସ୍ୱୀକାର ନ କରି କେବଳ ତର୍କ ଖାତିରରେ ଆପାତତଃ ଗ୍ରହଣ କରି କହୁଛି ଯେ, ଯଦିବା ବିନା ପ୍ରମାଣରେ ଅଦାଲତ ଗ୍ରହଣ କରି ପାରିବେ ଯେ ବର୍ତ୍ତମାନ ଯୁଗରେ ଅବୈଧ ଗର୍ଭକୁ ସମାଜ ନୈତିକତା ଦୃଷ୍ଟିରୁ ଦୋଷାବହ ମନେ କରେ; ତଥାପି ସେଥିରେ ପୁଣି ଏ ଅନୁମାନ ଆଇନସମ୍ମତ ହେବ ନାହିଁ, ଯେ ସମାଜ ତାହାକୁ ନୈତିକ ଦୋଷାବହ କହୁଥିବାରୁ ଅବିବାହିତା ବା ବିଧବାମାନେ ଅବୈଧ ସନ୍ତାନକୁ ମାରି ଦିଅନ୍ତି । ମୁଦାଲି ଓକିଲ ପ୍ରତ୍ୟୁତ୍ତର ଦେଲେ, ଦ୍ୱିତୀୟ ପ୍ରଶ୍ନଟି ଅର୍ଥାତ୍

Digitized by srujanika@gmail.com

‘ଗୁରୁବଂଶ ସେ ଅବୈଧ ସନ୍ତାନକୁ ମାରିଦେଇ ଥିଲା କି ?’ ପ୍ରଥମ ପ୍ରଶ୍ନ ସହିତ ଜଡ଼ିତ, ଦ୍ୱିତୀୟ ପ୍ରଶ୍ନରେ ଅଭିଯୁକ୍ତ ଘଟଣା ଯଦି ସତ୍ୟ ହୁଏ ତେବେ ତାହା ଆଇନ ଅନୁସାରେ ଦଣ୍ଡନୀୟ ହୋଇ ଥିବାରୁ ଦ୍ୱିତୀୟ ପ୍ରଶ୍ନ ଆଇନ ଅନୁସାରେ ଗ୍ରହଣୀୟ ଏହା ମୋର ବିଦ୍ୱାନ୍ ବନ୍ଧୁ ନିଶ୍ଚୟ ସ୍ୱୀକାର କରିବେ, ଏବଂ ପ୍ରଥମ ପ୍ରଶ୍ନଟି ତେଣୁ ସ୍ୱତଃ ଗ୍ରହଣୀୟ ହୋଇ ଯାଉଛି, ମୁଁ ତେଣୁ ସବୁ ପ୍ରଶ୍ନଗୁଡ଼ିକୁ ଏକା-ସାଙ୍ଗରେ ପଚାରିଥିଲି; କିନ୍ତୁ ଅଦାଲତ ଗୋଟି ଗୋଟି କରି ପଚାରିବାକୁ ଆଦେଶ ଦେବାରୁ ଏପରି ଆଇନଗତ ଜଟିଳତା ସୃଷ୍ଟି ହେଲା, ତେଣୁ ମୁଁ ବର୍ତ୍ତମାନ ସବିନୟ ଅନୁରୋଧ କରୁଛି ଅଦାଲତ ଏହାର ସମାଧାନ କରନ୍ତୁ ।

ମୁଁ ମହାସମସ୍ୟାରେ ମଜିଲି । ମୁଁ କଅଣ ଜାଣିଥିଲି ଯେ ମୋର ଆବେଦନ ଏମିତି ଜଟିଳତା ସୃଷ୍ଟି କରିବ ! ଅବଶ୍ୟ ନୈତିକ ବା ସାମାଜିକ ସମସ୍ୟାଟି ମୋତେ ଅଡୁଆରେ ପକାଇ ନ ଥିଲା । କାରଣ ତାହା ଅଦାଲତର ପରିସର ବାହାରେ, ଏବଂ ବିଧାନସଭା ପରିସର ମଧ୍ୟରେ ସେପରି ସବୁ ସମସ୍ୟାର ସମାଧାନ ବିଧାନସଭା କରିବେ, ଅଦାଲତ ନୁହେଁ । ମୋର ଜଣେ ବନ୍ଧୁ ଥରେ ତର୍କ କଲେ ଯେ ପୁରୁଷ ବା ନାରୀର ବହୁ ନାରୀ ବା ପୁରୁଷକୁ ପ୍ରେମ କରିବାର ଉଦ୍ଦାମ ପ୍ରବୃତ୍ତି ସହଜାତ ହୋଇଥିବାରୁ ତାକୁ ରୋଧ କରିବା ଯୁକ୍ତିସଙ୍ଗତ ନୁହେଁ ଏବଂ ପାଶ୍ଚାତ୍ୟ ଦେଶରେ ତେଣୁ ସମସ୍ତଙ୍କର ଅବାଧମିଳନକୁ ପ୍ରଶ୍ରୟ ଦିଆଯାଉଛି । ମୋ ମତରେ ଇନ୍ଦ୍ରିୟରୁ ଜାତ ସେ ପ୍ରେମ ଯେପରି ଉଦ୍ଦାମ ସେଇ ଇନ୍ଦ୍ରିୟରୁ ଜାତ ହିଂସା ମଧ୍ୟ ସେଇପରି କ୍ରୂର । ତେଣୁ ସେପରି ଇନ୍ଦ୍ରିୟଜ ଅବାଧ ପ୍ରେମକୁ ପ୍ରଶ୍ରୟ ଯଦି ଦିଆଯାଏ ତେବେ ଇନ୍ଦ୍ରିୟଜ ହିଂସା ମଧ୍ୟ ପ୍ରଶ୍ରୟ ପାଇବ; ଦ୍ୱିତୀୟଟିକୁ ପ୍ରଶ୍ରୟ ଦେବା ସମାଜ ପକ୍ଷରେ ଭୀଷଣ ବିପଦ୍‌ଜନକ ହୋଇପାରେ

Digitized by srujanika@gmail.com

ସମାଜ ପ୍ରଥମଟିକୁ ନିର୍ମୂଳିତ କରିବାର ଚେଷ୍ଟା କରନ୍ତି । ଯେ ଯାହା ହେଉ ସେ ସମସ୍ୟା ସମାଧାନସମ୍ଭବ । ଅବଶ୍ୟ ମୋ ମତରେ ନୈତିକତାକୁ ଆଇନଦ୍ୱାରା ବାଧ୍ୟତାମୂଳକ କଲେ ସମାଜରେ ଶଠତା ଓ ଏକନିଷ୍ଠତା ବ୍ୟାପିବ । ନୈତିକତା ଦରକାର ଶାସକମାନଙ୍କର ଚାରିତ୍ରିକ ଆଦର୍ଶ ଦ୍ୱାରା, ଶିକ୍ଷାଦ୍ୱାରା । ଯେଉଁଠି ଶାସକମାନେ ଦୁଶ୍ଚରିତ୍ର ସେଠି ନୈତିକତାକୁ ଆଇନ ଦ୍ୱାରା ବାଧ୍ୟତାମୂଳକ କରିବା ଶଠତା ମାତ୍ର । ତାହାଦ୍ୱାରା ଚାରିତ୍ରିକ ନୈତିକତା ନ ବଢ଼ି ଆଇନ-ଗତ କୁଟିଳତା ବଢ଼େ, ଅର୍ଥାତ୍ ଶଠତା ବଢ଼େ । ସେ ଯାହା ହେଉ; ଉକିଲମାନଙ୍କ ଏ କୂଟ ତର୍କ ବର୍ତ୍ତମାନ ଚମତ୍କାର ଲାଗୁଛି ସିନା, ସେତେବେଳେ ବିପଦରେ ପଡ଼ିଥିବାରୁ [illegible] ଲାଗୁଥିଲା । ମୁଁ ନୀରବରେ ବସି ରହିଲି, ଉକିଲମାନେ ମଧ୍ୟ ସେମିତି ବସି ରହିଲେ, ମୋର ସମାଧାନ ଅନିଶ୍ଚିତରେ । କିନ୍ତୁ ସମାଧାନ ମୋ ମନକୁ ଆସିଲା ନାହିଁ ଲଜ୍ଜାରେ ମୋ ମୁହଁ ଲାଲିଆ ପଡ଼ିଗଲା ।

ନୁରୁବାସ ନିଜେ ମୋତେ ଏ ବିପଦରୁ ରକ୍ଷା କଲା । ସେ କହିଲା, ଉତ୍ତର ନ ଦେଲେ ଅଦାଲତର ମୋ ବିଷୟରେ ଭ୍ରାନ୍ତ ଧାରଣା ହୋଇପାରେ, ତେଣୁ ମୁଁ ଉତ୍ତର ଦେଉଛି ଯେ ମୋର କେବେ ହେଲେ ଅବୈଧ ସନ୍ତାନ ହୋଇ ନ ଥିଲା, ତାକୁ ମାରି ଦେବା କଥା ଉଠୁ ନାହିଁ; କିନ୍ତୁ କେବେ ମୋର ଏପରି କଳଙ୍କ ରଟାଇବା କଥା ସତ, ସେମାନେ ମୋତେ ବେଶ୍ୟା କହିବାକୁ ନାନା ଚକ୍ରାନ୍ତ କରି ବିଫଳ ହୋଇ ଶେଷରେ ଏମିତି ରଟାଇ ଥିଲେ । ଖୁବ୍ ଦୃଢ଼ତା ଓ ସଙ୍କୋଚହୀନ ଉତ୍ତର ଦେଲା; ନୁରୁବାସ । ମୁଁ ସ୍ୱସ୍ତିର ନିଶ୍ୱାସ ପକାଇ ତାହା ଲେଖିଲି ଏବଂ କପଟୀ ଶ୍ରାବଣର ସାକ୍ଷୀ ଉତ୍ତର ଦେଲା ତାହା ମଧ୍ୟ ଲେଖି ରଖିଲି । ମନ ଭିତରେ ମୁଁ ମନେ ମନେ ମୁଣ୍ଡ ନୁଆଁଇଲି ନୁରୁବାସୁ ପାଖରେ ।

Digitized by srujanika@gmail.com

ତା'ପରେ ଚାଲିଲା ଜେରା ଘଣ୍ଟାଏ କାଳ । ମୁଦାଲା ଓକିଲ ଝାଳନାଳ ହୋଇଗଲେ; କୌଣସି ଉତ୍ତରରେ ଗୁରୁବାଘକୁ ବାଗେଇ ପାରିଲେ ନାହିଁ ।

ଶେଷରେ ଓହ ପଚାରିଲେ, ଆଚ୍ଛା କହତ, ଇନ୍‌କୁଆର କରିବାକୁ ଯାଇ ପୁଲିସ୍ ତୁମ ଘରେ ରାତିରେ ରହିଥିଲେ କି ?

ଗୁରୁବାଘର ଓକିଲ ହଠାତ୍ ଛିଡ଼ା ହୋଇ ପଡ଼ି କହିଲେ, ଧର୍ମାବତାର, ଏ ପ୍ରଶ୍ନ ତିନି ତିନିଥର ପଚରା ସରିଛି, ଆଗରୁ ଏବଂ ପ୍ରତ୍ୟେକ ଥର ତା'ର ପ୍ରତିକ୍ରିୟା ଗୁରୁବାଘ ପକ୍ଷରେ ମର୍ମନ୍ତୁଦ ହୋଇଛି । ଏ ସେଇ କାରଣରୁ ଓକିଲ ତିନି ତିନି ଥର ସ୍ଥଗିତ ରହିଛି । ଅତଏବ ..

ଘୋଡ଼ାଏ ଶବ୍ଦ ହେଲା । ଅନାଇ ଦେଖିଲି ଗୁରୁବାଘ କାଠ-ଗଡ଼ା ଭିତରେ ପଡ଼ି ଯାଇଛି ବେହୋସ୍ ହୋଇ ଓ ବାନ୍ତି କରୁଛି । ମୁଦାଲା ଓକିଲ ବିଜୟସୂଚକ ମୁରୁକି ହସ ହସୁ ଥାଆନ୍ତି । ଗୁରୁବାଘ ଓକିଲ ଗୁରୁବାଘକୁ ବାହାରକୁ ନେଇ ଗଲେ ଅନ୍ୟ ସାକ୍ଷୀମାନଙ୍କ ଦ୍ୱାରା । ସମସ୍ତେ ବିଶ୍ରାମାଳୟ ଛୁଟି ଚାଲିଗଲେ ।

ପେସ୍କାର କହିଲେ, ଆଜ୍ଞା, ପୂର୍ବରୁ ତିନି ଥର ଠିକ୍ ଏହି ପ୍ରଶ୍ନ ପରେ ଏମିତି ଘଟିଛି । ନଥି ପଢ଼ି ଦେଖିଲି ଯେ ତାହା ଠିକ୍ । ମୋର ପୂର୍ବବର୍ତ୍ତୀ ବିଚାରକ ତିନିଥରଯାକ ଜେରା ସ୍ଥଗିତ ରଖିଛନ୍ତି ସେଇ କାରଣ ଲେଖି ରଖି । ମୁଁ ମଧ୍ୟ ସେଇ କାରଣ ଲେଖି ରଖି ଜେରା ପରଦିନ ପାଇଁ ସ୍ଥଗିତ ରଖିଲି ।

କିନ୍ତୁ ଆଜି ପର୍ଯ୍ୟନ୍ତ ସେ ରହସ୍ୟ ମୋ ପାଖରେ ରହସ୍ୟ ହୋଇ ଯାଇଛି ।

Digitized by srujanika@gmail.com

(ଗ)

ଆମେ ସମସ୍ତେ ଦୀର୍ଘନିଶ୍ୱାସ ପକାଇଲୁ । କିଛିକ୍ଷଣ ପରେ ମଦନ କହିଲେ, ଲୋକେ ଯେଉଁ ସମାଜରେ ଦୁର୍ନୀତିପରାୟଣ ସେଠି ଶତ ଶତ ଯୋଜନା ମଧ୍ୟ ରକ୍ତାକ୍ତ ବିପ୍ଳବ ଅଟକାଇ ପାରିବ ନାହିଁ । ଲୋକେ ଏ ପର୍ଯ୍ୟନ୍ତ ପଶୁ ପ୍ରବୃତ୍ତିକୁ ଜୟ କରି ପାରି ନାହାନ୍ତି । ଅନ୍ୟକୁ ଶୋଷଣ କରି, ହତ୍ୟା କରି, ବିପଦରେ ପକାଇ, ଅପମାନିତ କରି ନିଜର ପ୍ରତିଷ୍ଠା, ପ୍ରଭୁତ୍ୱ, ପ୍ରତିପତ୍ତି ଅର୍ଜନ କରିବା ହେଉଛି ପଶୁ ସ୍ୱଭାବ । ଏ ସ୍ୱଭାବ ଯୁଗେ ଯୁଗେ ଭିନ୍ନ ଭିନ୍ନ ମାଧ୍ୟମରେ ପ୍ରକାଶ ପାଇଛି, କେବେ ଧର୍ମାନୁଷ୍ଠାନ ମାଧ୍ୟମରେ, କେବେ ବା ଦେଶ-ପ୍ରେମ ନା'ରେ, କେବେ ବା ରାଜଗାଦି ମାଧ୍ୟମରେ, କେବେ ବା କୁଟନୀତି ବା ଶାସନ ନାଁରେ, ଏବଂ ବର୍ତ୍ତମାନ ବ୍ୟାପକ ଭାବରେ ଆଇନ ମାଧ୍ୟମରେ । ଅନ୍ୟଦ୍ୱାରା ନିଜର ଅସ୍ତିତ୍ୱ ଲୋପ ପାଇଯିବାର ଏକ ଅପଥା ପାଶବିକ ଭୟରୁ ହିଁ ଏ ହିଂସ୍ରଭାବ ଜାତ ହେଉଛି । ଯୁଦ୍ଧ ଓ ଧ୍ୱଂସ ଏହାର ଏକମାତ୍ର ପରିଣାମ । ଯେଉଁଦିନ ମନୁଷ୍ୟ ଏ ସଂସାରରେ ଭଗବାନଙ୍କ ପ୍ରତିଷ୍ଠାକୁ ହିଁ ନିଜର ପ୍ରତିଷ୍ଠା ବୋଲି ଜ୍ଞାନ କରିବ ସେତିକିବେଳେ ଯାଇ ପରସ୍ପର ପ୍ରତିହିଂସା, ଅବିଶ୍ୱାସ ଯାଇ ପ୍ରେମ, ଆନନ୍ଦ ଜାତ ହେବ । ମୋ ଜୀବନରେ ଏକ ଘଟଣାରୁ ମୁଁ ଏହାର ପ୍ରମାଣ ପାଇଛି ।

(ଘ)

ମଦନ ଆରମ୍ଭ କଲେ······

ମୁଁ—ରେ ଥିବା ସମୟରେ ବନ୍ଦିକର ବିଭାଗରେ ଗୁରୁତର ଜମାବାକିଗତ ଅଫିସର ଥିଲି । ଦଳେ କେତେ ବାଣିଜ୍ୟମାନଙ୍କ ନାମରେ ହିସାବଖାତା ତନଖି ଥିଲି । ସେ ଜଣେ କୋଟିପତି ବ୍ୟବସାୟୀ କେବଳ ନୁହନ୍ତି, ବିଖ୍ୟାତ ସମାଜସେବୀ ମଧ୍ୟ । ପ୍ରଦେଶରେ ଅନେକ

Digitized by srujanika@gmail.com

ଅନୁଷ୍ଠାନ ତାଙ୍କ ଦାନ ଉପରେ ହିଁ ନିର୍ଭର କରେ । ଧର୍ମ, ଦର୍ଶନ ଆଦି ବିଷୟରେ ତାଙ୍କର ବକ୍ତୃତା ଶୁଣିଲେ ତାଙ୍କର ଅଗାଧ ଜ୍ଞାନ ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ । ଲୋକଙ୍କ ଦୁଃଖ, ଦୁର୍ଦ୍ଦଶା ବିଷୟରେ ସେ ଯେତେବେଳେ କହନ୍ତି ଆଖିରୁ ତାଙ୍କର ପାଣି ଝରି ପଡ଼େ ।

ଏହିପରି ଲୋକଙ୍କ ହିସାବଖାତା ତନଖି ଦେଖିବାର ଦରକାର ନାହିଁ, ଏହି ମନୋଭାବ ନେଇ ମୁଁ ଖାତାପତ୍ର ମିଳାଉଥାଏ ଏକା ଏକା ।

ଏହି ସମୟରେ ଆଉ ଜଣେ ବ୍ୟବସାୟୀ, ଯିଏ କି ତାଙ୍କର ସହୋଦର ଭାଇ, ହଠାତ୍ ପଶି ଆସି ମୋ କାନେ କାନେ କହିଲେ, ଏ ଖାତାରୁ କଅଣ ପାଇବେ ? ଅମୁକ ଘରେ ତାଙ୍କର ଅସଲ ହିସାବ ଖାତା ଅଛି ତାକୁ ଦେଖିଲେ ସବୁ ଜାଲ୍ ଜୁଆଚ୍ଚୋରି ଧରା ପଡ଼ିଯିବ । ଆଉ ଆପଣ ଯଦି ସେ ଅସଲ ଖାତା ସବୁ ନ ଦେଖନ୍ତି ତେବେ ଆମେ ପ୍ରକାଶ କରିବୁ ଯେ ଆପଣ ଘୁଷ୍ ନେଇ ସବୁ ଆଖି ବୁଜି ଦେଲେ । ସାବଧାନ ! କହି ଦେଇ ସେ ଦୌଡ଼ି ପଳାଇ ଗଲେ ।

ମୁଁ ତ ହତବାକ୍ ହୋଇ ହାଁ କରି ରହିଁ ରହିଲି । ସମସ୍ତେ ଜାଣନ୍ତି ଏ ଦୁଇ ଭାଇ ଏ ଯୁଗରେ ଆଦର୍ଶ ଭାଇ, ରାମ ଲକ୍ଷ୍ମଣ ପରେ ଏପରି ଭ୍ରାତୃପ୍ରେମ ଦେଖା ଯାଇ ନାହିଁ । ତାଙ୍କର ବ୍ୟବହାରରେ ତେଣୁ ମୁଁ ଆଶ୍ଚର୍ଯ୍ୟ ହେଲି । ସେ ଯେଉଁ ଭୟ ଦେଖାଇ ଗଲେ ତାହା ମୋତେ ବିଚଳିତ କଲା । ଯେତେ ନିଷ୍ଠାର ସହିତ କାମ କଲେ ବି ଯଦି ତାଙ୍କର ଭାଇ ତାଙ୍କ ମନମୁତାବକ ଷଡ଼ ଓ ହଇରାଣରେ ନ ପଡ଼ନ୍ତି ତେବେ ସେ ଯେ ମୋର କ୍ଷତି କରିବାକୁ ଚେଷ୍ଟା କରିବେ ଏବଂ ଉପରମହଲ ସହିତ ଘନିଷ୍ଠ ଭାବରେ ମତଲବ ଥିବାରୁ ସେଥିରେ ସେ ସଫଳ ହୋଇ ପାରନ୍ତି ଏଥିରେ ସନ୍ଦେହ ନାହିଁ ।

Digitized by srujanika@gmail.com

ମୁଁ ତେଣୁ ସାଙ୍ଗେ ସାଙ୍ଗେ—ଙ୍କୁ ଡ଼କାଇ କହିଲି ଉକ୍ତ ଘର ଭିତରକୁ ଯାଇ ମୁଁ ଖାତାପତ୍ର ଦେଖିବାକୁ ଚାହେଁ । ସେ ମୁରୁକି ହସି କହିଲେ, ଓଃ ହୋ, ମୋ ଭୁଲ ଆସିଥିଲେ ଏହା ଭିତରେ ନିଶ୍ଚୟ, ଆପଣଙ୍କୁ ଏକା ଛାଡି ଦେଇ ଯିବା ଭୁଲ ହୋଇଗଲା, ଆଚ୍ଛା, କିଛି ପରବାଏ ନାହିଁ, ଆସନ୍ତୁ ।

ଗଲି ସେ ଘର ଭିତରକୁ । ଅତି ଆଦର ସନ୍ମାନ ସେ ମୋତେ ବସାଇ ଚାକରକୁ ଆଦେଶ ଦେଲେ ଜଳଖିଆ ଆଣିବାକୁ । ମୁଁ ବହୁତ ଅନୁରୋଧ କଲି ଜଳଖିଆ ନ ଆଣିବାକୁ । ସେ କହିଲେ, ଆପଣଙ୍କ କର୍ତ୍ତବ୍ୟ ଆପଣ କରିବାକୁ ମନା କରିବେ କାହିଁକି ।

ଇତି ମଧ୍ୟରେ ଚାକର ରୁପା-ଥାଳିଆରେ ଜଳଖିଆ ଆଣି ହାଜର । ଗମ୍ଭୀର ଭାବରେ ବସି ରହିଲି । ଭାରି ଅସ୍ୱସ୍ତି ଲାଗିଲା ଏପରି ପରିସ୍ଥିତିରେ ପଡ଼ି । ସୁଖ ସମୟ ସମୟରେ ଏପରି ପୀଡ଼ା-ଦାୟକ ମଧ୍ୟ ହୁଏ । ସେ ମୋତେ ହାତ ଯୋଡି ଅତି ବିନୟର ସହିତ ଅନୁରୋଧ କଲେ । ଅନ୍ତତଃ ଗୋଟିଏ ଲଡ୍ଡୁ ଖାଆନ୍ତୁ । ବାଧ୍ୟ ହୋଇ ଗୋଟିଏ ଲଡ୍ଡୁ ଉଠାଇଲି । ଉଠାଇବା ମାତ୍ରକେ ଛାତି ତଳେ ଯାହା ଦେଖିଲି ସେଥିରେ ଭୟରେ ମୋର କାନମୂଳ ଝାଇଁ ଝାଇଁ ହୋଇଗଲା । ଲଡ୍ଡୁଟି ମୋର ହାତରୁ ଖସି ପଡ଼ିଲା, କପାଳରୁ ଝାଳ ବାହାରି ପଡ଼ିଲା । ଲଡ୍ଡୁ ତଳୁ ଦିଶିଲା ଛପ୍ପ ହୋଇଛି ଶହେଟଙ୍କିଆ ନୋଟ !!

ସେ ସେମିତି ମୁରୁକି ହସି କହିଲେ, ହେଁ ହେଁ, କିଛି ପରବାଏ ନାହିଁ, ନିଅନ୍ତୁ ନିଅନ୍ତୁ । ସେଥିରେ କିଛି ଦୋଷ ନାହିଁ । ସମସ୍ତେ ନେଉଛନ୍ତି ଆଜିକାଲି, ଆପଣ କାହିଁକି ଛାଡିବେ ? ଆଜ୍ଞା, ଭଗବାନ୍ ମଧ୍ୟ ଘୁଷ୍ ନିଅନ୍ତି, ଆମେ ଯେ ଏତେ ଧର୍ମଶାଳା, ମନ୍ଦିର, ଯଜ୍ଞ, ଦାନଧ୍ୟାନ କରୁଛୁ ସେ ଆଉ କିଛି ନୁହଁ, ଘୁଷ୍ । ସେହି ଘୁଷ୍ ପାଇଁ

Digitized by srujanika@gmail.com

ତ ଭଗବାନଙ୍କ କୃପା ଆମଠି ଅଛି । କଅନ୍ତୁ କଅନ୍ତୁ, ଆପଣମାନଙ୍କ ସେବା ପାଇଁ ତ ଆମର ବଞ୍ଚିବା ।

ମୁଁ ହାତ ଯୋଡ଼ି କହିଲି, କ୍ଷମା କରିବେ । ସେ ହସି କହିଲେ, ବୁଝିଲି, ଅଚ୍ଛା, ମୋର ମୁନସି ଯାଇ ଆପଣଙ୍କ ଘରକୁ ଦେଇ ଆସିବ । କିଛି ଭୟ ନାହିଁ ଆଜ୍ଞା, ଧନ୍ଦା କଣ ? ସେ ଧନ୍ଦାବାଲା ଯିଏ ତା' ହାତ ବନ୍ଦ କରି ବସିବ କେଁ କେଁ ।

ଆଉ ସହି ନ ପାରି ପଚାରିଲି, ଆଚ୍ଛା ଏ ଜଙ୍ଗଲ କାରବାର ଆପଣ ସରକାରଙ୍କ ତରଫରୁ କରୁଛନ୍ତି । ସରକାର ଯେତିକି ଲାଭ ଆପଣଙ୍କୁ ଦବାପାଇଁ ଚୁକ୍ତି କରିଛନ୍ତି ସେଥିରେ ତ ଆପଣଙ୍କ ଲାଭ ଲକ୍ଷ ଲକ୍ଷ ଟଙ୍କା ହୋଇଛି, ତଥାପି ଆପଣ କାହିଁକି ଏ ଜାଲ୍ ଜୁଆ-ଚୋରି କରୁଛନ୍ତି, ଜଙ୍ଗଲରେ ଗୋଡ଼ ମିଶାଉଛନ୍ତି ?

ସେ ଅମ୍ଳାନ ବଦନରେ କହିଲେ, ଆଜ୍ଞା ଏ ବ୍ୟବସାୟ ପାଇବା ପାଇଁ ମୋତେ ଅନେକ ବୃନ୍ଦା ଓ ଘୁଷ୍ ଦେବାକୁ ପଡ଼ିଛି ଓ ପଡ଼ୁଛି, ସେ ସବୁ ଉଠିବ କେମିତି ? ତା' ଛଡ଼ା ସେମିତି ସାଧୁ ଉପାୟରେ ରୋଜଗାର କରି ଆନନ୍ଦ, ଉତ୍ତେଜନା ମିଳେ ନାହିଁ । ସିଧାସଳଖ ସାଧୁ ଉପାୟରେ ଟଙ୍କା ରୋଜଗାର କରିବା ଅଲଣା ଲାଗେ । ବଲେଇକୁ ଦେଖି ନାହାନ୍ତି, ମଲା ଜୀବକୁ ସେ ଶିକାର କରି ଖାଏ ।

କହିଲି, ସେ ପାଶବିକ ପ୍ରବୃତ୍ତି, ମାନବିକତା ନୁହେଁ ।

ସେ କହିଲେ, ଏ ହେଉଛି ବ୍ୟବସାୟ ଆଜ୍ଞା, ତପସ୍ୟା ନୁହେଁ । ସବୁ ବ୍ୟବସାୟୀମାନଙ୍କୁ ଏମିତି କରିବାକୁ ପଡ଼େ । ସାଧୁ ଉପାୟରେ ଟଙ୍କା ରୋଜଗାର କରି ଆନନ୍ଦ ନାହିଁ, ଆନନ୍ଦ ଉତ୍ତେଜନା ପାଇଁ ଅସାଧୁ ଉପାୟରେ ଟଙ୍କା ରୋଜଗାର ଦରକାର । ଦେଖୁ ନାହାନ୍ତି, ଯେଉଁ ଜୁଆରିଆ ମାସକୁ ତିନ ହଜାର ଦରମା ପାଉଛି ସେ ବି ଘୁଷ୍

Digitized by srujanika@gmail.com

ନେଉଛନ୍ତି, ନ ହେଲେ ମିଛ ଗସ୍ତଖର୍ଚ୍ଚ ଦେଇ କିଛି ଟଙ୍କା ମାରି ନେଉଛନ୍ତି । ଘୁଷ୍ ଦେଇ ତ ଆମେ ଆନନ୍ଦ ପାଉଁ, ଆପଣ ବି ନେଇ ଆନନ୍ଦ ପାଇବେ, କିଅନ୍ତୁ ନିଅନ୍ତୁ ।

ମୁଁ ହରବାକ୍ ହୋଇ ଛିଡ଼ା ହୋଇ ରହିଲି, ସେ ଗମ୍ଭୀର ଭାବରେ କହିଲେ, "ଆଉ ଆପଣ ଯଦି ନ ନିଅନ୍ତି ବିପଦରେ ପଡ଼ିବେ କହି ରଖୁଛି, ମୁଁ ଉପରବାଲାଙ୍କୁ କହିଦେବି ଯେ ଆପଣ ଘୁଷ୍ ମାଗୁଥିଲେ । ଘୁଷ୍ ନେଇ ସାମାନ୍ୟ ଦି'ଚାରିଟା ଦୋଷ ଦେଖାଇ ରିପୋର୍ଟ ଦେଇ ଦିଅନ୍ତୁ ।"

ମହା-ବିପଦରେ ପଡ଼ିଲି । ନେଲେ ବିପଦ, ନ ନେଲେ ମଧ୍ୟ ବିପଦ । ସେତିକିବେଳେ ପୁଣି ତାଙ୍କ ଭାଇ ସେଇ ବାଟେ ଚାଲିଗଲେ ମୋତେ ତସ୍ବିଟି ଖୁହିଁ ଓ ଭାଇଙ୍କୁ ନମସ୍କାର କରି । ଭୟରେ ଭଗବାନଙ୍କୁ ମନେ ମନେ ଡ଼ାକିଲି ।

(୪)

ଭଗବାନ ଶୁଣିଲେ ? ଆମେ ସମସ୍ତେ ଉଦ୍‌ଗ୍ରୀବ ହୋଇ ପଚାରିଲୁ ।

ମଦନ ମ୍ଳାନ ଭାବରେ ହସି କହିଲେ, ଜାଣେ ନା; କିନ୍ତୁ ସେ ଦୁଇ ଭାଇ ପୁଣି ରାମ ଲକ୍ଷ୍ମଣ ପରି ଯୋଡ଼ି ଯାଇ ମୋ ନାମରେ ଅଭିଯୋଗ କଲେ ସରକାରଙ୍କ ପାଖରେ ଯେ ମୁଁ ଘୁଷ୍ ମାଗୁଥିଲି । ତା'ର ପରିଣାମ ତ ତୁମେମାନେ ଜାଣ । ଦୁର୍ନୀତି ନିବାରଣ ବିଭାଗର ମକଦ୍ଦମାରୁ ଖଲାସ ପାଇ ଚାକିରି ପୁଣି ପାଇଲି ସତ; କିନ୍ତୁ ଅପମାନ, ଦୁଃଖ, କଷ୍ଟର ଶେଷ ପାଇଛି । ସୁପ୍ରିମ୍-କୋର୍ଟ ଗୋଟିଏ ମକଦ୍ଦମାର ରାୟରେ କହିଛନ୍ତି, ପ୍ରତ୍ୟେକ ମନୁଷ୍ୟର ଅପରାଧ-ମନୋବୃତ୍ତି ଅଛି ଏବଂ ମହାତ୍ମାମାନେ ମଧ୍ୟ ଏ ନିୟମରୁ ବହିର୍ଭୂତ ନୁହନ୍ତି ସତ, ତଥାପି ପ୍ରତ୍ୟେକ ମନୁଷ୍ୟ ଦାବି କରିପାରେ ଯେ ସମାଜ

Digitized by srujanika@gmail.com

ଓ ଶାସନ ତାଙ୍କୁ ସାଧୁ ଭାବରେ ରହିବାର ସୁଯୋଗ ଓ ପ୍ରେରଣା ଦେବ ଏବଂ ପାପ ପଥରେ ଯିବାପାଇଁ ବାଧକର ପରିସ୍ଥିତି ସୃଷ୍ଟି କରିବ ନାହିଁ...

ବିଲୋଚନ କହିଲେ, କିନ୍ତୁ ସେ ବ୍ୟବସାୟୀ ଜଣକ ଯାହା କହିଲେ ଯେ ସାଧୁ ଉପାୟରେ ଟଙ୍କା ରୋଜଗାର କରିବାଟା ଅଲଣା ଲାଗେ ତାହା ଏକ ଆଶ୍ଚର୍ଯ୍ୟ ତଥ୍ୟ । ଆମେ ଶାନ୍ତି ଚାହୁଁ ନା, ଯୁଦ୍ଧ ଚାହୁଁ, ଧ୍ୱଂସ ଚାହୁଁ, ଚାହୁଁ ସର୍ବଦା ଉତ୍ତେଜନାର ତୀବ୍ର କଟୁ ଆନନ୍ଦ । କାରଣ ସୁର ନମ୍ର ଶାନ୍ତ ଆନନ୍ଦ ଅଲଣା ଲାଗେ । ତାହାହିଁ ଯଦି ମନୁଷ୍ୟ ଚାହେଁ ତେବେ ବୃଥା ବଡ଼ ବଡ଼ କଥା କହି କି ଲାଭ ?

ମଦନ କହିଲେ, ଆରେ, ସଭାରେ ସେମିତି ବଡ଼ ବଡ଼ କଥା କହିବା ମଧ୍ୟ ଗୋଟାଏ ଉତ୍ତେଜନା ଆଣେ । ବକ୍ତୃତା ଦେବା ପରେ ବକ୍ତା ନିଭୃତରେ ନିଜକୁ ପ୍ରଶଂସା କରିବାର ଶୁଣିଛୁ, କେମିତି କହିଲି !! ପ୍ରେମ ପର୍ଯ୍ୟନ୍ତ ଆଦର୍ଶ ସ୍ୱାର୍ଥସିଦ୍ଧିର ସହାୟକ ସେ ପର୍ଯ୍ୟନ୍ତ ଆଦର୍ଶ ପ୍ରଚାର ଚାଲେ, ସ୍ୱାର୍ଥରେ ଟିକିଏ ବାଧା ଆସିବା ମାତ୍ରକେ ଆମେ ଆଦର୍ଶକୁ ହାବାରେ ଉଡ଼ାଇ ଦେଉ, ଆଦର୍ଶ ଯା ଚାଲିଯା, ଲମ୍ବା ଟାଣି ଓଟାର ଆଦର୍ଶର ଅର୍ଥ ନିଜର ସ୍ୱାର୍ଥସିଦ୍ଧିକୁ ସୁହାଇଲା ଭଳି କରୁ, ଜୀବନ-ସଂଗ୍ରାମ, ଗୀତାରେ ଭଗବାନ୍ କହିଛନ୍ତି ଯୁଦ୍ଧ କରିବାକୁ, ମଣିଷ ମାରିବାକୁ, ପେଟ ପୋଷ ନାହିଁ ଦୋଷ, ଇତ୍ୟାଦି ଇତ୍ୟାଦି । ତା ଛଡ଼ା, ଅନ୍ୟକୁ ଶାନ୍ତ-ବାଣୀ, ଆଦର୍ଶ କହି ଭୁଲାଇ ଅଚର୍ଚ୍ଚିତ ରଖି ନିଜ ସ୍ୱାର୍ଥ ସାଧନ କରିବା ସୁବିଧାଜନକ ନୁହେଁକି ? ମୁଁ ତ ଜାଣେ ଯିଏ ସିଧାସଳଖ କହୁଛି ଯୁଦ୍ଧ କରିବି, ମାରି ଖାଇବି ସିଏ ଢେର ଭଲଲୋକ ।

ମୁଁ ସେ ଆଲୋଚନା ବନ୍ଦ କରି ଦେବା ପାଇଁ କହିଲି, ଏଥର ବାବା ଓଡ଼ିଆନନ୍ଦ ! ତୁମ ଜୀବନରୁ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା କୁହ...

Digitized by srujanika@gmail.com

ସମସ୍ତେ ସୋତ୍ସାହ ସମର୍ଥନ ଜଣାଇଲେ, ହଁ, ହଁ ।

(ଚ)

ବାବା ଉଦବ୍ରନନ୍ଦ ଆରମ୍ଭ କଲେ...

ମୋର ଗୁରୁଦେବ ଏକ ଆଶ୍ଚର୍ଯ୍ୟ ଲୋକ । ହିମାଳୟରେ ସେ ଦୀର୍ଘ ପାଞ୍ଚବର୍ଷ ତପସ୍ୟା କରିଛନ୍ତି ନିରାହାର ଓ ନିରମ୍ବୁ ରହି । ତୁମେ ସବୁ ବିଶ୍ୱାସ କର ବା ନ କର, ସେ ପଦ୍ମାସନରେ ବସି ଧ୍ୟାନ କରୁଥିବାବେଳେ ଭୂମି ତ୍ୟାଗ କରି ଶୂନ୍ୟରେ ଅବସ୍ଥାନ କରନ୍ତି । ଅନେକ ବଡ଼ ବଡ଼ ଲୋକ ତାଙ୍କର ଶିଷ୍ୟ । ଆମେରିକାର ପ୍ରେସିଡେଣ୍ଟ, ବିଲାତ ଓ ରୁଷିଆର ପ୍ରଧାନ ମନ୍ତ୍ରୀମାନେ ମଧ୍ୟ ତାଙ୍କର ଶିଷ୍ୟ । ଗୁରୁଦେବ ତାଙ୍କ ଆଶ୍ରମରେ ରହି ମଧ୍ୟ ସେମାନଙ୍କ ସହିତ କଥାବାର୍ତ୍ତା କରନ୍ତି; ଉପଦେଶ ଦିଅନ୍ତି ।

ବିଲୋଚନ ଧମକ ଦେଇ କହିଲେ, ହ୍ୟାପ୍, ବାହାରିଲ ଉଦବ୍ରମି ।

ଉଦବ୍ର କହିଲେ, ନା, ସେ ବିଷୟରେ ମୋର ଅବଶ୍ୟ ପ୍ରତ୍ୟକ୍ଷ ଜ୍ଞାନ ନାହିଁ । ଅନ୍ୟ ଶିଷ୍ୟମାନେ ଏ କଥା ଦେଖିଛନ୍ତି ବୋଲି କହୁଥିବାର ମୁଁ ଶୁଣିଛି । ଅବଶ୍ୟ ସ୍ୱୀକାର କରୁଛି ଯେ କେତେକ ଲୋକ କେବଳ ସମାଜରେ ନିଜର ପ୍ରାଧାନ୍ୟ ବିସ୍ତାର କରିବା ଲାଳସାରେ କୌଣସି ମତକୁ ସ୍ୱୟଂ ଭଗବାନଙ୍କ ବାଣୀ ବା କୌଣସି ଲୋକଙ୍କୁ ସ୍ୱୟଂ ଭଗବାନ ବୋଲି ପ୍ରଚାର ଆରମ୍ଭ କରି ଦିଅନ୍ତି ଓ ସେ ଉଦ୍ଦେଶ୍ୟରେ ସେ ଲୋକ ବିଷୟରେ ନାନା ଅଲୌକିକ ଘଟଣା ମଧ୍ୟ ପ୍ରଚାର କରନ୍ତି । ଅତଏବ ସେ ବିଷୟରେ ମୁଁ କିଛି କହି ପାରିବି ନାହିଁ ।

ମଦନ ପଚାରିଲେ, "ତେବେ କେଉଁ ଗୁରୁଦେବଙ୍କ ଶିଷ୍ୟମାନେ କଅଣ କହୁଛନ୍ତି ଯେ ଗୁରୁଦେବ ଆମେରିକା, ବିଲାତ, ରୁଷିଆର

Digitized by srujanika@gmail.com

ନେତାମାନଙ୍କୁ ପରସ୍ପର ସହିତ ଯୁଦ୍ଧ କରିବାକୁ ଉପଦେଶ ଦେଉଛନ୍ତି ?”

ଉଦୟ କହିଲେ, ସେ କଥା ଜାଣେ ନା; ତେବେ ଗୀତାରେ ଭଗବାନ କହିଛନ୍ତି, “ଅମୃତଞ୍ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜ୍ଜୁନ !” ଭଗବାନ, ଅର୍ଥାତ୍ ସେଇ ପରମଶକ୍ତି, ଅମୃତ ଓ ମୃତ୍ୟୁ, ସତ୍ ଓ ଅସତ୍, ଯଶ ଓ ନିନ୍ଦା, ପାପ ଓ ପୁଣ୍ୟ । ଦାର୍ଶନିକ ରାଧାକୃଷ୍ଣନ୍ କହିଲେ, ଏବଂ ଦାର୍ଶନିକ ବ୍ରାଡ୍‌ଲି ସାହେବ ମଧ୍ୟ ସମର୍ଥନ କଲେ, ସର୍ବବ୍ୟାପୀ ଭଗବାନ ସତ୍ୟ ନୁହନ୍ତି, ବାସ୍ତବ, ଉତ୍ତମ ନୁହନ୍ତି, ପରମ (The supreme is real, not true, perfect not good) । ଖ୍ରୀଷ୍ଟ ଓ ଇସ୍‌ଲାମ ଧର୍ମ ମତରେ ଦୁଇଜଣ ସୃଷ୍ଟି-କର୍ତ୍ତା ଅଛନ୍ତି, ସତ୍‌ର ସୃଷ୍ଟିକର୍ତ୍ତା ଭଗବାନ ଓ ଅସତ୍‌ର ସଇତାନ; କିନ୍ତୁ ହିନ୍ଦୁ ଧର୍ମ ମତରେ ଯେଉଁ ସର୍ବବ୍ୟାପୀ ଶକ୍ତି ଅଣୋରଣୀୟାନ୍ ମହତୋ ମହୀୟାନ୍; ସେ ପ୍ରତ୍ୟେକ ଭାବ, ପ୍ରାଣୀ ଓ ବସ୍ତୁରେ ଅଛନ୍ତି, ଧ୍ୱଂସରେ ମଧ୍ୟ ଅଛନ୍ତି, ସୃଷ୍ଟିରେ ମଧ୍ୟ । ଆମକୁ ସେ ସବୁ ପରସ୍ପର ବିରୋଧୀ ଭଳି ମନେ ହେଉଥିଲେ ହେଁ ବସ୍ତୁତଃ ସେ ସବୁ ପରସ୍ପର ସହଯୋଗୀ । ବିକାଶ-ମୂଳରେ ଅଛି ବିରୋଧ ଏବଂ ସେ ବିରୋଧର ନିୟମ ସେ ସୃଷ୍ଟି କରିଛନ୍ତି । ଠିକ୍ ଯେମିତି ଯେଉଁ ସମ୍ବିଧାନର ଶକ୍ତିରେ ଗଣତନ୍ତ୍ର ଶାସନ ଚାଲିଛି ସେଇ ସମ୍ବିଧାନ ହିଁ ଦୁଇଟି ପରସ୍ପର ବିରୋଧୀଦଳ ସୃଷ୍ଟି କରିଛି । ଯେଉଁ ମନୁଷ୍ୟ ତାହାର ପାଶବିକ ପ୍ରବୃତ୍ତିର ବିରୁଦ୍ଧଭାବ ସୃଷ୍ଟି କରି ପାରିଛି ନିଜ ମଧ୍ୟରେ ସେ ମନୁଷ୍ୟ ବିକାଶ ପଥରେ ଆଗେଇ ଚାଲିଛି । ଯୁଧ୍ୟତ, ଯୁଧ୍ୟସ୍ୱ ବିଗତଜ୍ୱରଃ ।

ବଡ଼ ମୁସ୍କିଲିଆ କଥା, ଆମେ ସମସ୍ତେ ଏକା ସାଙ୍ଗରେ କହି ଉଠିଲୁ ।

Digitized by srujanika@gmail.com

ଉଦ୍ଧବ କହିଲେ, ହଁ, ତେବେ ଗୀତାର ପ୍ରତ୍ୟେକ ଅଧ୍ୟାୟ ଯେପରି ଗୋଟିକ ପରେ ଗୋଟିଏ ଆସିଛି ମନୁଷ୍ୟର ବିକାଶ ମଧ୍ୟ ଠିକ୍ ସେମିତି ହୁଏ । ଗୀତାର ଆରମ୍ଭ ବିଷାଦ ଯୋଗ ଅଧ୍ୟାୟରୁ । ମନୁଷ୍ୟର ମଧ୍ୟ ବିକାଶର ପ୍ରଥମ ସୋପାନ ହେଉଛି ବ୍ୟର୍ଥତାର ବିଷାଦ, ଯେ କୌଣସି କାରଣ ହେଉନା କାହିଁକି । ବିଷାଦରୁ ଜାତ ହୁଏ କର୍ମହୀନତା, ସେଇଠୁ ସେ ଆରମ୍ଭ କରେ । ସ୍ୱାବ୍ଷ୍ଟାଷ୍ଟ ଅର୍ଥାତ୍ ଅଜଲ୍ପୀୟଙ୍କୁ କଳ୍ପନା କରିବାକୁ ଅର୍ଥାତ୍ ସାଂଖ୍ୟ ଯୋଗ ତା'ପରେ କର୍ମ, କର୍ମପାଇଁ ଦରକାର ଜ୍ଞାନ ଅର୍ଥାତ୍ ଆହୃତ ଜ୍ଞାନ (objective knowledge), ତା'ପରେ ଜ୍ଞାନରୁ ଆସେ କର୍ମର ନ୍ୟାସ, ମାନେ ଅର୍ପଣ, ମାନେ ନିଜର ପ୍ରତିଷ୍ଠା ପାଇଁ କର୍ମ ନୁହେଁ, ଭଗବାନଙ୍କ ପ୍ରତିଷ୍ଠା, ସତ୍ୟର ପ୍ରତିଷ୍ଠା ପାଇଁ କର୍ମ । ତା'ପରେ ବିଜ୍ଞାନ ଅର୍ଥାତ୍ ଅନୁଭୂତ ଜ୍ଞାନ, ଏମିତି ଧାପେ ଧାପେ ଉଠି ଉଠି ଗଲାପରେ ଶେଷରେ ଯେଉଁ ଜ୍ଞାନ ଜନ୍ମେ ତାହା କୌଣସି ଇନ୍ଦ୍ରିୟଜ ଜ୍ଞାନ ନୁହଁ, ଇନ୍ଦ୍ରିୟାତୀତ ଜ୍ଞାନ । ସେତେବେଳେ ଭଗବାନ କହନ୍ତି "ଯଥେଚ୍ଛସି ତଥା କୁରୁ", ଯାହା ଇଚ୍ଛା ତାହା କର; କିନ୍ତୁ ଯା'ର ବିଷାଦ ଆସି ନାହିଁ, ସର୍ବଦା ଇନ୍ଦ୍ରିୟ ସୁଖରେ ମଗ୍ନ, ତା'ର ପ୍ରଥମ ସୋପାନ ହିଁ ଚଢା ହୋଇ ନାହିଁ ।

ମଦନ କହିଲେ, ଏତେ ସବୁ ବୁଝି ଆମର ଲାଭ ନାହିଁ, ଆମର ଭକ୍ତିଯୋଗ ଭଲ ।

ଉଦ୍ଧବ କହିଲେ, ଭକ୍ତିଯୋଗ ଉପରକୁ ଆହୁରି ଅନେକ ଯୋଗ ଅଛି । ଭକ୍ତ ମାନେ ଦ୍ୱୈତବାଦ । ମୁଁ ଓ ଭଗବାନ ଭିନ୍ନ, ମୁଁ ଭଗବାନଙ୍କୁ ଭକ୍ତି କରେ । ସ୍ତ୍ରୀ ସ୍ୱାମୀକୁ ଭଲପାଏ ବା ସ୍ୱାମୀ ସ୍ତ୍ରୀକୁ ଭଲପାଏ ବୋଲି ସନ୍ତୋଷ ଲାଭ କରେ ସତ; କିନ୍ତୁ ସେ ଅବସ୍ଥାରେ ଦୁହିଁଙ୍କର ଅସ୍ତିତ୍ୱ ଭିନ୍ନ ଭିନ୍ନ ଥାଏ । ଯେତେବେଳେ ପ୍ରେମ ପ୍ରଗାଢ

Digitized by srujanika@gmail.com

ହୋଇ ଜ୍ଞାନ ଜନ୍ମେ ସେତେବେଳେ ଦୁହେଁ ଦୁହିଁଙ୍କୁ ଭିନ୍ନ ମନେ କରନ୍ତି ନାହିଁ ।

ଆମେ ହସି କହିଲୁ । ଭୁ ତ ହ୍ୟାପ୍ ବାହା ହୋଇନୁ, କହୁଚୁ ଝାଡ଼ୁଚୁ କଅଣ ସ୍ୱାମୀ-ସ୍ତ୍ରୀ ପ୍ରେମ ବିଷୟରେ ।

ଉଦ୍ଧବ କହିଲେ, ଛାଡ଼ ସେ କଥା । ଥରେ ଗୁରୁଦେବ ଏଇ ସହରକୁ ଆସି ଥାଆନ୍ତି । ଥାଆନ୍ତି ଜଣେ ଧନୀ ଶିଷ୍ୟ ଘରେ । ସଦାବେଳେ ଧର୍ମଚର୍ଚ୍ଚା ଚାଲିଥାଏ । ହରିନାମ କୀର୍ତ୍ତନ ଚାଲିଥାଏ । ଗୁରୁଦେବଙ୍କ କୃପା ପାଇବା ପାଇଁ କେତେ ଆର୍ତ୍ତ, ଅର୍ଥାର୍ଥୀ, ଜିଜ୍ଞାସୁ, ଜ୍ଞାନୀ ଆସୁଥାଆନ୍ତି । ଗୋଟାଏ ମେଳା ବସିଥାଏ । ଗୁରୁଦେବଙ୍କ ପୂଜା ଚାଲିଥାଏ, ଉତ୍ସବ ଲାଗିଥାଏ ।

ମଦନ ପଚାରିଲେ, ଆଚ୍ଛା, ତୋ ଗୁରୁଦେବ କଅଣ ତାଙ୍କର ନିଜର ପୂଜାକୁ ଅନୁମୋଦନ କରୁଥାଆନ୍ତି ?

ଉଦ୍ଧବ କହିଲେ ମୁଁ ସେ କଥା କହି ପାରିବି ନାହିଁ । ତେବେ ଥରେ ତାଙ୍କର ସକାଳ ଧୂପର ପୂଜାବେଳେ ମୋତେ ସେ ଚାହିଁ ହସିଲେ । ତାଙ୍କର ହସର ଅର୍ଥ ସେ ଜାଣନ୍ତି, ମୁଁ ଯାହା ବୁଝିଲି ତା ହେଉଛି ଯେ ସେ ଏସବୁ ଅନୁମୋଦନ କରୁ ନାହାନ୍ତି । ପୂଜା ପରେ ସେ ମଧ୍ୟ ଶିଷ୍ୟମାନଙ୍କୁ କହିଲେ; ଏପରି ପୂଜା, ପୂଜକ ଓ ପୂଜ୍ୟକୁ ତଳକୁ ଖସାଇ ଆଣେ, ଯଦି ପ୍ରତ୍ୟେକ ଭଗବାନଙ୍କ ମହିମା ଅନୁଭବ ନ କଲେ ତେବେ ମନୁଷ୍ୟକୁ ପୂଜି କରି ଲାଭ ନାହିଁ, ବରଞ୍ଚ ନିଜର ଅହଂ ନୂଆ ମାଧ୍ୟମରେ ପ୍ରକାଶ ପାଇବା ସାର ହେବ ।

ସେ ଯାହା ହେଉ, ଉଦ୍ଧବ କହିଲେ, ଦିନେ ସନ୍ଧ୍ୟା ସମୟରେ ଆମେ ସମସ୍ତେ ସଭୟେ ଓ ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ଗୁରୁଦେବ ନାହାନ୍ତି । ସମସ୍ତେ ଆଶ୍ଚର୍ଯ୍ୟ, ସମସ୍ତଙ୍କ ଆଖି ସାମନାରୁ ସେ କେମିତି ଲୁଚିଭେଇ ଗଲେ । ସମସ୍ତେ ବ୍ୟଗ୍ର ଉତ୍କଣ୍ଠିତ । ଗୁରୁଦେବଙ୍କ ପଟ୍ଟଶିଷ୍ୟ

ଧ୍ୟାନସ୍ଥ ହୋଇ କହିଲେ, ଗୁରୁଦେବ ସଶରୀରରେ ତୃପ୍ତିଆ ଯାଇଛନ୍ତି । ଆମେ ସମସ୍ତେ ଏହା ଶୁଣି ସ୍ତମ୍ଭୀଭୂତ ! କୀର୍ତ୍ତନ ଉନ୍ମତ୍ତ ଭାବରେ ଚାଲିଲା, 'ଜୟ ଗୁରୁଜୀ, ହରି ବୋଲ' ଶବ୍ଦରେ ଚାରିଦିଗ ପ୍ରକମ୍ପିତ ହେବାକୁ ଲାଗିଲା । ଗୋଟାଏ ଥାଳିରେ ଟଙ୍କା ପଇସା ଗଦା ହେବାକୁ ଲାଗିଲା । କେହି କେହି ଶିଷ୍ୟ ଗୁରୁଦେବଙ୍କ ଆସନରେ ଗଡ଼ିବାକୁ ଲାଗିଲେ । ତାହା ଦେଖି ଯେତେ ଥିଲେ ସମସ୍ତେ କାନ୍ଦି କାନ୍ଦି ଗଡ଼ିବାକୁ ଲାଗିଲେ । ମୋତେ ମଧ୍ୟ ସେ ଉନ୍ମାଦନା ଆକ୍ରମଣ କଲା, ମୁଁ ମଧ୍ୟ ଗଡ଼ିବାକୁ ଲାଗିଲି । ଗଡ଼ିବାକୁ ଆରମ୍ଭ କରିବାରୁ ମୋତେ ପ୍ରକୃତି ଡାକିଲେ······

ଆମେ ଆଶ୍ଚର୍ଯ୍ୟ ହୋଇ କହିଲୁ, ବାଃ, ଧନ୍ୟ ତୁ ଭାଇ ।

ଉଦୟ ହସି କହିଲେ, ଆଉର ନା, ନା, କଲ୍ ଅଫ୍ ନେଚର୍ । କହୁ ଦିନ ହେବ ଖାଲି ଘିଅ ପଲଉ ଆଉ ଖିଆ ଚାଲିଥାଏ ନା, ଗଡ଼ିବାରୁ ପ୍ରକୃତି ଅସମ୍ଭାଳ ହେଲେ ।

ଆମକୁ କିଏ ଯେମିତି ଗୋଟାଏ ଉଚ୍ଚ ଜାଗାରୁ ତଳକୁ ଠେଲି ଦେଲା । ମଦନ ରାଗିଯାଇ କହିଲେ, ବଦ୍‌ମାସ୍, ଚୋର କହୁ ହେଉ ନାହିଁ ।

ଉଦୟ ଗାଲକୁ ଏଡ଼ି ଦେଇ କହିଲେ, ମୁଁ ଦୌଡ଼ିଲି ମୋ ଘରଆଡ଼େ । ମୋ ବସାଘର ଏକ ଅନ୍ଧାରୁଆ ଗଳିରେ । ଘର ପାଖକୁ ଯାଇ ଦେଖିଲି ଗୁରୁଦେବ ମୋ ଓଳତାରେ ଛିଡ଼ା ହୋଇଛନ୍ତି !! ଗୋଟିଏ କାଗଜ ଠୁଙ୍ଗାରୁ ସେ କଅଣ ଖାଇଥାଆନ୍ତି ! ମୁଁ ଭୟ ଓ ଆଶ୍ଚର୍ଯ୍ୟରେ ହତବାକ୍ ହୋଇ ଛିଡ଼ା ହୋଇ ରହିଲି ଟିକିଏ ଦୂରରେ ଗୁରୁଦେବ ଖାଉଥାଆନ୍ତି ଓ କାନ୍ଦୁ ଥାଆନ୍ତି ।

ଖାଇ ସାରି ଠୁଙ୍ଗାଟି ଫୋପାଡ଼ି ଦେଇ ହାତ ପୋଛି ଉପରକୁ ଚାହିଁ ନମସ୍କାର କରି ଗୁରୁଦେବ ପ୍ରାର୍ଥନା କଲେ ହେ ପ୍ରକୃତି ! ତୃପ୍ତ ହୁଅ, ମୋତେ ମୁକ୍ତ ଦିଅ, ମୁଁ ପରମ ଆସ୍ୱାଦ ଲାଭ କରେ ।

Digitized by srujanika@gmail.com

ସେ ଗୃହଗଲେ ତା'ପରେ ସେ ବନ୍ଧୁ ଆଜ  ପର୍ଯ୍ୟନ୍ତ ଦୁଇବର୍ଷ ହୋଇଗଲା ଗୁରୁଦେବଙ୍କ ସନ୍ଧାନ ମିଳି ନାହିଁ । ତେବେ ଶିଷ୍ୟମାନେ ତାଙ୍କ ପୂଜା କରୁଛନ୍ତି ଓ ସେ ସ୍ୱୟଂ ଭଗବାନ ବୋଲି ଖୁବ୍ ପ୍ରଚାର ଚଳାଇଛନ୍ତି । ମୁଁ ଥରେ ପ୍ରକୃତ କଥା କହିବାକୁ ଯାଇ ମାଡ଼ ଖାଇ ମରିବି ଅଛି; କିନ୍ତୁ ଗୁରୁଦେବଙ୍କ ପ୍ରତି ମୋର ଭକ୍ତି ଯାଇ ନାହିଁ, ବରଞ୍ଚ ବଢ଼ିଛି । ସତ୍ୟ ଯେ କଅଣ ତା' ବୋଧ ହୁଏ ଟିକିଏ ଟିକିଏ ମୋତେ ଦୁଶିଲଣି, କିମ୍ବା ତା' ମଧ୍ୟ ମୋର ଭ୍ରମ ହୋଇ ପାରେ ! କିଏ ଜାଣେ ?

(ଛ)

ଆମେ ପଚାରିଲୁ, 'ସତ୍ୟଟି କଅଣ' !

ଉଦ୍ଧବ କହିଲେ, 'କିଏ ଜାଣେ' !

'ତେବେ ଯେ କହିଲ, ତୁମକୁ ସତ୍ୟର ଆଲୋକର ଆଭାସ ଦୁଶିଲଣି ? ଆମେ ପଚାରିଲୁ ।

ଉଦ୍ଧବ ଦୀର୍ଘ ନିଶ୍ୱାସ ପକାଇ କହିଲେ, ସେ ଯେ ବିଶ୍ୱଟ ତାକୁ ଜାଣି ହେବ ନାହିଁ, ଏହା ହିଁ ସତ୍ୟ ବୋଲି ମୋତେ ଲାଗି ଆସୁଛି । ତେବେ ଏତିକି ବୁଝିଛି ଯେ ଜୀବନର ଏକମାତ୍ର ଲକ୍ଷ୍ୟ ସେଇ ବିରାଟ ସହିତ ନିଜକୁ ସଂଯୋଗ କରିବା, ରାଜନୈତିକ, ଆର୍ଥିକ ବା ଶିଳ୍ପ ଉନ୍ନତି ନୁହଁ, ସେ ସବୁ ଯଦି ଚରମ ଲକ୍ଷ୍ୟର ଅନ୍ତରାୟ ସୃଷ୍ଟି କରେ ତେବେ ବିକୃତି ଓ ଧ୍ୱଂସ ଅନିବାର୍ଯ୍ୟ ।

ମଦନ ପଚାରିଲେ, ମନ ତ ସିଏତକେ ଯାଉନାହିଁ । ନିଜର ପ୍ରାଧାନ୍ୟ ଲାଭ ପାଇଁ ନାନା ପ୍ରକାର ଦିବାସ୍ୱପ୍ନ ଦେଖୁଛି, ଉପାୟ କଅଣ ?

ଉଦ୍ଧବ ଉତ୍ତର ଦେଲେ ସୁଲଳିତ କଣ୍ଠରେ ଗୀତଟିଏ ଗାଇ—

"ସେ କି ସହଜେ ମିଳିବା ଧନରେ,
ତାକୁ ଅଲପେ ପାଇବୁ ଧନ……"

Digitized by srujanika@gmail.com

ଆମେ ନୀରବ ରହିଲୁ କିଛି କ୍ଷଣ । ବିବେଚନ ବୋଧହୁଏ ଉତ୍ତରଟା ଖାଲଭଳିରେ ମୋତେ ଗୃହିଁ ଷୀଣ କଣ୍ଠରେ କହିଲେ, ଏଥର ତୋର ପାଳି । ଅନ୍ୟମାନେ ନୀରବ ରହିଲେ । ଏ ନୀରବତା ଅନୁମୋଦିତ ହୋଇ ପାରେ, ନ ହୋଇ ବି ପାରେ । ମୋ ମନରେ ଟିକିଏ କଷ୍ଟ ହେଲା ସତେ; କିନ୍ତୁ ଏ କଥା ମୁଁ ସ୍ୱୀକାର କରିବାକୁ ଆଜି କୁଣ୍ଠା ବୋଧ କରୁ ନାହିଁ ଯେ ମୁଁ ଯେକୌଣସି କଥା କହିବାକୁ ଯାଏ ସବୁଥିରେ ମୋର ନିଜର ବାହାଦୁରୀ ଦେଖାଇବାଟା ପ୍ରକାଶ ପାଏ । ଅନେକ ସମୟରେ ନିଜର ବାହାଦୁରୀ ବିଷୟରେ ମିଛ ବି କୁହେ । ଅନ୍ୟମାନେ ତେଣୁ ମୋ କଥା ଶୁଣିବାକୁ ଇଚ୍ଛା ନ କରିବା ସ୍ୱାଭାବିକ ।

ମୁଁ ଆରମ୍ଭ କରିବା ପୂର୍ବରୁ ବିବେଚନ ଚେତାବନୀ ଶୁଣାଇ ଦେଲେ ଗୀତାରୁ ଶ୍ଳୋକ ଉଦ୍ଧାର କରି, "ଯେଉଁମାନେ ଆତ୍ମ-ସମ୍ଭାବିତ, ଅର୍ଥାତ୍ ନିଜର ବାହାଦୁରୀ ଦେଖାନ୍ତି, ମୋ ସମାନ ଆଉ କେହି ଜ୍ଞାନୀ, ଦାନୀ, ଧନୀ ନାହିଁ ମନେ କରନ୍ତି, ଭଗବାନ ସେହି ସବୁ ଦ୍ୱେଷକାରୀ କ୍ରୂର, ନରାଧମ ଅମଙ୍ଗଳକାରୀମାନଙ୍କୁ ଚିରଦିନ ପାଇଁ ଅସୁର କରି ରଖନ୍ତି ।"

(ଜ)

ମୁଁ ଭଗବାନଙ୍କ ସେପରି କାର୍ଯ୍ୟକୁ ମନେ ମନେ ଆନ୍ତରିକ ଅନୁମୋଦନ ଜଣାଇ ଆରମ୍ଭ କଲି···

ସେଦିନ ମୋ ବିଷୟରେ ଯେଉଁ ସବୁ କଥା ମୋର କର୍ଣ୍ଣ-ଗୋଚର ହୋଇଥିଲା ସେ ବିଷୟରେ ମୋ ମନରେ ସ୍ୱାଭାବିକ ପ୍ରଶ୍ନ ଜାତ ହେଲା, "ମୁଁ କିଏ ?" ତୁମେମାନେ ଯଦି ଏହାର ଉତ୍ତର ଦେଇ ପାରିବ ତ ଦିଅ ।

Digitized by srujanika@gmail.com

ମୁଁ ଯାଉଥିଲି କଚେରିକୁ । ତୁମେମାନେ ତ ଜାଣ ମୋର ମନରେ ଥିବା ସତ୍ତ୍ୱେ ମୁଁ ଚାଲି ଚାଲି ଯାଏ । କାହିଁକି ଯାଏ ? ମୁଁ ତା'ର ଠିକ୍ ଉତ୍ତର ଦେବାର ସାହସ ଏପର୍ଯ୍ୟନ୍ତ ପାଇ ନାହିଁ, ଅତଏବ ଦେଉ ନାହିଁ; କିନ୍ତୁ ତୁମେମାନେ ଜାଣ ବା ମୋ କଥା ସରିଲା ପରେ ବୁଝି ପାରିବ ।

ଚେହେରାଟି ତ ମୋର ସୁନ୍ଦର । ତାକୁ ଆହୁରି ସୁନ୍ଦର କରିବା ଲାଗିଥାରେ ମୋର ପୋଷାକପରିଚ୍ଛଦ ମଧ୍ୟ ଦାମିକା ଓ ସୁନ୍ଦର । ଯେବେ ମୁଁ ଚାଲି ଚାଲି ସେମିତି ଯାଉଛି ବଜାର ଭିତର ଦେଇ, ଆଉ ସବୁବେଳେ ନଜର ଅଛି କିଏ ମୋତେ ଦେଖୁଛି କି ନା, ମୋ ବିଷୟରେ କିଛି କହୁଛି କି ନା !

ମୋଚିପଡ଼ା ଦେଇ ଗଲାବେଳେ ସବୁ ମୋଚିଙ୍କ ନଜର ପଡ଼ିଲା ମୋ ଯୋତା ଉପରେ ଦାମିକା ଯୋତା । ସେଥିଯୋଗୁଁ ମୋର ମୋଚି ତାକୁ ଭଙ୍ଗ ଦେଇ ଚକ୍ ଚକ୍ କରିଥାଏ । ମୋ ମୋଚି ଅନ୍ୟମାନଙ୍କୁ କହିଲା, ଏଃ, ଏ ଯୋତା ମୁଁ ଆଜି ରଙ୍ଗ କରିବାର । ବଢ଼ିଆ ମାନୁଛି ବାବୁଙ୍କୁ । ଭାବିଲି, ତେବେ ମୋର ଗୋଡ଼ର ସୌନ୍ଦର୍ଯ୍ୟ ମୋ ବାହାଦୁରୀ ନୁହେଁ, ମୋଚିର ।

ଦରଜିପଡ଼ା ଦେଇ ଗଲାବେଳକୁ ମୋ ଦରଜି କହିଲା, ଏ ପେଣ୍ଟ କୋଟ ହାଟେ ବନେଇଚ । ଏକ ଲମ୍ବର ମାନୁଛି ବାବୁଙ୍କୁ ।

ମୋ ଭଣ୍ଡାରି ଅନ୍ୟର ବାଳ କାଟୁ କାଟୁ କାମ ବନ୍ଦ କରି ମୋତେ ଚାହିଁ ଓ ତା'ର ଗରାଖକୁ ଦେଖେଇ କହିଲା, ମୁଁ ଆଜି ସାହେବଙ୍କ ବାଳ କାଟି ଦେଇଛି । ଦେଖନ୍ତୁ କେମିତି ଫାଷ୍ଟ କ୍ଲାସ କାମ ହୋଇଛି ।

କଚେରି ଭିତରକୁ ଯାଉଁ ଯାଉଁ ବାହାରୁ ଶୁଣିଲି କିରାଣୀମାନଙ୍କ କଥାବାର୍ତ୍ତା । ଜଣେ କହୁଛନ୍ତି, ଆରେ ଆମ ସବୁ ଝଟି-ଖାଟି

Digitized by srujanika@gmail.com

ଯୋଗାଡ଼ କରି ଦଉଁ ବୋଲି ତ ହାକିମଙ୍କ କାମ ଭଲ ହୁଏ । ଓସେ କଥା ବି ମିଛ ନୁହେଁ ।

ଘରକୁ ଫେରି ଦେଖିଲି ମୋର ବାଲ୍ୟଗୁରୁ ବସିଛନ୍ତି । ସେ ବାପାଙ୍କୁ କହୁଛନ୍ତି, ଆଜ୍ଞା, ପିଲାବେଳେ ମୋର ହାତରେ ଛଆର ଆପଣଙ୍କ ପୁଅ ! ସେ କାହିଁକି ନାମ ନ କରିବ !

ରାତିରେ ବାପା ବୋଉ କଥାବାର୍ତ୍ତା ହେଉଥିବାର ଶୁଣିଲି ବାପା କହୁଛନ୍ତି, କେଉଁ ବାପର ପୁଅ ସେ ଦେଖିବାକୁ ହବ ! ସେ ଯେ ଉନ୍ନତି କରିବ ସେଥିରେ ଆଉ ଆଶ୍ଚର୍ଯ୍ୟ କଅଣ ଅଛି ! କମ୍ କଷ୍ଟରେ ତ ତାକୁ ମୁଁ ମଣିଷ କରି ନାହିଁ ! ବୋଉ କହିଲେ, ସେ କଥା ଠିକ୍, ହେଲେ, ଆମ ବଂଶର ଧର୍ମଭାବଟି ସେ ପାଇଛି ! ପିଲାବେଳୁଁ ମୁଁ ତାକୁ ଯେତେ ଧର୍ମକଥା ଶୁଣାଇଛି, ଯେତେ ପୂଜାମାନସିକ ତା ପାଇଁ କରିଛି ତା ଫଳ ଫଳୁଛି !

ମୋର ଅର୍ଦ୍ଧାଙ୍ଗିନୀ କହିଲେ, ମୁଁ ଆସିଲାରୁ ତୁମ ଭାଗ୍ୟ ଖୋଲିଲା । ମୁଁ ଯଦି ତୁମ ଘର-ଜଞ୍ଜାଳ ନ ସମ୍ଭାଳି ଥାଆନ୍ତି ତୁମେ କାମ କରିବାକୁ ସମୟ ପାଇ ଥାଆନ୍ତ ନା ଆଗେ ? ସେ କଥା ବି ଠିକ୍ ।

ଭଉଣୀମାନେ କହିଲେ, ବାପାଙ୍କର ପେନ୍‌ସନ୍ ହେଲା ପରେ ଅବସ୍ଥା ତ ବାରଣ୍ଡା ଢକଡ଼ା ହେଲା । ଯା ହଉ, ଆମେ ଅବସ୍ଥା ସମ୍ଭାଳି ନେଲୁ, ଭାଇଟିକୁ ମଣିଷ କଲୁ, ଆଜି ସେ ବଡ଼ଲୋକ ହୋଇଛି, ଭଗବାନ ତା'ର ମଙ୍ଗଳ କରନ୍ତୁ । ସେମାନଙ୍କ ଆଖିରୁ ଲୁହ ଗଡ଼ ପଡ଼ିଲା ଆନନ୍ଦରେ । ସେମାନଙ୍କର ମୋ ପାଇଁ ତ୍ୟାଗ କଥା ମଧ୍ୟ ସତ ।

ପକ୍ଷୀ, ମଶା, ମାଛି, ନଈ, ପୋଖରୀ ଯଦି କଥା କହି ପାରନ୍ତେ ସେମାନେ ବି କହନ୍ତେ ବା କଏ ଜାଣେ ଯେ କହୁଛନ୍ତି । ମୋତେ ମଣିଷ କରିବାରେ ସେମାନଙ୍କ ଦାନ ବି କମ୍ ନୁହେଁ ।

Digitized by srujanika@gmail.com

ସର୍ବୋପରି ତ ଅଛୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତାଙ୍କ ହାତ !

ତେଣୁ ମନରେ ଜାଗିଲା, ମୁଁ କିଏ ? ମୁଁ କାହିଁକି ନିଜ ବାହାଦୁରୀ ଦେଖଉଛି ?

ଉଦ୍ଧବ ପୁଣି ସୁଲଳିତ କଣ୍ଠରେ ଗୀତ ଗାଇଲା,

"କେତେ ରଙ୍ଗେ ସଜାଇଛୁ ମା ଏ ବଜାର,

ବୁଝି ତ ପାରୁନାହିଁ ମା ଏ ବାହାଦୁରୀ କାହାର ।"

ତାଙ୍କୁ ବୁଝିବାକୁ ହେଲେ ସବୁର ଭିତର ଦେଇ ବୁଝିବାକୁ ହେବ । ଧ୍ୱଂସ ଭିତର ଦେଇ ଓ ସୃଷ୍ଟି ଭିତର ଦେଇ ସାଧୁ ଭିତର ଦେଇ ଓ ମିଥ୍ୟାବାଦୀ, ମାମଲାବାଜ୍ ଭିତର ଦେଇ, ଖାଦକ ଓ ଖାଦ୍ୟ ଭିତର ଦେଇ, ଘାତକ ଓ ହତ ଭିତର ଦେଇ, ଅହମିକା ଓ ଆତ୍ମ-ସମର୍ପଣ ଭିତର ଦେଇ ।

(୪)

ଏହା ପରେ ସମସ୍ତଙ୍କ ମୁହଁରୁ ବାହାରିଲା, ଆଶ୍ଚର୍ଯ୍ୟ !!!

ଆଶ୍ଚର୍ଯ୍ୟ ସତେ, ବିବେଚନା କରିଲେ, ଆର୍ଥିକ ଉନ୍ନତି, ଶିଳ୍ପ ଉନ୍ନତି ଇତ୍ୟାଦି ନିଶା ଯେମିତି ଘାରିଲାଣି ଏହାର ପରିଣତି କଅଣ ହେବ କେ ଜାଣେ । ମୁଁ କହୁ ନାହିଁ ଯେ ସବୁ ଦରକାର ନାହିଁ; କିନ୍ତୁ ସେ ସବୁ ଉନ୍ନତି ଆପେ ଆପେ ଆସିବ ଯଦି ଆଧ୍ୟାତ୍ମିକ ଉନ୍ନତି ଆସେ । ଅର୍ଥାତ୍, ସବୁ ଉନ୍ନତିମୂଳରେ ରହିବା ଦରକାର ଆଧ୍ୟାତ୍ମିକ ଉନ୍ନତି; ତା ନ ହେଲେ, ଦେଖ ନା, ସାମାନ୍ୟ ସାମାନ୍ୟ କଥାରେ ପରମାଣୁ ବୋମା, ଉଦ୍‌ଜାନ ବୋମା ନେଇ ଯୁଦ୍ଧ କରି-ବାକୁ ତିଆରି, ଅପରାଧୀ ସଂଖ୍ୟା ବଢ଼ି ଚାଲିଛି ଏତେ ଉନ୍ନତିସତ୍ତ୍ୱେ ! ଆଉ ଆମେ ? ଆମେ କହୁଛୁ ଦେଇ ପାଶ୍ଚାତ୍ୟ ସଭ୍ୟ ଦେଶ-ମାନଙ୍କରେ ଗୁଡ଼ପଦ ଆଇନ ଅଛି, ଆମର ବି କରିବା ଭୁଲ, ହେଇ ସେଠି ଅବାଧ ପ୍ରଣୟ ଅଛି, ଆମର ଭୁଲ ସେମିତି କରିବା କଥା

Digitized by srujanika@gmail.com

ଛି ଛି, ଯାଗ ଯଜ୍ଞ କଲେ ପାଶ୍ଚାତ୍ୟ ଦେଶ ହସିବେ, ସେମିତ କରନା । ଏ ସବୁ, ମୋର ମତରେ କ୍ରୀତଦାସ-ସଭ୍ୟତାର ଲକ୍ଷଣ । ମୋ ମତରେ; ବିଜ୍ଞାନ ଏକ କୁସଂସ୍କାର ହେଲାଣି, କାରଣ ଧାରଣା ହେଲାଣି ବିଜ୍ଞାନ ଯା କହୁଛି ସବୁ ସତ… ।

ମଦନ ବାଧା ଦେଇ କହିଲେ, ଛାଡ଼ ଛାଡ଼ ସେ ସବୁ ଆଲୋଚନା । ଆମେ ଗାଉଁଲିଆ, ଗାଉଁର, ଆମର ସେ ସବୁ ଆଲୋଚନା କରିବା ଉଚିତ ନୁହେଁ । ତ୍ରିଲୋଚନ ଏଥର ଧୂଆଁ, ପକୁଡ଼ି ଆଉ ଥରେ ଲଗୁ ହେଁ ହେଁ ।

ନିଶ୍ଚୟ ନିଶ୍ଚୟ, ଆମେ ଅନୁମୋଦନ କଲୁ ।



Digitized by srujanika@gmail.com

# ପୁନର୍ମୂଷିକ

(O. Henryଙ୍କ "A Retrieved Reformation"ର ଅନୁବାଦ)

ଜିମ୍ମି କଇଦଖାନାର ଜୋତା କାରଖାନାରେ ବସି ଜୋତା ସିଲାଇ କରୁଛି । ଗୋଟିଏ ଜଗୁଆଳୀ ତାକୁ କୟେଦଖାନା କଚେରିକୁ ନେଇଗଲା । ସେଇଦିନ ସକାଳେ ଲାଟସାହେବଙ୍କ ତାକୁ କ୍ଷମା ଦେବାର ଆଦେଶ ତାକୁ ଦିଆଗଲା । ଜିମ୍ମି ଅବସନ୍ନ ହୃଦୟରେ ତାହା ଗ୍ରହଣ କଲା । ଚାରିବର୍ଷର ଜେଲ୍ ମିଆଦରୁ ସେ ଓସତେ-ବେଳକୁ ଦଶ ମାସ ଭୋଗ କରି ସାରିଛି ।

"ଦେଖ ଭେଲେଣ୍ଟିନ୍" ଜେଲ୍‌ରକ୍ଷକ କହିଲେ (ଜିମ୍ମିର ପୂରାନାମ ଜିମ୍ମି ଭେଲେଣ୍ଟିନ୍) "ତୁମେ କାଲି ସକାଳେ ମୁକ୍ତିପାଇବ । ଏଥର ମୁକ୍ତିପାଇ ମଣିଷ ହେବାକୁ ଚେଷ୍ଟାକର । ତୁମେ ହୃଦୟବାନ୍ ଲୋକ । ତେଣୁ ଆଉ ଲୁହାସିନ୍ଦୁକ ନ ଭାଙ୍ଗି ସାଧୁଭାବରେ ଜୀବନ ଯାପନ କର ।"

"ମୁଁ !" ଜିମ୍ମି ଆଶ୍ଚର୍ଯ୍ୟ ହୋଇ କହିଲା "ଆଜ୍ଞା, ମୋ ଜୀବନରେ ଗୋଟିଏ ବି ଲୁହାସିନ୍ଦୁକ ଭାଙ୍ଗି ନାହିଁ ।"

Digitized by srujanika@gmail.com

"ନା, ନା" ଜେଲ୍‌ରକ୍ଷକ ହସି କହିଲେ "କଦାପି ନୁହେଁ ଆଚ୍ଛା, ତା ହେଲେ ସ୍ପ୍ରିଙ୍ଗ୍‌ଫିଲଡ଼ର ଘଟଣାରେ ତୁମେ କପରି ସଂପୃକ୍ତ ହେଲ ? ବୋଧହୁଏ ତୁମ୍ଭମାନଙ୍କ ଅଭିଜାତ ସମାଜରୁ ଅନ୍ୟ କେହି ଜଣେ ସଂପୃକ୍ତ ହୋଇ ପଡ଼ିବେ ସେଇ ଭୟରେ ତୁମେ ଘଟଣାବେଳେ ଅନ୍ୟ ସ୍ଥାନରେ ଥିଲେ ମଧ୍ୟ ତାହାର ପ୍ରମାଣ ଜାଣି ଶୁଣି ନ ଦେଇ ଦଣ୍ଡ ବରଣ କଲ ? କିମ୍ବା କବ୍ସରକମାନଙ୍କ ମଧ୍ୟରୁ ଜଣକର ତୁମ ଉପରେ ଲାଗ ଥିବାରୁ ତୁମେ ଦଣ୍ଡ ପାଇଲ ? ତୁମ୍ଭମାନଙ୍କ ଭଳି ନିର୍ଦ୍ଦୋଷମାନେ ତ ଏଇ ଦୁଇଟାରୁ ଗୋଟାଏ କାରଣ ବାଡନ୍ତି ।"

"ମୁଁ !" ଜିମି ତଥାପି ସାଧୁଜନସୁଲଭ ନିର୍ଲିପ୍ତ ଭାବରେ କହିଲା "ମୁଁ ମୋ ଜୀବନରେ ଆଜି ପର୍ଯ୍ୟନ୍ତ ସ୍ପ୍ରିଙ୍ଗ୍‌ଫିଲଡ଼ ଯାଇ ନାହିଁ ଆଜ୍ଞା !"

"ଫେନନ୍ ଏଇକୁ ନେଇ ଯାଅ" ଜେଲରକ୍ଷକ ହସି ଆଦେଶ ଦେଲେ "କଏଦିର ପୋଷାକ କାଢ଼ିଦେଇ ଭଲ ପୋଷାକ ଦିଅ । କାଲି ସକାଳେ ସାତଟାରେ ଏହାକୁ ମୁକ୍ତ ଦେଇଦେବ । ଭେଲେଣ୍ଟିନ୍, ତଥାପି କହୁଛି ମୋ କଥାଟା ଖିଆଲ ରଖିବ ।"

ପରଦିନ ସକାଳ ସାତଟାରେ ଜିମି ଜେଲରକ୍ଷକଙ୍କ ପାଖରେ ହାଜର ହେଲା । ଏମାନେ ସରକାରଙ୍କ ବାଧ୍ୟତାମୂଳକ ଅତିଥି । ସରକାର ଏମାନଙ୍କୁ ବିଦାୟ ଦେଲାବେଳେ ବିଭିନ୍ନ ରକମର ଟାଙ୍କ ଟଙ୍କ ପୋଷାକ ଓ ଟାଣଦିଆସୂମାନ ଜୋତା ଦିଅନ୍ତି । ତାହାହିଁ ଜିମିକୁ ଦିଆଗଲା ।

କିରାଣୀ ତାକୁ ରେଲ ଟିକଟ ଓ ପାଞ୍ଚୋଟି ଡ଼ଲାର ଦେଲେ । ଆଇନ ଆଶାକରେ ଯେ ସେଇଥିରେ ସେ ଇପ୍ସିତ ଭବିଷ୍ୟତରେ ଭଦ୍ର ନାଗରିକ ହେବ ଓ ଉନ୍ନତ ଜୀବନ ଯାପନ କରିବ । ଜଗୁଆଳ ତାକୁ ଗୋଟିଏ ସିଗାର ମଧ୍ୟ ଦେଲା ଓ କରମର୍ଦ୍ଦନ କଲା । କହିଲେ

Digitized by srujanika@gmail.com

ଲେଖାଗଲା, ଭେଟେରେଣ୍ଟିନ୍ ନଂ ୯୭୬୨—ଲାଟସାହେବ ଷମା ଦେବାରୁ ମୁକ୍ତ । ଏବଂ ମିଷ୍ଟର ଜେମସ୍ ଭେଲେଣ୍ଟିନ୍ ଜେଲରୁ ମୁକ୍ତ ସୂର୍ଯ୍ୟାଲୋକକୁ ପ୍ରବେଶ କଲା ।

ପକ୍ଷୀମାନଙ୍କର ଗାନ, ସବୁଜ ବୃକ୍ଷମାନଙ୍କର ପଲ୍ଲବ ଓ ପୁଷ୍ପ-ମାନଙ୍କର ସୁଗନ୍ଧ ଉପେକ୍ଷାକରି ଜିମ୍ମି ସିଧାସଳଖ ପଶିଗଲା ଗୋଟିଏ ହୋଟେଲ ଭିତରେ । ସେଠି କୁକୁଡ଼ା ମାଂସ, ବୋତଲେ ମଦ ଖାଇବାପରେ ଗୋଟିଏ ସିଗାର ଟାଣି ଜିମ୍ମି ସ୍ୱାଧୀନତାର ଆନନ୍ଦ ଉପଲବ୍ଧି କଲା । ତାପରେ ସେଠାରୁ ସେ ଅଳସ ଭାବରେ ଚାଲିଲା ଷ୍ଟେସନଆଡ଼େ । ଦୁଆର ପାଖରେ ବସିଥିବା ଗୋଟିଏ ଅନ୍ଧର ଟୋପି ଭିତରକୁ ଗୋଟିଏ ସୁଭକ ଫିଙ୍ଗିଦେଇ ସେ ରେଳଗାଡ଼ିରେ ବସିଲା । ଛଅଘଣ୍ଟା ପରେ ସେ ଗୋଟିଏ ସହରରେ ଓହ୍ଲାଇ ପଡ଼ିଲା । ତା ପରେ ସେ ମାଇକ୍ ଡୋଲାନର କାଫେକୁ ଯାଇ ତା ସହିତ କର-ମର୍ଦ୍ଦନ କଲା ।

"ଆମେ ଅତ୍ୟନ୍ତ ଦୁଃଖିତ ଯେ ତୋର ମୁକ୍ତି ଆମ ଆଗରୁ କରାଇ ପାରିଲୁ ନାହିଁ" ମାଇକ କହିଲା "କିନ୍ତୁ ଆମେ କଅଣ କରିବୁ ? ସ୍ପ୍ରିଙ୍ଗଫିଲ୍ଡର ଲୋକେ ଆପତ୍ତି କଲେ, ଆଉ ଲାଟସାହେବ ତ ତାଙ୍କ କଥା ମାନି ନେଇଥିଲେ ! ଖୁଡ଼ ବର୍ତ୍ତମାନ କେଶ୍ ଲାଗୁଛି ତ ?"

ଚମତ୍କାର ! ମୋ ଚାବି କାହିଁ ? ଜିମ୍ମି ପଚାରିଲା ।

ଚାବିନେଇ ଜିମ୍ମି ଉପର ମହଲାକୁ ଯାଇ ତାର ନିଜ କୋଠରି ଖୋଲିଲା । ସବୁ ଠିକ୍ ସେମିତି ଅଛି ଘର ଭିତରେ । ବିଖ୍ୟାତ ଗୁଇନ୍ଦା ବେନ୍ ପ୍ରାଇସ୍ ଜିମ୍ମିକୁ ଜବତ କଲାବେଳେ ଜିମ୍ମି ତାହାର କମିଜର ବେକପଟି ଛିଣ୍ଡାଇ ଆଣିଥିଲା, ସେଇଟି ମଧ୍ୟ ଘର ଚଟାଣରେ ପଡ଼ିଛି ସେମିତି ।

Digitized by srujanika@gmail.com

କାନ୍ଥରେ ଲାଗିଥିବା ଗୋଟିଏ ଫୋଲଡ଼ିଂ ଖଟ ଟାଣି ଆଣି କାନ୍ଥ ଭିତରୁ ଜିମ୍ମି ଗୋଟିଏ ଧୂଳି ଧୂସରିତ ସୁଟ୍‌କେସ୍ ବାହାରକଲା । ସୁଟ୍‌କେସ୍‌ଟି ଖୋଲି ଜିମ୍ମି ଅତି ଆଦରରେ ଅନାଇ ରହିଲା । ତାହା ଭିତରେ ଅଛି ସବୁ ପ୍ରକାର ସିନ୍ଦୁକ ଭାଙ୍ଗିବାର ଅତି ଆଧୁନିକ ଯନ୍ତ୍ରପାତି ଖାଣ୍ଟି ଇସ୍ପାତରେ ତିଆରି ଭଅଁର, ବଟାଳି ଇତ୍ୟାଦି ଏବଂ ଜିମ୍ମି ନିଜେ ଆବିଷ୍କାର କରିଥିବା କେତୋଟି ନୂଆ ଯନ୍ତ୍ର ମଧ୍ୟ । ସେ ନୂଆ ଯନ୍ତ୍ରଗୁଡ଼ିକ ଆବିଷ୍କାର କରି ଜିମ୍ମି ନିଜକୁ ସମ୍ମାନିତ ମନେ କରେ । ସେ ସବୁ—ସହରରେ ତିଆରି କରାଇବାକୁ ଜିମ୍ମିକୁ ଖରଚ ପଡ଼ିଥିଲା ନଅ ଶହ ଡଲାର ।

ଅଧଘଣ୍ଟା ଭିତରେ ଜିମ୍ମି ପୁଣି ତଳକୁ ଓହ୍ଲାଇ କାଫେବାଟ ଦେଇ ଗଲା । ପିନ୍ଧିଥାଏ ସେ ଚମତ୍କାର ଆଧୁନିକ ପୋଷାକ ଏବଂ ହାତରେ ଥାଏ ସେଇ ସୁଟ୍‌କେସ୍, ଯାହାକୁ ସେ ପରିଷ୍କାର କରିଥାଏ ।

"କଅଣ କେଉଁଠି ସନ୍ଧାନ ପାଇଛ କି ?" ମାଇକ୍ ଆନନ୍ଦରେ ପଚାରିଲା ।

"ମୁଁ !" ଆଶ୍ଚର୍ଯ୍ୟ ଭାବରେ ଜିମ୍ମି ପଚାରିଲା "ତୁମ କଥା ମୁଁ ବୁଝି ପାରୁନାହିଁ ! ମୁଁ ତ ନ୍ୟୁୟର୍କ ଏମାଲ୍‌ଗାମେଟେଡ ସର୍ଟ ସ୍ନାପ ବିସ୍କୁଟ୍ କ୍ରାକର ଓ ଫ୍ରାଜେଲ୍‌ଡ ହୁଇଟ୍ କମ୍ପାନିର ପ୍ରତିନିଧି !"

ଜିମ୍ମିର ଏ ପରିଚୟ ବର୍ଣ୍ଣନା ମାଇକ୍‌କୁ ଏତେ ଆନନ୍ଦ ଦେଇ ଯେ ଜିମ୍ମିକୁ ତତ୍‌କ୍ଷଣାତ୍ ଗୋଟିଏ ଗିଲାସ ନରମ ମଦ ପାନ କରିବାକୁ ପଡ଼ିଲା । ଜିମ୍ମି କେବେହେଁ କଡ଼ା ମଦ ଖାଏ ନାହିଁ ।

ଭେଲେଣ୍ଟିନ୍ ୯୭୬୨ ଖଲାସ ହେବାର ଏକ ସପ୍ତାହ ପରେ ରିଚ୍‌ମଣ୍ଡରେ ଗୋଟିଏ ଅତି ଚମତ୍କାର ସୁନ୍ଦର ସିନ୍ଧୁକ ଚୋରି ହେଲା ଏବଂ କିଏ କରିଛି ତାହାର କୌଣସି ସୂତ୍ର ମଧ୍ୟ ମିଳିଲା ନାହିଁ । ସାମାନ୍ୟ ଆଠଶହ ଡଲାର ହରଣଚାଳ ହୋଇଥିଲା । ଦୁଇ ସପ୍ତାହ

Digitized by srujanika@gmail.com

ପରେ, ଛେନା କାଟିବା ଭଳି ଅତି ଅନାୟାସରେ କଟା ହେଲା ଗୋଟିଏ ସିନ୍ଧ ନିରୋଧକ ଆଧୁନିକ ଲୁହାସିନ୍ଦୁକ ଏବଂ ସେଥିରୁ ଗଲା ପନ୍ଦର ଶହ ଡଲାରର ନୋଟ ବିଡା, ମୁଦ୍ରା ଓ ସରକାରୀ କାଗଜ ହାତମରି ନ ହୋଇ । ଏହାପରେ ବଦମାସ-ବୈଶମାନଙ୍କ ଆସନ ଟିକଏ ଟଳିଲା । ତା ପରେ ଜେଫରେସନ ନଗରର ଗୋଟିଏ ବେଙ୍କର ପୁରୁଣା କାଳିଆ ଗନ୍ତାଘର ହଠାତ୍ ସନ୍ଦିଗ୍ଧ ହୋଇ ଉଠି ତାର ମୁଖବାଟେ ଉଦ୍‌ଗାରିଲା ପାଞ୍ଚହଜାର ଡଲାରର ନୋଟ ବିଡାସବୁ ! ଏତେଗୁଡିଏ ଠକା ଗଲା ପରେ ହୃଦୟଙ୍ଗମ ହେଲା ଯେ ବର୍ତ୍ତମାନ ବେନପ୍ରାଇସଙ୍କୁ କାର୍ଯ୍ୟକ୍ଷେତ୍ରକୁ ଯିବାକୁ ପଡ଼ିବ । ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ମାତ୍ର ଉପାୟ ପ୍ରୟୋଗ କରାହୋଇଛି । ବେନ ପ୍ରାଇସ୍ ଉକ୍ତ ସ୍ଥାନଗୁଡ଼ିକ ତଦନ୍ତ କରି କହିବାର ଶୁଣାଗଲା, "ସବୁଥିରେ ସେଇ ମହାଶୟ ଜିମ୍ମି ଭେଲେଣ୍ଟିନ୍‌ର ହାତ ଅଛି । ପୁଣି ସେ ତାର କାରବାର ଆରମ୍ଭ କରିଦେଇଛି । ପ୍ରତ୍ୟେକ କ୍ଷେତ୍ରରେ ମୂଳା ଉପାଡିଲା ଭଳି ଯେମିତି ଅନାୟାସରେ ଲୁହାଗଣ୍ଡି ସବୁ ଉପଡ଼ା ହୋଇଛି, ସେଥିରୁ ଏହା ସ୍ପଷ୍ଟପ୍ରମାଣ ହୁଏ । ଏମିତି ଭାବରେ ଓ ପୋଡିବା ପାଇଁ ତାହାଛଡ଼ା ଆଉ କାହାର ପାଖରେ ଯନ୍ତ୍ର ନାହିଁ । ପୁଣି ଦେଖ, କେମିତି ନିଖୁଣ ଭାବରେ ସିନ୍ଦୁକର ଦରଜ ସବୁ ଟଣା ହୋଇଛି । ଜିମ୍ମିକୁ ମାତ୍ର ଥରେ ଭଅଁର ବ୍ୟବହାର କରିବାକୁ ପଡ଼େ । ଅଯଥା ପରିଶ୍ରମ ସେ କରେ ନାହିଁ । ମୋର ଆଉ ସନ୍ଦେହ ନାହିଁ ଯେ ଏସବୁର କର୍ତ୍ତା ଜିମ୍ମି ଭେଲେଣ୍ଟିନ୍ । ଧରିପଡିଲେ ଆଉ ତାକୁ କ୍ଷମାଦେବାର ବୋକାମି କଥା ଉଠିବ ନାହିଁ ।"

ଜିମ୍ମିର ଗୁଲ୍‌ଚଲଣ ବେନ୍ ପ୍ରାଇସଙ୍କୁ ଜଣା । ସ୍ପ୍ରିଙ୍ଗ୍ ଫିଲ୍‌ଡ଼ରେ ଅନୁସନ୍ଧାନ କରୁଥିବାବେଳେ ସେ ତାହା ଭଲକରି ଜାଣି ପାରିଥିଲେ ।

Digitized by srujanika@gmail.com

ଲମ୍ବାଡଅାଁ, ଶୀଘ୍ର ପ୍ରସ୍ଥାନ, କୌଣସି ସହକାରୀ ବନ୍ଧନ ଏବଂ ଅଭଜାତ ବ୍ୟକ୍ତିଙ୍କ ସହିତ ବନ୍ଧୁତ୍ୱ—ଏ ସବୁ ଯୋଗୁଁ ଜିମ୍ନିକୁ ଆଇନ ସ୍ପର୍ଶ କରିପାରେ ନାହିଁ । ଶୀଘ୍ର ପ୍ରସ୍ତୁତ ହୋଇଗଲା ଯେ ବେନ୍ ସ୍ପାଇସ ବର୍ତ୍ତମାନ ତଦନ୍ତ ହାତକୁ ନେଲେଣି । ଯେଉଁମାନଙ୍କର ସିନ୍ଧନାଗଧକ ସିନ୍ଦୁକ ଅଛି ସେମାନେ ଟିକଏ ସ୍ୱସ୍ତି ଅନୁଭବ କଲେ ।

ଦିନେ ସନ୍ଧ୍ୟାରେ ଜିମ୍ନି ଭେଲେଣ୍ଟିନ୍ ଓ ତାହାର ସୁଟ୍‌କେସ୍ ଏଲ୍‌ମୋରରେ ରେଲଗାଡ଼ିରୁ ଓହ୍ଲାଇଲେ । ଏଲ୍‌ମୋର ହେଉଛି ଆରକାନ୍‌ସାସ୍‌ର ଗୋଟିଏ କ୍ଷୁଦ୍ର ସହର, ଷ୍ଟେସନଠାରୁ ପାଞ୍ଚ ମାଇଲ ଦୂରରେ । ଜିମ୍ନିକୁ ମନେ ହେଉଥିଲା କଲେଜ ଛୁଟିରେ ଘରକୁ ଫେରୁଥିବା ଗୋଟିଏ ଯୁବ ଭଳି । ଜିମ୍ନି ହୋଟେଲକୁ ଯିବାର ରାସ୍ତାର ଚାଲିଲା ।

ଠିକ୍ ସେତିକିବେଳେ ଗୋଟିଏ ଯୁବତୀ ରାସ୍ତା ଏ ପାଖରୁ ସେ ପାଖକୁ ଯାଇ ଗୋଟିଏ ଘରେ ପ୍ରବେଶ କଲେ । ସେ ଘରେ ଲେଖା ହୋଇଛି, "ଏଲ୍‌ମୋର ବ୍ୟାଙ୍କ ।" ଜିମ୍ନି ଭେଲେଣ୍ଟିନ୍ ଯୁବତୀର ଆଖିକୁ ଚାହିଁଲା, ଭୁଲିଗଲା ସେ କିଏ, ଏବଂ ସେଇ ମୁହୂର୍ତ୍ତରେ ତାର ନବଜନ୍ମ ହେଲା । ଯୁବତୀଟି ଆଖି ତଳକୁ କରି ଲଜ୍ଜାରେ ଆରକ୍ତିମ ହୋଇଗଲେ । ଜିମ୍ନି ଭଳି ସୁନ୍ଦର ଓ ସୁରୁଚି ସମ୍ପନ୍ନ ଯୁବକ ଏଲ୍‌ମୋରରେ ଦେଖା ନ ଥିଲା ।

ଗୋଟାଏ ବାଳୁଙ୍ଗା ଟୁଆ ସେତେବେଳେ ସେହି ବ୍ୟାଙ୍କର ଜଣେ ଲୋକ ଭଙ୍ଗୀରେ ବ୍ୟାଙ୍କ ପାହାଚରେ ଛିଡ଼ା ହୋଇ ଥାଏ । ଜିମ୍ନି ତାହାର କାମଜ ଧରି ଟାଣି ଆଣି ସହର ବିଷୟରେ ନାନା ପ୍ରଶ୍ନ ପଚାରିଲା ଏବଂ ମଝିରେ ମଝିରେ ଲେବେଞ୍ଚୁସ୍ ଦେବାକୁ

Digitized by srujanika@gmail.com

ଲାଗିଲା । କିଛି ସମୟ ପରେ ଯୁବତୀଟି ବ୍ୟାଙ୍କରୁ ବାହାରି ଜିମ୍ମି ଓ ତାହାର ସୁଟ୍‌କେସ୍‌କୁ ଲକ୍ଷ୍ୟ ନ କରିବା ଭାବ ଦେଖାଇ ଚାଲିଗଲା ।

'ସେ ଝିଅଟିର ନା ଶ୍ରୀମତୀ ପଲି ସିମସନ୍ ନୁହଁ କି ?' ଜିମ୍ମି ପଚାରିଲା ।

ନାଃ, ସେ ହେଉଛି ଆନାବେଲ୍ ଆଡାମସ । ତା ବାପ ଏହି ବ୍ୟାଙ୍କର ମାଲିକ । ତୁମର ଏ ଘଡ଼ି ଚେନ୍ କଅଣ ସୁନାର ? ମୁଁ ଗୋଟିଏ ଡାହାଳ କୁକୁର କିଣିବି । ଆଉ କେଉଁଠି ଅଛି ? ବାଳୁଙ୍ଗାଟା କହି ଚାଲିଲା ।

ଜିମ୍ମି ଗଲା ହୋଟେଲକୁ ଏବଂ ସେଠାରେ ନିଜକୁ ରାଲଫ ଡି: ସ୍ପେନ୍‌ସର ବୋଲି ନିଜର ପରିଚୟ ଦେଇ ଗୋଟିଏ କୋଠରୀ ଭଡ଼ା ନେଲା ଓ ନିଜର ଉଦ୍ଦେଶ୍ୟ ବ୍ୟକ୍ତ କଲା, ମୁଁ ଆସିଛି ଏଠି କିଛି ବ୍ୟବସାୟ ଉଦ୍ଦେଶ୍ୟରେ, ଏଠି ଜୋତା କାରବାର କଲେ କେମିତି ହେବ ? ସେଥିପାଇଁ ସୁଯୋଗ ସୁବିଧା ଅଛି ?

ହୋଟେଲ କର୍ମଚାରୀଟି ଜିମ୍ମିର ହାବଭାବରେ ମୁଗ୍ଧ ହୋଇଗଲା । ଏଲ୍‌ମୋରର ଅଳ୍ପ କେତେକ ସୁରୁଚିସମ୍ପନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ସେ ଜଣେ ବୋଲି ଗଣାହୁଏ । କିନ୍ତୁ ଜିମ୍ମିକୁ ଦେଖି ସେ ନିଜକୁ ସେଥିପାଇଁ ଅଯୋଗ୍ୟ ମନେ କଲା । ଜିମ୍ମିର ବେଶଭୂଷା ପିନ୍ଧିବାର ଓ କଥା କହିବାର ଭଙ୍ଗୀ ଭଲ ଭାବରେ ଲକ୍ଷ୍ୟ କରୁ କରୁ ସେ ଜିମ୍ମିକୁ ସବୁ ଖବର ଦେଲା ।

ଖାଲି ଜୋତା ଦୋକାନ ଏ ସହରରେ ନାହିଁ । ମନୋହାରୀ ଦୋକାନୀମାନେ ଜୋତା ବିକ୍ରି କରୁଛନ୍ତି । ଯୋତା ଦୋକାନଟିଏ ଖୋଲିଲେ କାରବାର ଭଲ ହେବାର କଥା । ମିଃ ସ୍ପେନ୍‌ସର୍ ତେଣୁ ଏଲ୍‌ମୋର୍‌ରେ ଜୋତା ଦୋକାନ ଖୋଲିବାର ମନସ୍ଥ କଲେ ।

Digitized by srujanika@gmail.com

ସେପରି ମନସ୍ଥ କରିବାର ଅନ୍ୟ କାରଣ ହେଉଛି, ସହରଟି ସୁନ୍ଦର ଏବଂ ଏଠାର ଲୋକମାନେ ସଦାଳାପୀ ।

ମିଃ ସ୍ପେନସର୍ ପ୍ରଥମ କିଛିଦିନ ଅବସ୍ଥା ପର୍ଯ୍ୟବେକ୍ଷଣ କରିବାରେ ଅତିବାହିତ କରିବାକୁ ଇଚ୍ଛା କଲେ । ତାଙ୍କର ସୁଟ୍‌କେସ୍‌ଟି ତାଙ୍କ କୋଠରୀକୁ ନେଇଯିବା ପାଇଁ ହୋଟେଲ୍ କର୍ମଚାରୀ ଗୋଟିଏ ପିଲାକୁ ଡାକୁଥିଲେ । ମିଃ ସ୍ପେନସର୍ ମନା କରି କହିଲେ, ନା, ନା, ମୁଁ ନିଜେ ନେଇଯିବି । ସୁଟ୍‌କେସ୍‌ଟି ଟିକିଏ ଭାରି ।

ବାରମ୍ବାର ପ୍ରେମାଗ୍ନି ଦ୍ୱାରା ଆକ୍ରାନ୍ତ ଜିମ୍ ଭେଲେଣ୍ଟିନ୍‌ର ଭସ୍ମରୁ ଜାତ ମିଃ ରାଲଫ୍ ସ୍ପେନ୍‌ସର ଏଲ୍‌ମୋରରେ ଉଚ୍ଚ ଅବଲମ୍ବେ ବ୍ୟବସାୟ କ୍ଷେତ୍ରରେ ଉନ୍ନତି କରିବାକୁ ଲାଗିଲେ ।

ସାମାଜିକ କ୍ଷେତ୍ରରେ ମଧ୍ୟ ତାଙ୍କର ଉନ୍ନତି ହେଲା । ଅନେକ ତାଙ୍କର ବନ୍ଧୁ ହେଲେ । ତାଙ୍କର ଅନ୍ତରର ଅଭିଳାଷ ମଧ୍ୟ ପୂର୍ଣ୍ଣ ହେଲା । ସେ ମିସ୍ ଆଡ଼ାମ୍‌ସଙ୍କ ସହିତ ପରିଚିତ ହେଲେ ଏବଂ ତାଙ୍କ ପ୍ରତି ପ୍ରେମ ଘନୀଭୂତ ହେବାକୁ ଲାଗିଲା ।

ବର୍ଷକ ପରେ । ମିଃ ସ୍ପେନ୍‌ସର ସଜ୍ଜନ ସମାଜରେ ଗଣ୍ୟ ହେଲେଣି, ତାଙ୍କର ଜୋତା ବ୍ୟବସାୟ ଦ୍ୱାରା ବହୁତ ଅର୍ଥ ଉପାର୍ଜନ କଲେଣି ଏବଂ ଆଉ ଦୁଇ ସପ୍ତାହ ମଧ୍ୟରେ ମିସ୍ ଆଡାମ୍‌ସଙ୍କ ସହିତ ତାଙ୍କର ବିବାହ ନିର୍ବନ୍ଧ ହୋଇ ଯାଇଛି । ଶ୍ରୀମତୀ ଅଡ଼ାମ୍‌ସଙ୍କ ପିତା ନିଜେ ଜଣେ ପରିଶ୍ରମୀ ବ୍ୟବସାୟୀ । ସେ ମଧ୍ୟ ଏ ବିବାହରେ ସ୍ୱୀକୃତ ହେଲେ । ଆନାବେଲ୍ ମିଃ ସ୍ପେନ୍‌ସରଙ୍କୁ ସ୍ୱାମୀ ରୂପେ ପାଇ ନିଜକୁ ସୌଭାଗ୍ୟବତୀ ମନେ କଲେ । ମିଃ ଆଡାମସ୍‌ଙ୍କ ପରିବାରରେ ଓ ଆନାବେଲଙ୍କ ବଡ଼ ଭଉଣୀଙ୍କ ପରିବାରରେ ଜିମ୍ ବି ଜଣେ ଲୋକ ପରି ଗଣାହେଲେ । ଦିନେ ଜିମ୍ ତାର ପୁରାତନ ବନ୍ଧୁ ଲୁଇସ୍‌କୁ ନିମ୍ନ ରୂପ ପତ୍ରଟିଏ ଲେଖି ଡାକଘରେ ପକାଇ ଦେଲା ।

Digitized by srujanika@gmail.com

ପ୍ରିୟ ପୁରାତନ ବନ୍ଧୁ,

ଆସନ୍ତା ବୁଧବାର ରବ୍ ସହରରେ ସୁଲତାନ୍‌ର ଘରକୁ ସନ୍ଧ୍ୟା ୯ଟାବେଳେ ଆସିବାକୁ ତୁମକୁ ଅନୁରୋଧ କରୁଛି । ମୋର ଗୋଟିଏ ସାମାନ୍ୟ କାର୍ଯ୍ୟରେ ତୁମେ ସାହାଯ୍ୟ କରିବ, ମୋର ଆଶା । ଆଉ ତୁମକୁ ମଧ୍ୟ ମୋର ଯନ୍ତ୍ରପାତିଗୁଡ଼ିକ ଉପହାର ଦେବି । ମୁଁ ନିଶ୍ଚିତ୍ତ ଜାଣେ ସେ ସବୁ ପାଇଲେ ତୁମେ ଅତ୍ୟନ୍ତ ଆନନ୍ଦିତ ହେବ । ଏକ ହଜାର ଖରଚ କରି ମଧ୍ୟ ତୁମେ ଏପରି ଯନ୍ତ୍ରପାତି ତିଆରି କରିବାକୁ ସକ୍ଷମ ହୋଇନ । ବନ୍ଧୁ, କହିଲେ ହେବ ମୁଁ ମୋର ପୁରୁଣା କାରବାର ଛାଡ଼ି ଦେଇଛି । ଏଠି ଗୋଟିଏ ସୁନ୍ଦର ଜୋତା ଦୋକାନ କରିଛି । ସାଧୁ ଭାବରେ ଜୀବନ ଯାପନ କରୁଛି ଶୁଣି ସୁଖୀ ହୋଇବ, ପୃଥିବୀର ସବୁଠାରୁ ଶ୍ରେଷ୍ଠ ସୁନ୍ଦରୀ ଓ ସର୍ବଗୁଣାଲଂକୃତା ନାରୀଙ୍କୁ ମୁଁ ଦୁଇ ସପ୍ତାହ ମଧ୍ୟରେ ବିବାହ କରିବାକୁ ଯାଉଛି । ମୁଁ ବର୍ତ୍ତମାନ ହୃଦୟଙ୍ଗମ କରିଛି; ସେହାକ୍ଷି ଜୀବନରେ ଏକମାତ୍ର ଆନନ୍ଦ । ବର୍ତ୍ତମାନ ମୋତେ କେହି ହଜାରେ ଦେଲେ ବି ଅନ୍ୟର କାଣି କଉଡ଼ିଟିଏ ଛୁଇଁବି ନାହିଁ । ବିବାହ ପରେ ମୁଁ ପଶ୍ଚିମକୁ ଚାଲିଯିବି । ସେଠି ଆଉ ମୋର ପୁରୁଣା କାର୍ଯ୍ୟ କଳାପ ପ୍ରକାଶ ପାଇବାର ଆଶଙ୍କା ରହିବ ନାହିଁ । ବନ୍ଧୁ, ଯାହାକୁ ମୁଁ ବିବାହ କରିବାକୁ ଯାଉଛି ସେ ତ ମାନବୀ ନୁହଁ, ଦେବୀ । ସେ ମୋତେ ବିଶ୍ବାସ କରେ । ତାର ସେ ବିଶ୍ବାସ ଭଙ୍ଗ କରି ମୁଁ ଆଉ ଖରାପ କାମ କରିବି ନାହିଁ । ସମଗ୍ର ପୃଥିବୀର ରାଜ୍ୟ କଲେ ବି ନୁହଁ । ସୁଲତାନ୍‌ର ଘରକୁ ନିଶ୍ଚିତ୍ତ ଆସିବ । ମୁଁ ମୋର ଯନ୍ତ୍ରପାତି ସହ ସେଠାରେ ଥିବି ।

ତୁମର ପୁରାତନ ବନ୍ଧୁ

ଜିମି ।

Digitized by srujanika@gmail.com

ଯେଉଁଦିନ ଜିମ୍ମି ସେ ଚିଠିଟି ଡ଼ାକରେ ପକାଇଲା, ସେଇ ସନ୍ଧ୍ୟାରେ ବେନ୍‌ପ୍ରାଇସ୍ ଏଲ୍‌ମୋରରେ ଉପସ୍ଥିତ ହେଲେ । ତାପରେ ସେ ଅତି ସତର୍କତା ସହିତ ଏଲ୍‌ମୋରରେ ଏଠି ସେଠି ବୁଲି ସୂତ୍ର ଖୋଜିବାକୁ ଲାଗିଲେ । ମିଃ ସ୍ପେନସର୍‌ଙ୍କ ଜୋତା ଦୋକାନ ସାମନାରେ ଥିବା ଔଷଧ ଦୋକାନରୁ ସେ ମିଃ ସ୍ପେନସର୍‌ଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ ଏବଂ ସ୍ୱଗତୋକ୍ତି କଲେ "ଜିମ୍ମି; ତୁମେ ବ୍ୟାଙ୍କ ମାଲିକ କନ୍ୟାକୁ ବିବାହ କରିବାକୁ ଯାଉଛ, ନା ? ଦେଖା ନ ଜାନନ୍ତି ଚତୁଃ ମନୁଷ୍ୟ !"

ପରଦିନ ସକାଳେ ଜିମ୍ମି ଆଡ଼ାମ୍‌ସ ପରିବାର ସହିତ ଜଳଖିଆ ଖାଇଲା । ସେଇଦିନ ରକ୍ ସହରକୁ ଯାଇ ବିବାହ ପାଇଁ ପୋଷାକ ଓ ଆନାବେଲ୍ ପାଇଁ ଉପହାର କିଣିବା କଥା । ଏଲ୍‌ମୋରକୁ ଆସିବା ପରେ ସେ ପ୍ରଥମ ଥର ପାଇଁ ସେ ସ୍ଥାନ ଛାଡ଼ି ବାହାରକୁ ଯାଉଛି ବର୍ଷେ ହେବ ସେ ତାର ପୁରୁଣା କାରବାର ଛାଡି ଦେଇଛି, ତେଣୁ ବାହାରକୁ ଯିବାରେ ଆଉ ଆଶଙ୍କା ନାହିଁ ।

ଜଳଖିଆ ଖାଇ ସାରିବା ପରେ ମିଃ ଆଡ଼ାମ୍‌ସ, ଆନାବେଲ୍, ଜିମ୍ମି, ଆନାବେଲ୍‌ଙ୍କ ବଡ଼ ଭଉଣୀ ତାଙ୍କର ପାଞ୍ଚ ବର୍ଷର ଓ ନ' ବର୍ଷର ଝିଅ ଦୁଇଟି ସମସ୍ତେ ମିଳି ବାହାରିଲେ ଜିମ୍ମିର ହୋଟେଲକୁ । ଜିମ୍ମି ତାର ସୁଟକେଶ୍‌ଟି ଆଣିଲା ଏବଂ ସମସ୍ତେ ମିଳି ବ୍ୟାଙ୍କକୁ ଗଲେ । ସେଠି ଜିମ୍ମିର ଗାଡି ଥୁଆ ହୋଇଥାଏ । ସେଠାରୁ ସେଇ ଗାଡ଼ିରେ ସେ ଷ୍ଟେସନ ଯିବା କଥା ।

"ସମସ୍ତେ ମିଳି ବ୍ୟାଙ୍କ ଭିତରକୁ ଗଲେ । ଜିମ୍ମି ମିଃ ଆଡାମ୍‌ସଙ୍କ ଭବିଷ୍ୟତ୍ ଜାମାତା । ତାକୁ ଆଉ ଲୁଚିବାର କଅଣ ଅଛି ? ବ୍ୟାଙ୍କର କିରାଣୀମାନେ ଜିମ୍ମିକୁ ଦେଖି ଖୁବ ଖୁସି ହେଲେ ଓ ଅଭିନନ୍ଦନ ଜଣାଇଲେ । ଜିମ୍ମି ସେଠି ସୁଟକେସ୍‌ଟି ରଖିଲା ।

Digitized by srujanika@gmail.com

ଆନାବେଲ୍‌ର ଆନନ୍ଦ କହିଲେ ନ ସରେ, ଯୁବଶ୍ରୀ ସୁଲଭ ଚପଳତାରେ ସେ ଜିମ୍ମିର ଟୋପି ନିଜେ ପିନ୍ଧି ସୁଟକେସ୍‌ଟି ଉଠାଇ କହିଲା ହୋଉ ନେଲି, କେତେ ଭାରି ମ ! ସୁନା ଘଣ୍ଟା ଅଛି କି ଏହା ଭିତରେ !"

ଜିମ୍ମି କହିଲା "ନା, ଜୋତା କଣ୍ଟା ଭରନ୍ତି ହୋଇଛି । ସେ-ଗୁଡ଼ାକ ଭଲ ନ ପଡ଼ିବାରୁ ଫେରାଇ ଦେବାକୁ ଯାଉଛି । ପାର୍ଶଲ କରି ପଠାଇ ଦେଲେ ଚଳି ଥାଆନ୍ତା, କିନ୍ତୁ ମୁଁ ଆଜିକାଲି ଭାରି ମିତବ୍ୟୟୀ ହୋଇ ଗଲିଣି, ନିଜେ ନେଇ ଯାଉଛି ।"

ଏଲ୍‌ମୋର ବ୍ୟାଙ୍କର ଗୋଟିଏ ନୂଆ ରକମର ଗନ୍ତାଘର ତିଆରି ହୋଇଥାଏ । ମିଃ ଆଡାମ୍‌ସ ଭାରି ଗର୍ବରେ ତାକୁ ପ୍ରତ୍ୟେକଙ୍କୁ ଦେଖାଇ ଥାଆନ୍ତି । ସାନ ଗନ୍ତାଘରଟିଏ, କିନ୍ତୁ ତାର କବାଟଟି ଯାନ୍ତ୍ରିକ କାରିଗରିର ପରାକାଷ୍ଠା କହିଲେ ଚଳେ । ଥରେ ଠେଲିଲେ ତିନୋଟି ଲୌହଫଳକ ଏକାସାଙ୍ଗରେ ବାହାରି ପଡ଼ି କବାଟ ଭିଡ଼ି ରଖେ । ଆଉ ଠେଲିବା ପାଇଁ ଅଛି ଗୋଟିଏ ଘଡ଼ି ଯନ୍ତ୍ର । ମିଃ ଆଡାମ୍‌ସ ମହା ଆନନ୍ଦରେ ମିଃ ସ୍ପେନସର୍ (ଜିମ୍ମି)ଙ୍କୁ ବୁଝାଉ ଥାଆନ୍ତି ଯାନ୍ତ୍ରିକ କୌଶଳଟି । କିନ୍ତୁ ମିଃ ସ୍ପେନସର୍ ମନଦେଇ ଶୁଣୁଥିବାର ଅଭିନୟ କଲେ ମଧ୍ୟ ଶୁଣିବାର ଆଗ୍ରହ ନ ଥିଲା । ସେଇ ସାନ ଝିଅ ଦୁଇଟି ଚକଚକିଆ ଲୁହା ଏବଂ ଅଦ୍ଭୁତ ଘଡ଼ିଯନ୍ତ୍ର ଦେଖି ମହା ଖୁସିରେ ଏଠି ସେଠି ହାତ ଦେଉଥାଆନ୍ତି ।

ଏମାନେ ସବୁ କଥାବାର୍ତ୍ତା ହେଉଥିବାବେଳେ ବେନ୍‌ପ୍ରାଇସ୍ ଧୀରେ ପ୍ରବେଶ କରି ସେମାନଙ୍କୁ ନିରୀକ୍ଷଣ କରୁଥାଏ । ଜଣେ ବ୍ୟାଙ୍କ କର୍ମଚାରୀ ପଚାରିବାରୁ ସେ କହିଲେ, 'ନା, ଜଣେ ପରିଚିତ ବନ୍ଧୁ ସହିତ ଦେଖାକରିବାକୁ ଆସିଛି ।'

Digitized by srujanika@gmail.com

ହଠାତ୍ ଆନାବେଲ୍ ଓ ତାର ବଡ ଭଉଣୀ ଆର୍ତ୍ତନାଦ କରି ଉଠିଲେ । ସବୁଆଡ଼େ ଭୟାର୍ତ୍ତ ଦୃଷ୍ଟି ଖେଳିଗଲା ମୁହୂର୍ତ୍ତକେ । ଅନ୍ୟମାନଙ୍କ ଅଲକ୍ଷ୍ୟରେ ନଅବର୍ଷର ଝିଅଟି ଶିଶୁସୁଲଭ କୌତୁକରେ ତାର ସାନ ଭଉଣୀକୁ ଘଣ୍ଟାଘର ଭିତରକୁ ପେଲିଦେଇ କବାଟ ଲଗାଇ ଦେଇଛି । କଳଣା ଲଗାଇବାର କୌଶଳଟି ସେ ଅବିକଳ ଅନୁକରଣ କରି ଲଗାଇ ଦେଇଛି ।

ପୋଖତ ବ୍ୟାଙ୍କ ମାଲିକ କବାଟ ଖୋଲିବାକୁ ଚେଷ୍ଟାକରି ଏଠି ସେଠି ହାତମାରିଲେ । କିନ୍ତୁ ପ୍ରାୟ ମୂର୍ଚ୍ଛିତ ଭଳି କହିଲେ "କବାଟ ଖୋଲିହେବ ନାହିଁ, ଘଣ୍ଟ ଯନ୍ତ୍ରଟି ବିଗିଡ଼ି ଯାଇଛି !"

ଆନାବେଲର ବଡ ଭଉଣୀ ମୂର୍ଚ୍ଛା ଗଲେ ।

ଘଣ୍ଟାଘର ଭିତରୁ କ୍ଷୀଣ ଆକୁଳ କ୍ରନ୍ଦନ ସମସ୍ତଙ୍କୁ ପ୍ରାୟ ମୂର୍ଚ୍ଛା କରି ଦେବା ଉପରେ ।

ମିଃ ଆଡ଼ାମସ୍ କିଂକର୍ତ୍ତବ୍ୟବିମୂଢ଼ ହୋଇ ପ୍ରକାଶ କଲେ— "ଏ ସହରରେ କେହି ନାହିଁ ଯିଏ ଏ କବାଟ ଖୋଲିବାକୁ ସକ୍ଷମ ହେବ । ହେ ଭଗବାନ ! ସ୍ପେନସର୍, ଉପାୟ ? ତା ଭିତରେ ବେଶି କ୍ଷଣ ରହିଲେ ସେ ଯେ ମରିଯିବ ନିଶ୍ଚିତର !"

ଆନାବେଲ୍‌ର ବଡ ଭଉଣୀ କବାଟ ବାଡ଼େଇବାକୁ ଲାଗିଲେ କେହି ଜଣେ ପାଗଳ ଭଳି ପ୍ରସ୍ତାବ କଲେ—ଡାଇନାମାଇଟ ଦେ ଘରକୁ ଉଡ଼ାଇ ଦିଅ । ଆନାବେଲ୍ କରୁଣ ଭାବରେ ଜି ଚାହିଁଲେ । ପ୍ରେମିକା ଭାବେ, ତାର ପ୍ରେମିକ ତା ପାଇଁ ଅସାଧ୍ୟ ସ କରି ପାରେ ।

ରାଲ୍ଫ, ତୁମେ ଉଦ୍ଧାର କର……

କିନ୍ତୁ କ୍ଷଣିକ ପାଇଁ ଆନାବେଲ୍‌କୁ ଅଦ୍ଭୁତ ଭାବରେ ଅଧର ପ୍ରାନ୍ତରେ ମଧ୍ୟ ସେଇ ଭାବ ଖେଳିଗଲା । ତା

Digitized by srujanika@gmail.com

କହଲ, ଆନାବେଲ୍ ଯେଉଁ ଗୋଲପଟି ଓଖାସିକ୍ସ ଦେବକ ? ଦେବକ ? ଆନାବେଲ୍ ମନ୍ତ୍ରମୁଗ୍ଧ ଭଳି ହୃଦୟ ସନ୍ଧିକଟସ୍ଥ ଗୋଲପଟି ବାହାର କରି ଜର୍ଜି ର ହାତରେ ଦେଲେ । ତା ଫଳରେ ସ୍ୱଳ୍ପଫଳ ସ୍ୱପ୍ନସବୁ ଅପସରି ଗଲେ ଏବଂ ତା ସ୍ଥାନରେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଜର୍ଜି ଓଭେଲେଣ୍ଡିନ୍ ।

ଦରବାଜା ସେ ଚଟାଇ ଯାଉ, ଜର୍ଜି ଆଦେଶ ଦେଲା ।

ତା ପରେ ସୁଟ୍‌କେସ୍‌ଟି ଟେବୁଲ ଉପରେ ରଖି ସେ ତାକୁ ଖୋଲିଲା । ସେତେବେଳେ ସେ ଆଉ ଅନ୍ୟମାନଙ୍କର ଅବସ୍ଥିତି ମଧ୍ୟ ଅନୁଭବ କଲା ନାହିଁ । ତାର ଅଦ୍ଭୁତ ଯନ୍ତ୍ରଗୁଡ଼ିକ ଯାହା ପରେ ଯେଉଁଟି ଦରକାର ହେବ ଶୀଘ୍ର ତାର ସନ୍ଧାନ ସଜାଡ଼ ସଜାଡ଼ ସେ ଗୁଣୁ ଗୁଣୁ ଗାନ କରିବାକୁ ଲାଗିଲା । ଏହାହିଁ ତାର କାମ କରିବାର ରୀତି । ଅନ୍ୟମାନେ ବାଷ୍ପରୁଦ୍ଧ ଆବେଗରେ ଅନାଇ ରହିଲେ ।

ମୁହୂର୍ତ୍ତକ ମଧ୍ୟରେ ତାର ପ୍ରିୟ ଯନ୍ତ୍ରଗୁଡ଼ିକ କାମ କରିବାକୁ ଲାଗିଲେ । ଦଶମିନିଟ ମଧ୍ୟରେ ତିନିଂ ଫାଙ୍କ୍ । ଜର୍ଜି ତାର ପୂର୍ବର ରେକର୍ଡକୁ ମଧ୍ୟ ଏଥର ଟପି ଗଲା ! ଝିଅଟି ବାହାରି ଆସି ର ମା ବୁକୁରେ ମୁହଁ ଲୁଚାଇ ରହିଲା ।

ତା ପରେ ଜର୍ଜି ଭେଲେଣ୍ଟିନ୍ କୋଟ ପିନ୍ଧି ବାହାରକୁ ନକୁ ଯିବାକୁ । ବାହାରି ଗଲାବେଳେ ସେଇ ପ୍ରିୟ ଡ଼ାକ '" ସେ ଶୁଣିବାକୁ ପାଇଲା । କିନ୍ତୁ ସେ ତାହା ଉପେକ୍ଷା କରି ଗଲା ।

" ଦୁଆର ପାଖରେ ଛିଡ଼ା ହୋଇଛୁ ବେନ୍ ପ୍ରାଇସ୍, ଇନା ।

Digitized by srujanika@gmail.com

ଦ୍ୟାଟସ୍ ବେନ୍ସ୍ ! ସେଣ୍ଟପଲ ଅଦ୍ଭୁତ ହସ ହସି ଅଭିନନ୍ଦନ ଜଣାଇ ଜନ୍ମ କହିଲ୍, ଚମତ୍କାର, ଶେଷଥର ମୋର ସନ୍ଧାନ ଫଳେ ପାଇଲି ! ଚାଲିଯିବା । ତୋମାର ଆଉ ବର୍ତ୍ତମାନ ଆପତ୍ତି ନାହିଁ ।

କିନ୍ତୁ ବେନ୍‌ପାଇସ୍ ମଧ୍ୟ ଏକ ଅଦ୍ଭୁତ ପୁରୁଷ !

ଆପଣଙ୍କର ବୋଧ ହୁଏ ଭୁଲ ହୋଇଛି ମିଃ ଷ୍ଟେନସର୍, ସେ କହିଲେ, ମୁଁ ତ ଆପଣଙ୍କୁ ଜାଣେ ନାହିଁ, ଆପଣଙ୍କ ଗାଡ଼ ବାହାରେ ଅପେକ୍ଷା କରଛି ।

ବେନ୍‌ପ୍ରାଇସ୍ ତା ପରେ ଧୀର ମନ୍ଥର ଗତିରେ ସେଠାରୁ ଚାଲିଗଲେ !!



Digitized by srujanika@gmail.com

# ସାଗର ଓ ବିନ୍ଦୁ

ଅନାଦି କାଳରୁ ସାଙ୍ଖ ବିଶ୍ୱବ୍ରହ୍ମାଣ୍ଡରେ ଘଟି ଯାଇଥିବା ଓ ଅନନ୍ତ କାଳ ପର୍ଯ୍ୟନ୍ତ ଭବିଷ୍ୟତରେ ଘଟିବା ଅସଂଖ୍ୟ ଘଟଣା ପ୍ରବାହରୁ ଘଟଣା ବିନ୍ଦୁଟିଏ ବିଚ୍ଛିନ୍ନ କରି ଆଣି ଅଦାଲତ ତାଙ୍କର ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିବାରୁ ନିମ୍ନ ଆକାର ଧାରଣ କଲା ।

× × ×

ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ ମୁଦାଲା ହରି ମହୁରିଆ ।

୧ ନମ୍ବର ମୁଦେଇ ସାକ୍ଷୀର ସାକ୍ଷ୍ୟ । ମୋର ନାମ ଉଚ୍ଛବ ଦେଈ । ମୋର ସ୍ୱାମୀଙ୍କ ନାମ ହରି ମହୁରିଆ । ମୋର ବୟସ ୨୫ ବର୍ଷ । ମୋର ଗ୍ରାମ ଭଇତାପୁର । ଥାନା ବାସୁଦେବପୁର, ଜିଲ୍ଲା ବାଲେଶ୍ୱର । ହାଲ୍ ସାକିନ୍ ବାପଘର ଗାଁ ଚନ୍ଦନପୁର । ବ୍ୟବସାୟ ମୂଲିଆଣୀ ।

କାଠଗଡ଼ାରେ ଛିଡ଼ା ହୋଇଥିବା ମୁଦାଲା ମୋର ଗେରସ୍ତ । ମୁଁ ମୁଦାଲାକୁ ଆଠ ବରଷ ହେବ ବାହା ହୋଇଛି । ତାକୁ ବାହା

Digitized by srujanika@gmail.com

ହେବା ଆଗରୁ ମୁଁ ଯୋଜନପୁରର ରାମ ଅୁଣ୍ଡିଆକୁ ବାହା ହୋଇ-ଥିଲି । ତାକୁ ବାହା ହୋଇ ତା ପାଖରେ ବରଷେ ଥିଲି । ସେ କୁପୁରୁଷ ବୋଲି ତାକୁ ଛାଡଦେଇ ମୁଦାଲିକୁ ବାହା ହେଲି । (ଅଦାଲତରେ ପ୍ରଶ୍ନ—କୁପୁରୁଷ ମାନେ ? ସାକ୍ଷୀ—ତା ମାନେ ଅପାରଗ, ନପୁଂସକ) ।

ମୁଦାଲି ମୋର ଚରିତ୍ର ସନ୍ଦେହ କରି ସବୁବେଳେ ମାରେ, ଚରିତ୍ରପୀ ବୋଲି ଗାଳିଦିଏ । ମୁଁ ଗୀତ ଗାଇଲେ କି ଅଳଙ୍କାର ଲଗାଇଲେ ସେ ରାଗେ । ଏମିତିକି ତାର ଧରମପୁଅ ସହିତ ଅଛି ବୋଲି ସନ୍ଦେହ କରି ମୋତେ ମାରେ ।

ଗଲା ବୈଶାଖ ପୂନେଇ ଆଗଦିନ ମୋ ବାପା ନେବାକୁ ଆମ ଘରକୁ ଆସିଥିଲେ । ମୁଁ ତାଙ୍କ ସହିତ ଯିବାକୁ ଜିଦ୍ କଲି । ମୁଦାଲି ମୋତେ ଛାଡ଼ି ଦେବାକୁ ମନା କଲା । କହିଲା, ବୃଷବାସ ସମୟ, ଘରେ ଗାଈଗୋରୁ ଅଛନ୍ତି, ମୁଁ ଗଲେ ଚଳିବ ନାହିଁ । ମୁଁ କହିଲି ସେ ସବୁରେ ମୋର କିଛି ନାହିଁ । ମନା ନ ମାନି ମୁଁ ବାପ ଘରକୁ ଚାଲି ଆସିଲି ।

ତା ପରଦିନ ବୈଶାଖ ପୂନେଇଁ, ଶୂନ୍ୟଦେବଙ୍କ ପୂଜା । ମୁଦାଲି ସେଦିନ ଆମ ଘରକୁ ଆସିଲା । ଆସି ମୋତେ ସେଇଦିନ ନେଇ ଯିବାକୁ ଜିଦ୍‌କଲା । ମୁଁ ତାକୁ ଗାଳିଦେଇ କହିଲି, ମୋ ବୃଷବାସ, ଗାଈଗୋରୁ ଖିଆଖରାପ କରି କାହିଁକି ଆସିଲ ? ସେ ମୋତେ ଗାଳିଦେଇ ସେଇକ୍ଷଣିକା ନେଇଯିବାକୁ ବସିଲା । ମୋ ଭାଇ ରାଗି ମୋ ଗଡଣାପତ୍ର ବନ୍ଦ କରି ଦେଇ ଚାଲିଗଲା । ମୁଦାଲି ନ ଯାଇ ସେଦିନ ଆମ ଘରେ ରହିଲା ।

ସେଦିନ ରାତିନେଇଛଟାଣିକୁ ମୋ ଭାଇର ଶଳା କପିଳା କାମରୁ ଗୀତ ଗାଇ ଗାଇ ଫେରିଲା । ସେ ଗାଉଥାଏ, "ଚୋରି ମୋର ଯେ

Digitized by srujanika@gmail.com

ପୀଉଷ···। (ସାକ୍ଷୀ ଗୀତଟି ଗାଇବାକୁ ଲାଗିବାରୁ ଅଦାଲତ ଆଦେଶ ଦେଲେ—ସାବଧାନ, ଗୀତ ଗାଇଲେ ଅଦାଲତ ଅବମାନନା ଦୋଷରେ ଦଣ୍ଡିତ ହେବ । ମୃଦେଇ ପକ୍ଷ ଓକିଲ ମଧ୍ୟ ସାକ୍ଷୀର ହେତୁକ ଉକ୍ତି ଆଇନ ଅନୁସାରେ ଅବାନ୍ତର ବୋଲି ଆପତ୍ତି ଦର୍ଶାଇଲେ ଓ ଲିଖିତ ହେଲା) କପିଳା ବୃଷଟା ପାଗୁ ମାରୁ ଆଣିଥାଏ । ସନ୍ଧ୍ୟାବେଳକୁ ମୁଁ ଆଉ କପିଳା ପାଖହବୁ ବଟେନଇ ଚୂଟେନଇ ପୋଖରୀକୁ ନେଲୁ ଧୋଇବାକୁ । ଆମେ ଦୁହେଁ ପୋଖରୀ ତୁଠରେ ବସି ଗପ କଲୁ । ମୁ କହିଲି, କପିଳା ମୋତେ ଆଉ ତା ଘର କରିବାକୁ ଭଲ ଲାଗୁନାହିଁ । ଏଇ ସମୟରେ ବୁଦା ପାଖରେ ଖସ ଖସ ଶବ୍ଦ ଶୁଣି ଅନେଇ ଦେଖିଲି, ମୁଦାଲ୍ଲ ଲୁଚିକରି ସବୁ ଶୁଣୁଛି । (ଅଦାଲତ—କପିଳା ସହିତ ଆଗରୁ କଅଣ ତୁମର ଚିହ୍ନା ବା ଭାବ ଥିଲା ? ସାକ୍ଷୀ—ନା । ଅଦାଲତ—ଘଟଣାବେଳେ ତୁମେ କଅଣ କପିଳାକୁ ଭଲ ପାଉଥିଲ ? ସାକ୍ଷୀ—ହଁ । ତାର କେହି ନାହିଁ, ସେ ନିଆଶ୍ରା । ଧର୍ମାବତାର ମୋର କଅଣ ଦୋଷ ହେଲା ସେଥିରେ ? ଅଦାଲତ—ସେ ବିଷୟରେ ମକଦ୍ଦମା ଏ ଅଦାଲତରେ ବିଚାରାଧୀନ ନାହିଁ, ତେଣୁ ସେ ବିଷୟରେ କିଛି କହିବାର ଅଧିକାର ଏ ଅଦାଲତର ନାହିଁ । ସ୍ୱାମୀ ଜୀବିତାବସ୍ଥାରେ ଓ ତା ସହିତ ବିବାହ ବଳବତ୍ତର ଥିବା ଅବସ୍ଥାରେ ଅନ୍ୟ ପୁରୁଷ ସହିତ ଦୈହିକ ସମ୍ବନ୍ଧ ସ୍ଥାପିତ ନ ହେବା ପର୍ଯ୍ୟନ୍ତ ଏ ଅଦାଲତରେ କିଛି କରିବାର ନାହିଁ ।' ଖାଲି ମାନସିକ ସମ୍ବନ୍ଧ ସ୍ଥାପିତ ହେଲେ ସମାଜ ତାର ବ୍ୟବସ୍ଥା କରିପାରେ । ସାକ୍ଷୀ—ତେବେ ଅଦାଲତରେ ଛିଡ଼ା ହୋଇଥିବା ଲୋକେ କାହିଁକି ମୋତେ ମାରିବାକୁ ଧମକାଉଛନ୍ତି ? ଅଦାଲତ—ସାବଧାନ, ସାକ୍ଷୀକୁ ନିର୍ଭୟରେ ସାକ୍ଷ୍ୟ ଦେବାରେ ଯେ ବାଧା ଦେବ, ସେ ଦଣ୍ଡନୀୟ ହେବ) ।

Digitized by srujanika@gmail.com

ସେଦିନ ରାତିରେ ମୁଁ ମାଉଁସ ରାନ୍ଧି ବସିଲି । ମୋ ପାଖରେ କପିଳା ବସି ଗୁଣୁ ଗୁଣୁ ଗୀତ ଗାଉଥାଏ, 'ଆରେ ରେ ଛଇଳା···।' ନା, ହଜୁର ଦୋଷ ହେବ । ତା ଗୀତଗୁଡ଼ାକ ଟାଳି ମନେ ପଡ଼ ଯାଉଛି । ରାଉଳ ବି ମୋ ପାଖରେ ବସିଥାଏ । ମୁଁ ରାଉଳକୁ କହିଲି, ମୁଁ କପିଳା ସାଙ୍ଗରେ ଚାଲିଯିବି । ରାଉଳ କହିଲା, ହେଉ, ସେମିତି କହୁଛୁ, ଜାଣିଛୁ ନା, ଯେ ଶୁଣିବ ଯଦି ତମ ଦି'ଜଣଙ୍କୁ ଦି' ଦି'ଗଡ଼ କରି କାଟିଦେବ । କପିଳା କହିଲା, ହ୍ୟାପ ରାଜ କଲାବାଲା, ମୋ ଏକା ମୁଥକେ ସେ ମାଟି କାମୁଡ଼ିବ । ମୁଁ ହସି ଉଠିଲି । ଅନାଇ ଦେଖିଲି ଧୂମ ପଛପଟୁ ନିଆଁ ହୁଳା ପରି ଦି'ଟା ଆଖି ଜଳୁଛି । ମୁଁ ସେ ଆଖିକୁ ଚାହିଁ ଖଟେଇ ହେଲି ।

ରାତିରେ ମୁଦାଲି, କପିଳା ଓ ରାଉଳ ଅଗଣାରେ ଖାଇ ବସିଲେ । ମୁଁ କପିଳାକୁ ଟିକିଏ ବେଶୀ ମାଉଁସ ଦବାରୁ, ମୁଦାଲି ମୋ ହାତରୁ ସବୁ ମାଉଁସ ଛଡ଼େଇ ଖାଇଦେଲା । ଖାଇସାରି ସେ ତିନିହେଁ ଅଗଣା ପିଣ୍ଡାରେ ଶୋଇବାକୁ ଗଲେ । ମୋ ଭେଇରୁ ଶୋଇବାକୁ ଗଲା-ବେଳେ ମୋ ପଣତ ଧରି ବାଇପଟ ବଖରାକୁ ଟାଣିବାକୁ ଲାଗିଲା । ମୁଁ ପାଟି କରି ଉଠିବାରୁ ସେ ପଳାଇଗଲା । ପୁଣି ପ୍ରାୟ ରାତିଅଧରେ ସେ ମୋ ଶୋଇବା ବଖରା କବାଟରେ ଧକାମାରି ମୋତେ ଡାକିଲା । ମୁଁ ପୁଣି ପାଟି କରିବାରୁ ସେ କବାଟରେ ଖୁବ୍ ଜୋରରେ ଗୋଟାଏ ଗୋଇଠା ମାରି ଚାଲିଗଲା ।

ତାର ପ୍ରାୟ ଘଣ୍ଟାଏ ପରେ ରାଉଳର ହାଉଳି ଶୁଣି ଆମେ ସବୁ ବାହାରକୁ ଦୌଡ଼ିଆସି ଦେଖିଲୁ, ମୁଦାଲି ହାତରେ ଛୁରି ଧରି ଦୌଡ଼ି ପଳେଇଗଲା । କପିଳା ତା ପଛରେ ଗୋଡ଼ାଉଥିଲା । ସେ ଅଗଣାରେ ଦୁମ୍‌କରି ପଡ଼ି ମରିଗଲା । ତାର ତୋଟି କଟା ହୋଇ-ଥାଏ, ରକତ ପିଚକୁଥାଏ । ମୋ ରାଉଳ ମଧ୍ୟ ବେଦେର୍ ହୋଇ

Digitized by srujanika@gmail.com

ପଡ଼ୁଥାଏ । ଆମେ ତାକୁ ସାଷ୍ଟାମ କଲାରୁ, ସେ କହିଲା, ଜହ୍ନ ଆଲୁଅରେ ସେ ସଫା ଦେଖିଛି, ମୁଦାଲା, କପିଳା ଗୁଣ୍ଡ ଉପରେ ବସି କପିଳାର ବେକକୁ ଛୁରୀରେ କାଟୁଥିଲା । ସେତେବେଳେ ପୁଣି ବୃନ୍ଦର ରୂପେଲ କରଣ ଅଜାଡ ପଡ଼ୁଥାଏ ।

× × ×

ଡାକ୍ତରଙ୍କ ଶବ ବ୍ୟବଚ୍ଛେଦ ବିବରଣୀ ।

ମୃତ କପିଳ ଦାସ । ବୟସ ୩୦ ବର୍ଷ । ହୃଷ୍ଟପୁଷ୍ଟ ଶରୀର, କୌଣସି ରୋଗର ଲକ୍ଷଣ ନାହିଁ । ମୃତବ୍ୟକ୍ତିର କଣ୍ଠନଳି ସମ୍ପୂର୍ଣ୍ଣ ବିଭିନ୍ନ । କୌଣସି ଅତି ତୀକ୍ଷ୍ଣ ଅସ୍ତ୍ରଦ୍ୱାରା କଟା ହୋଇଥିବାର ଜଣାଯାଏ । କ୍ଷତସ୍ଥାନର ଦୁଇ ପାଖରେ ଦାନ୍ତର ଚିହ୍ନ । କ୍ଷତସ୍ଥାନର ଛାଞ୍ଚ ବନ୍ଦରେ ବିଆଗଲା ।

× × ×

ମୁଦାଲାର ଜବାନ୍‌ବନ୍ଦୀ ।

ମୋର ସ୍ତ୍ରୀବଯା ଯାହା କହିଗଲା, ସବୁ ମିଛ । ମୁଁ କଅଣ କରିଛି ଜାଣେନା । ଘଟଣା ଦିନ ସ୍ତ୍ରୀଣ୍ଡରେ ମୁଁ ଶଶୁର ଘରେ ନ ଥିଲି । ସେଦିନ ସନ୍ଧରେ ମୁଁ ବି'ଥର ଚେଷ୍ଟା କଲି, ମୋ ସ୍ତ୍ରୀବଯା ଯଦି ସଜ ହୋଇ ଯାଇଥାଆନ୍ତା, ତେବେ ଏମିତି ଘଟି ନ ଥାନ୍ତା । କପିଳା ଯେଉଁ କଣ୍ଠରେ ମୋ ସ୍ତ୍ରୀବଯା ମନ ମୋହିଲା, ସେଇ କଣ୍ଠ ଚାଲି ଗଲା । ମୁଁ କଅଣ କରିବି ? ମୁଁ କପିଳାକୁ ମାରିନାହିଁ । ଧର୍ମାବତାର ଯାହା ବିଚାର କରିବେ ।

× × ×

ଅନ୍ୟାନ୍ୟ ଘଟଣାବଳୀ ସବୁ ଅଣୁବୀକ୍ଷଣ ଯନ୍ତ୍ର ତଳେ ଥୁଆ ହେବାର ବେଳ ହୋଇ ଯିବାରୁ ମୁଦାଲାକୁ ହାଜତକୁ ନେଇଯିବାର ଆଦେଶ ହେଲା । ମୁଦାଲାକୁ ହାତକଡ଼ି ପକାଇ ଦୁଇଜଣ ପୁଲିସ

Digitized by srujanika@gmail.com

ନେଇଗଲେ । ମୃଦାଙ୍କ ଯାଉ ଯାଉ ପ୍ରଳାପ ବଢ଼ିବାକୁ ଲାଗିଲା, ଛୋର ମୋର ଯେ ପୀରତି···ସନ୍ତୁ ସବ ଚ ଗଲା···କୃପାସିନ୍ଧୁ ବଦନ, କର ଅବଲୋକନ··· । ହାଜତରୁ ମୃଦାଲର ଉଚ୍ଚକଣ୍ଠରେ ଗୀତ ଶୁଭୁଛି । ଅନ୍ୟ ମକଦ୍ଦମା ଶୁଣାଣି ଚାଲିଛି ।

× × ×

ଅଲ୍ ଇଣ୍ଡିଆ ରିପୋର୍ଟର୍ ୧୯୭୨, ଏଲାହାବାଦ ୨୨୭ ପୃଷ୍ଠାରେ ମହାମାନ୍ୟ ବିଚାରପତି ଦ୍ୱିବେଦୀ କହିଛନ୍ତି—ଆଇନ୍ ଶବ୍ଦ-ଯୋଜନାର ସ୍ତୂପ ନୁହେଁ । ମନୁଷ୍ୟ-ସମାଜର ନୈତିକ ଓ ସାମାଜିକ ବେଗର ଅବସ୍ଥା ହୁଏ ଆଇନ ଦ୍ୱାରା । ଏହା ଏକ ଜଟିଳ ଅବସ୍ଥା । ଏ ଅବସ୍ଥା-ପଦ୍ଧତି ବୁଝିବାକୁ ହେଲେ ସମାଜ ଓ ବ୍ୟକ୍ତି ବିଷୟରେ ଗଭୀର ଜ୍ଞାନ ପ୍ରୟୋଜନ ।

× × ×

ଏ ଘଟଣା ଯେଉଁଦିନ ଘଟିଥିଲା, ଠିକ୍ ତାର ୨୬୦୦ ବର୍ଷ ପୂର୍ବେ ବୁଦ୍ଧ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ପ୍ରଚାର କରିଥିଲେ, ଏ ଜୀବନ ଦୁଃଖପୂର୍ଣ୍ଣ ଦୁଃଖର କାରଣ କାମନା ! ତା ପୂର୍ବରୁ ବିଶ୍ୱବ୍ରହ୍ମାଣ୍ଡର ନାନା ସ୍ଥାନରେ ନାନା କାଳରେ ନାନା ଘଟଣା ଘଟି ଯାଇଛି ଓ ପରେ ଘଟିଛି ଓ ଭବିଷ୍ୟତରେ ଘଟିବ । କାହାର ସହିତ କାହାର କଅଣ ସମ୍ପର୍କ ନାହିଁ ! ଆପେକ୍ଷିକବାଦ (Theory of relativity) ଓ ଉପନିଷଦ୍ କୁହେ, ସ୍ଥାନ ଓ କାଳ ଅଭିନ୍ନ ଓ ନିରବଚ୍ଛିନ୍ନ, ଅନାଦି ଓ ଅନନ୍ତ । ଅସଂଖ୍ୟ ବିନ୍ଦୁର ସମଷ୍ଟିରେ ରେଖାର ସୃଷ୍ଟି ! ଅସଂଖ୍ୟ ଘଟଣାର ସମଷ୍ଟିରେ କି ଗଳ୍ପ ସୃଷ୍ଟି ହେଉଛି ? ଯଦି କେହି ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡ ଓ ସମସ୍ତ କାଳ ଦେଖି ପାରୁଛନ୍ତି, ତେବେ ସିଏ ନିଶ୍ଚୟ ଅନ୍ୟାନ୍ୟ ସବୁ ଘଟଣା ସହିତ ଏହାର ସମ୍ପର୍କ ଦେଖି ପାରୁଛନ୍ତି ।

Digitized by srujanika@gmail.com

ତା ଯଦି ହୁଏ, ତେବେ ମୁଁ ଯେ ଏ ଗଳ୍ପଟି ଲେଖିଲି, ତା ସହିତ ସେ ଘଟଣାର କି ସମ୍ପର୍କ ? ପୁଣି ବୁଦ୍ଧଙ୍କ ସ୍ୱରଚିତ ସତ୍ୟ ସହିତ କି ସମ୍ପର୍କ ? ଏ ଘଟଣା ଉଲ୍ଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରୁ କିଏ ଦୋଷୀ, କିଏ ନିର୍ଦ୍ଦୋଷ ? ଅଦାଲତର ବା ସମାଜର ଅଣୁବୀକ୍ଷଣ ଯନ୍ତ୍ର ଉଠାଇନେଇ ଅନ୍ୟାନ୍ୟ ସବୁ ଘଟଣା ସହିତ ସମ୍ପର୍କ ରଖି ଏହାକୁ ଦେଖିଲେ ଏହାର କି ରୂପାନ୍ତର ହେବ ?

(କେନ୍ଦ୍ରାପଡ଼ା ସାହିତ୍ୟ ଆଲୋଚନାର ଆନୁକୂଲ୍ୟରୁ ପ୍ରାପ୍ତ)



ଜୟପୁର ବିକାଶ ପ୍ରେସ୍‌ରେ ଶ୍ରୀ ଗମନାଥ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ।

Digitized by srujanika@gmail.com

# ଆପଣଙ୍କ ପଢାଘରକୁ ସମୃଦ୍ଧ କରିବା ପାଇଁ

## ସଂଗ୍ରହ କରନ୍ତୁ—

| | | |
|---|---|---|
| ଉପନ୍ୟାସ | ଅନ୍ତରାୟ | ଶ୍ରୀ କାହ୍ନୁଚରଣ ମହାନ୍ତି |
| | ସ୍ୱପ୍ନ ନା ସତ୍ୟ | ଶ୍ରୀ କାହ୍ନୁଚରଣ ମହାନ୍ତି |
| | ଦଇବ ଦଉଡ଼ି | ଶ୍ରୀ ରାମନାଥ ପଣ୍ଡା |
| | ଅଦୃଶ୍ୟ ଆଶୀର୍ବାଦ | ଶ୍ରୀ ରାମନାଥ ପଣ୍ଡା |
| | ପରାଗ | ଶ୍ରୀ ବାମାଚରଣ ମିତ୍ର |
| | ସ୍ଥିର ତରଙ୍ଗ | ଶ୍ରୀ ଦଶରଥ ସାମଲ |
| | ତନ୍ତ୍ରୀକାର | ଶ୍ରୀ ଗୋପୀନାଥ ମହାନ୍ତି |
| | ପଦ୍ମବନର ପ୍ରତରକ୍ଷା | ଶ୍ରୀ ରାମନାଥ ପଣ୍ଡା |
| ଗଳ୍ପ ସଂଗ୍ରହ | ସ୍ୱପ୍ନସିଦ୍ଧି | ଶ୍ରୀ ବାମାଚରଣ ମିତ୍ର |
| | ଅସୀମ | ଶ୍ରୀ ବାମାଚରଣ ମିତ୍ର |
| | ପାଷାଣର ପ୍ରାଣ | ଶ୍ରୀ ବାମାଚରଣ ମିତ୍ର |
| | ଭଙ୍ଗା ଖେଳଣା | ଶ୍ରୀ ଯଶୋଧରଚରଣ ଦାସ |
| | ଅନ୍ତରାଗର କବି | ଶ୍ରୀ ମଙ୍ଗଳଚରଣ ଛଣ୍ଟୁଆଳ |
| | ଋଣ ଧନ୍ଦୋଳ | ଶ୍ରୀ ଗୋପୀନାଥ ମହାନ୍ତି |
| | ବଡ଼ ମହାପୁରୁଷ | ଶ୍ରୀ ବାମାଚରଣ ମିତ୍ର |
| | ବଚନ ବିଭୂତି | ଶ୍ରୀ ରାମକୃଷ୍ଣ ଦାସ |
| | ସ୍ମୃତି | ଶ୍ରୀ କୃଷ୍ଣଚନ୍ଦ୍ର ଜେନା |
| କବିତା | ଭଞ୍ଜ-ଭାଗବତ | ଶ୍ରୀ ହୃଦାନନ୍ଦ ରାୟ |
| | ଫେରିଆସ | ଶ୍ରୀ ନରସିଂହ ମିଶ୍ର |
| | ଲୁଙ୍ଗୁଳିଆ | ଶ୍ରୀ ରଘୁନାଥ ପାଣିଗ୍ରାହୀ |
| | ନୁହେଁ ଏ କଥା | ଶ୍ରୀ ଚିତ୍ତରଞ୍ଜନ ମହାନ୍ତି |

Digitized by srujanika@gmail.com

| | | |
|---|---|---|
| | **ସଂକ୍ଷିପ୍ତ ଦେବୀ ଭାଗବତ** | ଶ୍ରୀ ହରିହର ନନ୍ଦ |
| | **ଅର୍ଘ୍ୟ** | ଭୂଲକ୍ଷ୍ମୀ ଦାସ |
| | **ଦୂର୍ବାଦଳ** | ପ୍ରିୟମ୍ବଦା ପାଣିଗ୍ରାହୀ |
| | **ନନ୍ଦାଦେବୀ** | ଶ୍ରୀ ବିନୋଦଚନ୍ଦ୍ର ନାୟକ |
| | **ପାଷାଣୀର ପ୍ରଶ୍ନ** | ଶ୍ରୀ କୃଷ୍ଣଚନ୍ଦ୍ର ଜେନା |
| **ନାଟକ** | **ବ୍ରତଭଙ୍ଗ** | ଶ୍ରୀ ରାମନାଥ ମିଶ୍ର |
| | **କର୍ପୂର ମଞ୍ଜରୀ** | ଶ୍ରୀ ବଂଶୀଧର ମହାନ୍ତି |
| **ଶିକ୍ଷା** | **ଶିକ୍ଷା ସିଦ୍ଧାନ୍ତ** | ଶ୍ରୀ ଲୋକନାଥ ପଣ୍ଡା |
| **ସାହିତ୍ୟ** | **ଓଡ଼ିଶା ଓ ଜୈନଧର୍ମ** | ୬ ଲକ୍ଷ୍ମୀନାରାୟଣ ସାହୁ |
| | **ବେଦ ମନୁଷ୍ୟ କୃତ କି ?** | ଶ୍ରୀ ପ୍ରିୟବ୍ରତ ଦାସ |
| | (ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ) | |
| | **ଅମ୍ବର** | ଶ୍ରୀ ବ୍ରଜବନ୍ଧୁ ମିଶ୍ର |
| | **ଶ୍ରୀମଦ୍ ଭଗବଦ୍ ଗୀତା** | ୬ ନିରଞ୍ଜନ ବିଦ୍ୟାଧର |
| **ଟୀକା** | **ଗୁଣ୍ଡିକା ଟୀକା** | ଶ୍ରୀ ମୃତ୍ୟୁଞ୍ଜୟ ମିଶ୍ର |
| | **ବାଳ ଟୀକାର୍ଣ୍ଣବ** | ଶ୍ରୀ କାଶୀନାଥ ମହାପାତ୍ର |

ପାଠାଗାରମାନଙ୍କ ପାଇଁ କମିଶନ ସହ ପୁସ୍ତକ ପାଇବାକୁ ଯୋଗାଯୋଗ ସ୍ଥାପନ କରନ୍ତୁ—

ଫୋନ ନଂ: ୩୯

[illegible]

ଜୟପୁର ( କୋରାପୁଟ )

Digitized by srujanika@gmail.com

